# ଅୟନାନ୍ତ

ଲେଖକ

ଡକ୍ଟର ଅରବିନ୍ଦ ପଟ୍ଟନାୟକ

ପ୍ରକାଶକ

ବସୁଧାରା ପ୍ରକାଶନୀ

ଏମ୍.ପି.୨୬/ଲକ୍ଷ୍ମୀସାଗର, ଭୁବନେଶ୍ୱର - ୭୫୧୦୦୬

ଉତ୍ସର୍ଗ :

ସେଇ ବସୁମାତାକୁ
ଯିଏ ଆମକୁ କୋଳରେ ଧରି
ସୂର୍ଯ୍ୟ ଓ ଚନ୍ଦ୍ର ଆଡ଼କୁ
କେବେ ମୁହଁ
କେବେ ପିଠି କରି
ମହାକାଶରେ ନିଜର କକ୍ଷରେ ଶୂନ୍ୟେ ଶୂନ୍ୟେ ଘୂରୁଛି ।
କାହାର ଭାବନା କଣ କେଜାଣି,
ମୁଁ ତ ଭାବେ
ଭାରତ ତାର ଶ୍ରୀମୁଖ
ଓ ଏଇଠି ମୋ ପ୍ରାଣକୁ ଛୁଏଁ
ତା ହୃଦୟର ସ୍ପନ୍ଦନ ।

ଲେଖକ

**AYANANTA** (*Novel in Oriya Language*)
Author : Dr. Arabinda Patnaik

Publisher : **BASUDHARA PRAKASHANI**
M.P.26/Laxmisagar, Bhubaneswar - 751006

Ist edition : December 1998

Print : 1000 copies

Printed at **Duduly Process & Offset**
Bapuji Nagar, Bhubaneswar

Layout by **Sierra Grafix**
Cuttack Road, Bhubaneswar

Price : Rs. **70/-** (*Rupees Seventy only*)
Board Binding : Rs. **90/-** (Rupees Ninteen only)

ଅୟନାନ୍ତ (ଉପନ୍ୟାସ)

ଲେଖକ : ଡକ୍ଟର ଅରବିନ୍ଦ ପଟ୍ଟନାୟକ

ପ୍ରକାଶକ : ବସୁଧାରା ପ୍ରକାଶନୀ
ଏମ.ପି.୨୬/ଲକ୍ଷ୍ମୀସାଗର, ଭୁବନେଶ୍ୱର - ୭୫୧୦୦୬

ପ୍ରଥମ ପ୍ରକାଶ : ଡିସେମ୍ବର ୧୯୯୮

ମୁଦ୍ରଣ : ୧୦୦୦

ମୁଦ୍ରଣ ଡୁଡୁଲି ପ୍ରୋସେସ୍ ଏଣ୍ଡ ଅଫସେଟ୍
ବାପୁଜୀ ନଗର, ଭୁବନେଶ୍ୱର

ଅକ୍ଷର ଓ ଅଙ୍ଗସଜ୍ଜା ସିଏରା ଗ୍ରାଫିକ୍ସ
କଟକରୋଡ୍, ଭୁବନେଶ୍ୱର

ମୂଲ୍ୟ : ଟ. ୭୦/- (ସତୁରୀ ଟଙ୍କା ମାତ୍ର)
ବନ୍ଧେଇ : ଟ. ୯୦/- (ନବେ ଟଙ୍କା ମାତ୍ର)

# ଅୟନାନ୍ତ

ଜାନୁଆରୀ ମାସ ଅଧା ଅଧି ହେଲାଣି । ଚନ୍ଦ୍ର ମୃଗଶିରା ନକ୍ଷତ୍ରଠାରୁ ବିଦାୟ ନେଇ ପୁଷ୍ୟା ସହିତ ମିଶିବେ । ସୂର୍ଯ୍ୟ ମଧ୍ୟ ଚଳିବେ ଧନୁରୁ ମକର ରାଶିକୁ । ଉତ୍ତରାୟଣ ଆରମ୍ଭ ହେବ । ତା ସହିତ ମଣିଷର ସାମାଜିକ, ସାଂସ୍କୃତିକ, ଧାର୍ମିକ ଜୀବନ ହେବ ସରସ ସତେଜ ଓ ସଚ୍ଚଳ । ପ୍ରକୃତି ସହିତ ହାତ ମିଳାଇ ଆଗେଇ ଆସିଛି ମଣିଷ, ତା'ର ଗୋଷ୍ଠୀ ଜୀବନକୁ ନାନା ରଙ୍ଗରେ ରଙ୍ଗେଇ ସଜେଇ ଓ ନାନା କଥାରେ ରସାଣିତ କରି କରିକା !

ଧନୁ ମାସଟି ଦକ୍ଷିଣାୟନର ଶେଷ ମାସ । ବଡ଼ ଦେଉଳରେ ପହିଲି ଭୋଗ, ଧନୁ ମୁଆଁ ଲାଗି ହେଉଥାଏ ମାସ ସାରା । ସେ ମାସଟିତ ସରିଯିବ, ମକର ସଂକ୍ରାନ୍ତିଠୁ ଆରମ୍ଭ ହେବ ନୂଆ ମାସଟିଏ । ନନ୍ଦର ଗୋସେଇଁ ମା କହୁଥିଲେ - ମକର ଦିନ ହେଲା ବକର ।

ମକର ସଂକ୍ରାନ୍ତି ଦିନ ନୂଆ ଅରୁଆ ଚାଉଳ, ନୂଆ ଗୁଡ଼, କଦଳୀ, ନଡ଼ିଆ, ଘିଅ,କ୍ଷୀର, ଛେନା ମିଶାଇ ମକର ଚାଉଳ ତିଆରି ହେବ । ଦେବ ଦେବୀଙ୍କ ମନ୍ଦିରମାନଙ୍କରେ ଭୋଗ ଲାଗିବ । ମକର ବେଢ଼ା ପରିକ୍ରମା ହେବ । ବଡ଼ ଦେଉଳରେ ଜଗନ୍ନାଥଙ୍କର ପର୍ବ ଦିନ । ତିନି ଠାକୁରଙ୍କଠାରେ ନୀଳରଙ୍ଗର ଘୋଡ଼ ଲାଗି ହେବ । ଏଇ ମାସଟି ହେଉଛି ଧାନ, ଆଖୁ ପ୍ରଭୃତି ଶୀତ ଦିନିଆ ଫସଲ ଅମଳ ସମୟ । ବସୁ ମାତା ଏଇ ମାସରେ କୃଷକ କୁଳକୁ ତାର ଶସ୍ୟ ସମ୍ଭାର ଦେଇଥାଏ । ତେଣୁ ସେ କୃତଜ୍ଞତା ଜଣାଇବାକୁ ଚଉରା ମୂଳେ ମକର ମାଧବଙ୍କୁ ମକର ଚାଉଳ ବାଢ଼ି ପୂଜା ଅର୍ଚ୍ଚନା କରେ ।

ମକର ତ ଖାଲି ଅଣ ଆଦିବାସୀ ହିନ୍ଦୁମାନଙ୍କ ପର୍ବ ଦିନ ନୁହେ, ବଣ ପାହାଡ଼ର ଆଦିମ ମଣିଷ ସମାଜ ମଧ୍ୟ ଏହି ସମୟରେ ପର୍ବମୁଖର ହୁଏ । କୋହ୍ଲମାନେ ଏହି ଦିନଟିକୁ ମାଘେ ପରବ ଭାବରେ ପାଳନ କରନ୍ତି । ମକର ସଂକ୍ରାନ୍ତି ଦିନ୍‌ଠାରୁ ଛଅ ଦିନଧରି ପର୍ବ ପାଳିତ ହୁଏ । ରଙ୍ଗ ମାଟିରେ ଗୋବର ମିଶାଇ ପୂଜା ସ୍ଥାନଟି ନିର୍ମଳ କରି ଲିପା ପୋଛା କରି ଥାଆନ୍ତି । ସକାଳୁ ଗାଧୋଇ ପାଧୋଇ ନୂଆ ଲୁଗା ପିନ୍ଧନ୍ତି । ହାଣ୍ଡିଆ ପିଅନ୍ତି । ସଞ୍ଜ ହେଲେ

ଆରମ୍ଭ ହୁଏ ନାରୀ - ପୁରୁଷଙ୍କର ମିଳିତ ନୃତ୍ୟ । ଧୀରେ ଧୀରେ ଆରମ୍ଭ ହୋଇ କ୍ରମେ ଉନ୍ମତ୍ତରୁ ଉନ୍ମତ୍ତତର ଭାବେ ଚାଲେ ନୃତ୍ୟ ଆଉ ଗୀତ । ସେମାନଙ୍କର ବିଶ୍ୱାସ ଏମିତି ନାଚିଲେ ଦେବତା ଖୁସି ହେବ । ବରଦେବ । ଦେବତା ଯାହା କରନ୍ତୁ ନକରନ୍ତୁ ସବ୍ୟସାଚୀ ଖୁବ୍ ଖୁସି ହୁଏ । ସେ ଆଦିବାସୀ ସମାଜର ମକର ମଉଜ ଓ ନାଚ ଉତ୍ସବ ଦେଖେ । ସେମାନଙ୍କ ସହିତ ନିଜକୁ ସାମିଲ କରି ଦିଏ ।

ସବ୍ୟସାଚୀର ଦିଅଁ ଦେବତାଙ୍କଠାରେ ଭାରି ବିଶ୍ୱାସ । ପର୍ବ ଉତ୍ସବମାନଙ୍କରେ ଅପାର ଆଗ୍ରହ । କୁଆଡୁ କୁଆଡୁ, କାହାଠୁ ଶୁଣିଥିବା କଥାମାନ ବେଶ୍ ଖଞ୍ଜି ଖଞ୍ଜି ଜମେଇ ଜମେଇ କହି ଜାଣେ । ସେଦିନ ରେଖା ପଞ୍ଚମୀ କଥା ପଡୁ ପଡୁ ଆରମ୍ଭ କଲା ଦୁଆର ଶୁଣିଙ୍କ ମହିମା ବର୍ଣ୍ଣନା ଓ ସେଇଠୁ କଥାକୁ ଲମ୍ବାଇ ନେଲା ଗଣେଶଙ୍କ ବାଟ ଦେଇ ରୋମୀୟ ଦେବତା ଜାନୁସ୍‌ଙ୍କ ପର୍ଯ୍ୟନ୍ତ ! ତା କହିବା ଅନୁସାରେ ଗଣେଶ ମୂଳରୁ ଥିଲେ ଦ୍ୱାର ରକ୍ଷକ ଦେବତା । ପାର୍ବତୀ ତାଙ୍କୁ ସୃଷ୍ଟି କରି ଦ୍ୱାର ରକ୍ଷା ଦାୟିତ୍ୱ ଦେଇଥିଲେ । ସେତେବେଳେ ଶିବ ଯାଇଥିଲେ ବାହାରକୁ । ସେ ଫେରି ଦେଖିଲେ ଛୁଆ ଦ୍ୱାର ପାଳଟିଏ ତାଙ୍କୁ ବାଟ ଓଗାଳୁଛି ! ସେଇ ଗଣେଶ ଏମିତି ଦୁଆର ରଖୁଆଳ ଥିଲେ ଯେ, ସେ ଶିବଙ୍କୁ ସୁଦ୍ଧା ବାଟ ଛାଡ଼ିଲେ ନାହିଁ । ହେଲା ଘମା ଘୋଟ ଲଢ଼େଇ । ତାର ପରିଣତି କଥା କିଏ ବା ନ ଜାଣେ ? କିନ୍ତୁ ସେଇ ଗଣେଶ କେବଳ ଦ୍ୱାର ରକ୍ଷକ ନୁହନ୍ତି, ସେ ମଧ୍ୟ ଶୁଭାରମ୍ଭର ଦେବତା । ରୋମୀୟ ମିଥ୍‌ରେ ଏମିତି ଜଣେ ଦେବତା ହେଲେ ଜାନୁସ୍ । ସେ ଗୃହର ପ୍ରବେଶ ପଥ ଓ ଦ୍ୱାରର ରକ୍ଷାକର୍ତ୍ତା ଦେବତା । ସବୁ କାମର ଆରମ୍ଭରେ ତାଙ୍କର ଆଶୀଷ କାମନା କରାଯାଏ । ପ୍ରତି ଦିନର ପ୍ରଥମ ଘଣ୍ଟାକୁ ଓ ପ୍ରତି ମାସର ପ୍ରଥମ ଦିନକୁ ତାଙ୍କର ଆରାଧନା ପାଇଁ ପବିତ୍ର ବୋଲି ଧରାଯାଏ । ଅନେକ ରୋମୀୟ ଗୃହର ପ୍ରବେଶ ପଥର ଖିଲାଣରେ ଜାନୁସ୍‌ଙ୍କ ମୂର୍ତ୍ତି ଉତ୍‌କୀର୍ଣ୍ଣ ହୋଇଥାଏ । ଦୁଇ ଆଡ଼କୁ ମୁହଁ କରିଥିବା ଏହି ଦେବତାଙ୍କ ନାଁରେ ବର୍ଷର ପ୍ରଥମ ମାସର ନାଁ ହୋଇଛି -ଜାନୁଆରୀ । ଆମେ ମାସଟିକୁ ଜାଣୁ ଓ ଏହାର ପ୍ରଥମ ଦିନଟିକୁ ବର୍ଷାରମ୍ଭର ଦିନ ଭାବେ ପାଳନ କରୁ । କାରଣ ଇଂରାଜୀ ବର୍ଷ ଓ ତାରିଖ ଅନୁସାରେ ଆମର ସମୟ ଗଣନା ତଥା ସବୁ ହିସାବ କିତାବ ଓ କାମଦାମ ଚାଲେ । କିନ୍ତୁ ଜାନୁସ୍ କିଏ ଆମେ ଜାଣୁ ନାହିଁ, କି ଜାଣିବା ଦରକାର ପଡ଼ିନାହିଁ । କାରଣ ଆମ ସଂସ୍କୃତି ସହିତ ତାଙ୍କର ସଂପର୍କ ନାହିଁ ।

ନନ୍ଦ ଓ ଅନ୍ୟ ସାଙ୍ଗମାନେ ସବ୍ୟସାଚୀର କଥା ଓ ବ୍ୟାଖ୍ୟାନ ଶୁଣି ଭାବନ୍ତି - 'ଟୋକା ଖଣ୍ଡକ କେତେ କଥା ଜାଣିଛି ମ ! କିନ୍ତୁ ଏଇ ବୁଦ୍ଧିକୁ ପାଠରେ ଖଟଉନି କାହିଁକି ?'

ସେଦିନ ନନ୍ଦ ଭାବୁଥିଲା-ସବ୍ୟସାଚୀର କଥାକୁହା ଓ ମିଶାଣିଆ ସ୍ୱଭାବ ସହିତ ଉପସ୍ଥିତ ବୁଦ୍ଧି ସମ୍ପର୍କରେ । ବାହାରୁ ଶୁଣିଲା ତାଆରି କୁହାଟ - 'ନନ୍ଦିଆ ଅଛୁ କିରେ ? ପୁଣି ଉତ୍ତରକୁ ଅପେକ୍ଷା ନକରି ଭିତରକୁ ପଶିଯାଇ ପଚାରିଲା ଗାଧୁଆ ପାଧୁଆ ସାରିଲୁଣି ? ଚାଲ ଯିବା ମନ୍ଦିର ଆଡ଼େ ।'

ନନ୍ଦ ଚେହେରାରୁ ଲାଗୁଥିଲା, ସେ ଗାଧୋଇ ସାରିଛି । ତେଣୁ ଉତ୍ତର ଓ କୁଣ୍ଠାର ଅବକାଶ ନଥିଲା । ସେଦିନ ଦୁହେଁ ଯାଇଥିଲେ ଗୋଟିଏ ଶିବ ମନ୍ଦିରକୁ । ସେ ଦିନଟି ଥିଲା ମକର ସଂକ୍ରାନ୍ତି । ଦୁହେଁ ମହାଦେବଙ୍କ ପ୍ରସାଦ ମକର ଚାଉଳ ପାଇଲେ । ସବ୍ୟସାଚୀ ତା ମାଉସୀ ପାଇଁ ମକର ଚାଉଳ ଆଣିଲା । ବେଢ଼ାରେ ଟିକିଏ ବସିବାକୁ ମନକଲା । ଦୁଇ ସାଙ୍ଗ ବସିଲେ ।

ସବ୍ୟସାଚୀ କହିଲା -"ମାଉସୀ ବଡ଼ି ଭୋଅରୁ ଉଠି ତାର ପୂଜାଧିଜା କରି ସାରିଛି । ହେଲେ ମୁଁ ନେଇଥିବା ଏଇ ଭୋଗରେ ତାର ବଡ଼ ଶରଧା । ସେ ମୋ ବୋଉ ସାଙ୍ଗରେ ମକର ବସିଥିଲା । ଦୁହିଙ୍କର ଭାରି ମନ ମିଳୁଥିଲା । ସେ ମୋ ହାତରୁ ମକର ଚାଉଳ ଟିକିଏ ନେଇ ପାଟିରେ ଦେଇ କାନ୍ଦ କାନ୍ଦ ହୋଇ କହି ପକାଏ - 'ଆହା ମୋ ମକର ଲୋ' । ସେ ତ ମୋର ମାଉସୀ ନୁହଁ, ମୋର ମାଆ ।"

ନନ୍ଦ ଜାଣିଥିଲା ସବ୍ୟସାଚୀ ମାଆ ଛେଉଣ୍ଡ । ମାଉସୀ ଘରେ ରହି ପଢ଼େ । ବାପା ବିଦେଶରେ କାମ କରନ୍ତି, ଟଙ୍କା ପଠାନ୍ତି ।

ଜାନୁଆରୀ ମାସରେ ଚନ୍ଦ୍ରମାନ ମାସର ପୌଷ ଓ ମାଘର କିଛି କିଛି ଅଂଶ ଭୋଗ ହୁଏ । ମାଘ ଶୁକ୍ଳ ପଞ୍ଚମୀ ବେଳକୁ କେବେ କେବେ ଜାନୁଆରୀ ଶେଷ କି ଫେବୃଆରୀ ଆରମ୍ଭ ହୋଇଯାଇଥାଏ । ଏଇ ଦିନଟି ଛାତ୍ର ଛାତ୍ରୀମାନଙ୍କର ଗୋଟିଏ ପର୍ବ ଦିନ । ଦିନେ ଚାଟଶାଳୀ ଯୁଗରେ ଏହା ଥିଲା ଗାଁ ଗହଳରେ 'ଓଝା ଚାଟଙ୍କର ଉତ୍ସବ ଲୀଳା' । ସବ୍ୟସାଚୀ କହିଲା - 'ଭାଇ ନନ୍ଦ, ଏଥର ସରସ୍ୱତୀ ପୂଜାରେ ଗୋଟିଏ କିଛି କରିବା । ତୁ ରାଧାନାଥଙ୍କ ଚନ୍ଦ୍ରଭାଗା କାବ୍ୟକୁ ନାଟ୍ୟ ରୂପ ଦେଇ ପାରିଲେ, ତାକୁ ମଞ୍ଚସ୍ଥ କରିବାର ଦାୟିତ୍ୱ ମୋର । ଶ୍ରୀକ୍ଷେତ୍ର

ଓ ମହାପ୍ରଭୁଙ୍କ ପୁଷ୍ୟାଭିଷେକ ଦୃଶ୍ୟପଟ୍ଟ ଅୟୋଜନ ଓ କୋଣାର୍କରୁ ସୂର୍ଯ୍ୟଦେବ ବାହାରି ସେଠାକୁ ଆସିବା, ଅନ୍ୟ ଦେବତାମାନଙ୍କ ସହିତ ଧାଡ଼ିରେ ଛିଡ଼ା ହେବା ବେଳକୁ ମଦନଙ୍କ ସହିତ ତାଙ୍କର ବିବାଦରୁ ପ୍ରଥମ ଦୃଶ୍ୟ ଆରମ୍ଭ ହେବ ......। ବଢ଼ିଆ ଜମିବ, ସିନ୍ ସିନେରି ଯୋଗଡ଼, ଦରକାର ହେଲେ ମଞ୍ଚ ସଜାଡ଼ିବା ଗୋଟାଏ କଠିନ କାମ ହେଲେ ବି, ବଳେଇ ଯିବନି । ଚନ୍ଦ୍ରଭାଗା ପାଇଁ ନୃତ୍ୟ ଜାଣିଥିବା ଝିଅ ମୋ ନଜରରେ ଅଛି । ଆଉ କିଏ କୋଉ ଭୂମିକାରେ ଅଭିନୟ କରିବେ କେମିତି ତାଲିମ ଦେବାକୁ ହେବ, ସବୁ ମୋ ମୁଣ୍ଡରେ ଖଞ୍ଜା ହୋଇ ରହିଛି । ବେଶ୍ ଜମିବ ।'

ସେଇ ଦିନ, ସେଇ ମନ, କୁଆଡ଼େ ଗଲା ସତେ ! କେଉଁଠି ଅଛି ସେଦିନର ସାଙ୍ଗଟି ? ସେଦିନର ପଢ଼ା ସାଙ୍ଗମାନେ ଯେ ଯାହା ପେଟ ପାଟଣା ସମ୍ଭାଳିବାର ଉପାୟରେ କିଏ କୋଉଠି ଥିବେ । ଏହା ଅବଶ୍ୟ କହି ହେବ ଯେ - ସବ୍ୟସାଚୀ ଭଳି ଉତ୍ସାହୀ, ସାହସୀ, ପରିଶ୍ରମୀ ପିଲା ଜୀବନ ଯୁଦ୍ଧରେ ହାରିଯାଇ ନଥିବ । କିନ୍ତୁ ଯାହା ତାର ପ୍ରାପ୍ୟ ସେତକ ହୁଏତ ପାଉଥିବ କି ନାହିଁ କହିଦେବା କଷ୍ଟ । କାହିଁକି ନା, ଏହା ସତ୍ତ୍ୱେ ସେ ଥିଲା ଭାରି ଭାବ ପ୍ରବଣ ଓ ଖିଆଲି । ବହୁକଥା ଜାଣୁଥିଲା । ମନେ ରଖିଥିଲା । ଅଥଚ କ୍ଲାସକୁ ଆସିବାରେ ଖୁବ୍ ଖିଲାପ କରୁଥିଲା । ପଢ଼ା ପଢ଼ିରେ ନିୟମିତ ହବାର କେବେ ଦେଖାଯାଉ ନଥିଲା । ତଥାପି ଯେତିକି ପଢ଼େ, ଯେତିକି ଶୁଣେ ସେଥିରେ କୌଣସି ମତେ ପରୀକ୍ଷାରେ ପାରି ହୋଇଯାଏ ।

ନଦୀମାତୃକ ଅଞ୍ଚଳରେ ଲୋକେ ଅନୁଭବ ରଞ୍ଜିତ ପଦଟିଏ କହନ୍ତି- ବନ୍ଧୁ ଦିଏ ବଳ, ନଈ ଦିଏ ଥଳ । ଅସହାୟ ମୁହୂର୍ତ୍ତରେ ନନ୍ଦର ଭାରି ମନେ ପଡ଼େ ସବ୍ୟସାଚୀ । ସେ ତାକୁ ଝୁରିହୁଏ ବେଳେ ବେଳେ । ତାରି କଥା କାନରେ ବାଜିଯାଏ - 'ପୁରୁଷ ପିଲା ହାତ ଥିଲେ ପେଟ ଅପୋଷ ରହିବନି । ସେ ଆପଣା ତାକତ୍‌ରେ ଛାତି ଫୁଲେଇ ମାଡ଼ିଚାଲିବ ଜୀବନର ବଡ଼ ଦାଣ୍ଡରେ ।'

ନନ୍ଦ ସାମନାକୁ ଚାହିଁଲା । ଆପଣା ଡ଼ାହାଣ ହାତ ପାପୁଲିରେ ଓ ଆଙ୍ଗୁଳିରେ ସାଉଁଳୁଥାଏ ନିଜ ମୁଣ୍ଡର କେଶ କେରାକ ।

ଆଗରେ ଆକାଶ । ଶୂନ୍ୟ ଶୂନ୍ୟ ମହା ଶୂନ୍ୟ



## ॥ ୨ ॥

ପଞ୍ଚୁପାଣ୍ଡବ ପଶାଖେଳରେ ହାରି ରାଜ୍ୟ ଛାଡ଼ିଥିଲେ । ବାହାରି ଆସିଥିଲେ ବନବାସ ପାଇଁ । ରାମ ପିତାଙ୍କୁ ସତ୍ୟ ରକ୍ଷାରେ ସାହାଯ୍ୟ କରିବା ପାଇଁ ରାଜ୍ୟ ଛାଡ଼ିଥିଲେ । ସେ ବି ଆସିଥିଲେ ବନବାସ କରି । ଅବଶ୍ୟ ସେମାନଙ୍କର ସର୍ତ୍ତ ଓ ସମୟ ଥିଲା ନିଆରା । ସେମାନଙ୍କର ସାମର୍ଥ୍ୟ ଓ ଶପଥ ଥିଲା ଭିନ୍ନ । ତଥାପି ଏହା ସତ୍ୟଯେ, ସେମାନେ ନିଜର ଜନ୍ମମାଟି ଓ ଘର ଛାଡ଼ିଥିଲେ । ସେମିତି ନିଜର ଗାଁ ଛାଡ଼ି ଆସିଥିଲା ନନ୍ଦଦାସ ।

ନନ୍ଦଦାସ ଗାଁ ଟା କିଛି ହସ୍ତୀନା ବା ଅଯୋଧା ନୁହେଁ । 'ପୂର୍ବତନ' ବିଶେଷଣ ଯୁକ୍ତ ଗୋଟାଏ ବଡ଼ ଗଡ଼ଜାତ ରାଜ୍ୟର ଛୋଟ ଗାଁଟିଏ । ତାର ବାପା ମଧ ପଣ୍ଡୁ ବା ଦଶରଥଙ୍କ ପରି ପ୍ରଥିତ ଯଶା ନରପତି ନଥିଲେ । ସେ ଥିଲେ ଗୋଟିଏ ଛୋଟ ଗାଁର ଅକିଞ୍ଚନ ମଣିଷ । ତାଙ୍କର ଆଶା ଥିଲା- ପୁଅ ପାଠ ପଢ଼ି ବଡ଼ ମଣିଷ ହେବ । ଘରର ନାଁ ହେବ । ପରିବାର ପାଇଁ ସୁଦିନ ଆସିବ, ସେ ପାଞ୍ଚ ଦଶଖଣ୍ଡ ଗାଁରେ ମୁଣ୍ଡଟେକି ଚାଲିବା ଭଳି ହୋଇ ଯିବ । ସେ ସେଇ ଆଶାରେ ପୁଅକୁ ପଢ଼ାଇ ଥିଲେ । ସେଥିପାଇଁ ସର୍ବସ୍ୱାନ୍ତ ହେବାକୁ ପଛାଇ ନଥିଲେ । କିନ୍ତୁ ପୁଅ ନାକ ନିଶକୁ ତଳେ ପକାଇ ଦେଲା । ଫେଲ୍ ମାରିଲା ଉଚ୍ଚ ଶିକ୍ଷାର ପାହାଚ ଚଢ଼ାରେ ।

ନନ୍ଦ ଶପଥ କରି ଘରୁ ଗୋଡ଼ କାଢ଼ିଛି । ଚାକିରୀ କରିବ, ଫେରିବ । ନନ୍ଦର ବଂଶ ପରମ୍ପରାର ତୁଳନା ଖୋଜିବା ପାଇଁ ପୁରାଣ ଇତିହାସ ଖୋଜିବା ଦରକାର ନାହିଁ । ଯାହା ବଂଶ, ତାକୁ ବଡ଼ । ଯାହାର ଯାହା ପରମ୍ପରା, ତାହା ତାର ପ୍ରିୟ । ସବୁ ବଂଶ ବା କୁଳରେ ଜଣେ ଜଣେ କୁଳ ଦୀପକ ଥାଆନ୍ତି । ନନ୍ଦ ବଂଶରେ ଥିଲେ ତାର ଜେଜେ ବାପା ବା ଗୋସେଇଁ ବାପା । ପାଞ୍ଚ ହାତିଆ ଦୀର୍ଘ ବଳିଷ୍ଠ ଚେହେରା । ଖୁବ୍ କାମିକା । ଭାରି ପାରିବାର । ସେ ପଥର ଚାନ୍ଦିନୀକୁ ଲଗାଇ ଭଲ ଆଟୁ ଘର ସାହାଲାଟିଏ ତୋଳାଇଥିଲେ । କିଛି ଜମିବାଡ଼ି ବଢ଼ାଇ ଥିଲେ । ସେଥିପାଇଁ ପରିବାରଟି ଖାଇ ପିଇ ଭଲରେ ଚଳନ୍ତି । କୋଉଠି ହାତ ପତାଇବାକୁ କି ମୁଣ୍ଡ ନୁଆଁଇବାକୁ ପଡ଼େ ନାହିଁ । ଏମିତି ଅଭାବ ଅସୁବିଧା କି ଅଣ୍ଟନିଅଣ୍ଟ କାହାର ନାହିଁ । ଧାର କରଜ ହେଲେ ସୁଝା ହେବ । କିନ୍ତୁ ମାଗିଦେଲେ ସାତ ପୁରୁଷକୁ ନିନ୍ଦା । ନନ୍ଦ ଦାସ ଘର ଭଲରେ ଚଳନ୍ତି । ଦାଣ୍ଡରେ ମୁଣ୍ଡଟେକି ଚାଲିଲା ଭଳିଆ ଘର । ଧାନ ଧରମରେ ଅଭାବ ନଥିଲା ।

ଜମିରୁ ଧାନ ସିନା ହୁଏ; କିନ୍ତୁ ଧାନର ଦର କେତେ କି ? ପରିବାର ହାତକୁ ଟଙ୍କା କଉଡ଼ି ସେମିତି ଆସେ ନି । ଚାକିରିଆ ବେପାରିଙ୍କ ଘରେ ସିନାପଇସା । ନନ୍ଦ ଘରେ କେହି ବେପାର କରି ନଥିଲେ । ତାର ଜେଜେ କି ବାପା ଭଲ ଚାକିରୀ ପାଇବା ଭଳି ପାଠ ପଢ଼ି ନଥିଲେ । ବାହାରକୁ ଯିବାର ଇଛା ବି କରି ନଥିଲେ ସେମାନେ ।

ବାହାର କହିଲେ- କଟକ । ସେ ବହୁତ ବାଟ । ରେଳ ଧରିବାକୁ ହେଲେ ମେରାମୁଣ୍ଡଳିଯାଏ ଯିବାକୁ ପଡ଼େ । ସିଏ ବି ପାଖ ଆଖ ନୁହେଁ । ବସ୍‌ରେ ଗଲେ ବି ଢ଼େର ବାଟ । ଜଣେ ହୁଏତ ଜୀବନରେ କେବେ କଦବା ତୀର୍ଥ କରିବାକୁ ପୁରୀ ସିନା ଯିବ; ତୁଛାରେ କଟକ କି ଆଉ କୁଆଡ଼େ ଯିବା ଆସିବା କରିବାକୁ କାହିଁକି ବା ମନ କହିବ । ଗଲେ ଯାଉ ଥାଆନ୍ତେ ବନ୍ଧୁ ବାନ୍ଧବ ଘରକୁ । ସେ ସବୁ ପାଖାପାଖି । ତେଣୁ କେହି ଏତେ ବାଟ ଆସି ନଥିଲେ । କିନ୍ତୁ ନନ୍ଦ ଆସିଥିଲା ।

ନନ୍ଦ ଆସିଥିଲା ଯେ, କଟକରେ ଓହ୍ଲାଇ ନଥିଲା । କାରଣ ରାଜଧାନୀ ଉଠି ଆସିଥିଲା ଭୁବନେଶ୍ୱର । ସେ ପୁରୀ ଯାଏ ବି ଯାଇ ନଥିଲା । କାହିଁକି ନା, ସେ ତୀର୍ଥ କରିବାକୁ ଆସି ନଥିଲା । ଟିକେଟ୍ କାଟିଥିଲା ଭୁବନେଶ୍ୱର ଯାଏ ।

ସେତେବେଳେ ଭୁବନେଶ୍ୱର ଷ୍ଟେସନ ଥିଲା ଛୋଟ । ଗୋଟିଏ ଲମ୍ବା ପ୍ଲାଟ ଫର୍ମ । ତାର ପୂର୍ବ ପଟକୁ ମଝାମଝି ତିନି ଚାରି ବଖରାଥିବା ଦାଣ୍ଡିଏ ଘର । ବାରଣ୍ଡାଟି ଜାଫ୍ରି କରା ହୋଇଥାଏ । ସେଇଠି ଷ୍ଟେସନ ଅଫିସ୍ । ସେଥିରୁ ଗୋଟିଏ ବଖରାର ଝରକା ଥାଏ ଷ୍ଟେସନକୁ ଯିବା ଆସିବା କରିବା ଫାଟକ ମୁହଁରେ । ସେଇଟି ବୁକିଙ୍ଗ୍ ଅଫିସ୍ । ତାକୁ ଲାଗି ଥାଏ ମଝି ବଖରାଟି । ଯେଉଁଠି ବସନ୍ତି ସହକାରୀ ଷ୍ଟେସନ ମାଷ୍ଟର, ଟିକେଟ୍ କଲେକ୍ଟର । ଅବଶିଷ୍ଟ ବଖରାଟି ଷ୍ଟେସନ ମାଷ୍ଟରଙ୍କ ଅଫିସ୍ । ପୁଣି ପ୍ଲାଟ ଫର୍ମ ଉପରେ ଉଚ୍ଚ ପିଣ୍ଡା ଓ ଟାଇଲ ଛାଉଣି ହୋଇଥିବା ବଡ଼ ବଡ଼ ଉଚ୍ଚ ସୁନ୍ଦର ଘର କେତେବଖରା ଥାଏ । ସେଇଟା ରେଳ ଗାଡ଼ିର ଉଚ୍ଚ ଶ୍ରେଣୀରେ ଯାତାୟତ କରୁଥିବା ଯାତ୍ରୀମାନଙ୍କର ପ୍ରତୀକ୍ଷାଳୟ । ଷ୍ଟେସନ ବାହାର ପଟକୁ ପ୍ଲାଟଫର୍ମ ପାଚେରୀକୁ ଲାଗି ତୋଳା ହୋଇଥାଏ ମୁସାଫିର୍ ଖାନା । ସାଧାରଣ ଯାତ୍ରୀମାନଙ୍କର ଗତାଗତ, ବିଶ୍ରାମ, ଅପେକ୍ଷା ସବୁ ସେଇଠି ହୁଏ ।

ଲମ୍ବା ପ୍ଲାଟଫର୍ମର ମଝିରେ ମଝିରେ ସିମେଣ୍ଟ୍ ବେଞ୍ଚ । କେତୋଟି ପାଣି କଳ । ପଶ୍ଚିମ ପଟେ ନୂଆ ରାଜଧାନୀ ତୋଳା ଚାଲିଥାଏ । ସେତେବେଳେ ପ୍ଲାଟଫର୍ମ ଉପରୁ ସେପଟଟା ଦିଶୁ ଥାଏ ଫାଙ୍କା ଫାଙ୍କା, ଜଙ୍ଗଲିଆ । ମାଟି କର୍କଚାର ଖାଲଢ଼ିପ ପଡ଼ିଆରେ ବୁଦୁ ବୁଦୁକିଆ ଅରମା । ତାକୁ ଲାଗି ଦକ୍ଷିଣ ଦିଗରେ ଜଣେ କାହାର ପଥର ପାଚେରୀ ଘେରା

ବିରାଟ ବଗିଚା । ଷ୍ଟେସନର ପୂର୍ବ ପଟେ ଥାଏ କେତୋଟି ଦୋକାନ ଓ ହୋଟେଲ । ଛୋଟ ବଜାରଟିଏ ।

ନନ୍ଦ ଆସିଥିଲା ନୂଆ ରାଜଧାନୀକୁ । ସେ ଆସିଥିଲା ନୂଆ ଜୀବନର ସଂଧାନରେ; ନୂଆ ଚାକିରୀଟିଏ ଖୋଜିବା ପାଇଁ ।

## ।। ୩ ।।

ସେଦିନ ନନ୍ଦ ବୁଲି ବୁଲି ଯେତିକି ଥକି ନଥିଲା, ତହୁଁ ଅଧିକ ଥକି ଯାଇଥିଲା ଲୋକମାନଙ୍କ ବ୍ୟବହାର ଦେଖି ଦେଖି । ତାର ଗୋଡ଼ ମନ ତାକୁ ଟାଣି ନେଇଥିଲେ ପାର୍କ ଯାଏ । ସେଇଠି ବସି ପଡ଼ିଥିଲା ଗୋଟିଏ କଣରେ । ସେ ଥକା ମାରୁଥିଲା । କିଛି ସମୟ ଉତାରେ ପକେଟରୁ ବିଡ଼ି ଖଣ୍ଡିଏ କାଢ଼ି ନିଆଁ ଧରାଇଲା । ମନର ନିଆଁକୁ ଆଉ କୋଉଠି ଲଗାଇ ପାରୁ ନଥିଲା ତ, ସମ୍ଭାଳି ଧରୁଥିଲା ବିଡ଼ି ଅଗରେ ।

ସଞ୍ଜ ବେଳେ ସଳିତା ଅଗରେ ଏମିତି ଅଗ୍ନି ଶିଖାଟିଏ ଦେଖିଲେ 'ଦୀପମ୍ ଜ୍ୟୋତିଃ ପରଂ ବ୍ରହ୍ମ' କହି ନମସ୍କାର କରୁଥିଲା ନନ୍ଦ । ଦିଆସିଲି କାଠି ଅଗରେ ସେମିତି ଶିଖାଟିଏ ତ....... । କିନ୍ତୁ ତାକୁ ଦେଖି ତା ମନରେ କିଛି ହେଲେ ଭାବନା ଜାଗିଲା ନାହିଁ । ବିଡ଼ିଟିରେ ନିଆଁ ଧରିଲା ପରେ ଶିଖାଟି ଆପେ ଆପେ ଲିଭିଗଲା ।

ସେ ଧୂଆଁ ଛାଡ଼ିଲା । ତା ଭିତରେ ହତାଶା ସହିତ ମିଶିଯାଇଥିଲା ବାହାରର କିଛି ହତାଦର ଓ ଉଦାସିନତା । ସେ ସତେ ଅବା ସେତକ ଧୂଆଁ କରି ଉଡ଼ାଇ ଦେବାକୁ ଚେଷ୍ଟା କରୁଥିଲା । କିନ୍ତୁ ଦୁଃଖ ଏତିକି ଯେ, ସ୍ଥାନଟି ଥିଲା ଗାନ୍ଧୀ ପାର୍କ ।

ସାମ୍ନାରେ ଗାନ୍ଧୀଙ୍କର ପ୍ରତିମୂର୍ତ୍ତି, ସେ ତ ନିର୍ବାକ୍ ! ଅନ୍ୟ କେହି ମଧ ତାକୁ ନିବର୍ତ୍ତାଇଲେ ନାହିଁ ଧୂମ ପାନରୁ ।

ମହାତ୍ମାଙ୍କ ପ୍ରତିମୂର୍ତ୍ତି ପରା ବିବେକର ଜଗୁଆଳି ? ନନ୍ଦ ଭିତରେ କଣ ବିବେକ ଶୋଇ ପଡ଼ିଥିଲା ? ତାକୁ ଜାଗ୍ରତ କରାଇଦେବାଭଳି କଣ, କେହି ସେଠାରେ ନଥିଲେ ?

ହଁ, ଥିଲେ ତ !

ଗୋବିନ୍ଦ ବାବୁ ତ ସେଠି ଥିଲେ । ସେ ବି ପଦେ ଉପଦେଶ ଦେଇ ଯୁବକଟିର ବିବେକକୁ ଜାଗ୍ରତ କରାଇ ପାରିଥାଆନ୍ତେ । କିନ୍ତୁ ପାଖ ଲୋକର ବିବେକକୁ ଜାଗ୍ରତ କରାଇବାରେ ବିପଦ ଅଛି । ଗୋବିନ୍ଦ ବାବୁଙ୍କ ଭଳି ଧୂର୍ତ୍ତ ଲୋକ ସେହି ତତ୍ତ୍ୱଟି ଜାଣିଥିଲେ । ଏପରିକି ସେ ନିଜ ଭିତରେ ବି ତାଙ୍କ ବିବେକକୁ ଜାଗ୍ରତ ଅବସ୍ଥାରେ ଦେଖିବା କିମ୍ବା ଅନୁଭବ କରିବାକୁ ଚାହୁଁ ନଥିଲେ । ପୁଣି ଏଇ ଯୁବକ ? ହୋଇ ପାରେ ତାର ନାଁ ନନ୍ଦ ଅବା ଯାହା କିଛି । ତା ମୁହଁରେ ନେସି ହୋଇ ଯାଇଛି ବିରକ୍ତି ଓ ରୁକ୍ଷତା । ସେ ହୁଏତ ଗୋବିନ୍ଦ ବାବୁଙ୍କୁ ଚିହ୍ନି ପକାଇଛି । ସେ ତାକୁ ଦେଖି ଟିକିଏ ଛାନିଆ ହୋଇ ଯାଇଥିଲେ । ସେ ସବୁକଥା ଲକ୍ଷ୍ୟ କରି ନାହିଁତ !

ଗୋବିନ୍ଦ ବାବୁ ହୁଏତ ତାକୁ ଧୂମପାନର ଅପକାରିତା ବିଷୟରେ ଦୁଇପଦ କହି ପାରି ଥାଆନ୍ତେ । ପୁଣି ଏପରି ସ୍ଥାନରେ ଏହା ଅନୁଚିତ କର୍ମ ବୋଲି ସୂଚନା ଦେଇ ପାରି ଥାଆନ୍ତେ । କିନ୍ତୁ ସେ ଯଦି ତାଙ୍କୁ ଦିପଦ କଡ଼ା କଥା କହି ଦେଇ ଥାଆନ୍ତା, କିମ୍ବା ଯୁକ୍ତି ତର୍କ କରୁ କରୁ କଥାଟା ବଳାବଳକୁ ଉଠି ଯାଇ ଥାଆନ୍ତା, ଅଥବା ସେ ଗୋବିନ୍ଦବାବୁଙ୍କ ଗୁମର ଫିଟାଇ ଦେଇ ଥାଆନ୍ତା; ତେବେ ତ ସେ ପାଞ୍ଚଜଣଙ୍କ ଆଗରେ ଅପଦସ୍ଥ ହୋଇ ଯାଇଥାନ୍ତେ ନା !

ଗୋବିନ୍ଦବାବୁ ଯେ ଏତେ କଥା ହିସାବ କିତାବ୍ କରି ଚୁପ୍ ରହିଥିଲେ, ତା ନୁହେଁ । ଗୋବିନ୍ଦବାବୁ ନିଜେ ବିଡ଼ି ସିଗାରେଟ୍ ନ ଟାଣିଲେ ବି ପାନ ଖାଆନ୍ତି । କଳେ ଲୋଖାଏ ପିକ ଏଠି ସେଠି ପକାନ୍ତି । ସେ ଏପରି ବହୁ ସ୍ଥାନକୁ ଅପବିତ୍ର ଅସୁନ୍ଦର କରିଛନ୍ତି, ତାଙ୍କରି ଭଳି କେତେଜଣଙ୍କ ସହ । ତାଙ୍କ ଉପର ହାକିମ୍ ସିଗାରେଟ୍ ଟାଣନ୍ତି । ତାଙ୍କ ସହିତ କଥାବାର୍ତ୍ତା ହେବା ବେଳେ କଳେ ଲେଖାଏ ଧୂଆଁ ବେପରୁଆ ଭାବରେ ତାଙ୍କ ମୁହଁକୁ ଛାଡ଼ନ୍ତି । ସେ ସହି ଯାଆନ୍ତି । ଏପରି ସ୍ଥଳେ ନନ୍ଦଦାସ ନାମକ ଜଣେ ଯୁବକ ବିଡ଼ି ଖଣ୍ଡିଏ ଟାଣି ଦେବାରୁ କଅଣ ଏମିତି ମାରା ହୋଇଗଲା ଯେ, ସେ ମନା କରି ଥାଆନ୍ତେ ?

ପାର୍କର ଗୋଟିଏ କଣରେ ଦଳେ ଯୁବକ ବସିଥିଲେ । ପାଠ ପଢୁଥିବେ ହୁଏତ କଲେଜରେ । ସେମାନେ ସିଗାରେଟ୍ ଟାଣିବା ଅସ୍ୱାଭାବିକ ନୁହେଁ । କିନ୍ତୁ ଟାଣୁ ନଥିଲେ । ଗପୁଥିଲେ । ମୁଖ୍ୟ ବିଷୟ ବସ୍ତୁ ଥିଲା- କେତେଜଣ ସହପାଠିନୀ ଓ ଅଧ୍ୟାପକଙ୍କର ସ୍ୱଭାବ ଚରିତ୍ର ତଥା କ୍ରିୟାକଳାପ ।

ନନ୍ଦ ଯଦି ମନବଳାଇ ଥାଆନ୍ତା, ଏଥିରୁ ତାକୁ ଖୋରାକ୍ ମିଳି ଥାଆନ୍ତା ଗୋଟିଏ ପ୍ରଣୟ - ପ୍ରଧାନ ଉପନ୍ୟାସ ଲେଖିବା ପାଇଁ, ଅଥବା ସେ ଆଗର ନନ୍ଦ ହୋଇଥିଲେ କହି ଥାନ୍ତା- 'ବାହାରେ ଏଭଳି ଆଲୋଚନା ସୁନ୍ଦର ନୁହେ ଭାଇ '। କିନ୍ତୁ ସେ ନୀରବ ରହିଥିଲା ।

ଶ୍ରୀହରିବାବୁ ସିଧାସାଧା ଲୋକ । ଦାନ୍ତଗୁଡ଼ିକ ଧୋବ । ଶୁଭ୍ର ଖଦଡ ପରିହିତ ପ୍ରୌଢ଼ ବ୍ୟକ୍ତି । ସ୍ୱାଧୀନତା ସଂଗ୍ରାମରେ ସାମିଲ୍ ହୋଇଥିଲେ କି ନାହିଁ କହି ହେବ ନାହିଁ । କିନ୍ତୁ ଚେହେରା ଟି ଦେଖିଲେ ସେପରି ଭ୍ରମ ହୋଇ ପାରେ । ସେ ପିଲାମାନଙ୍କୁ ନିବର୍ତ୍ତାଇ ପାରି ଥାଆନ୍ତେ । ମାତ୍ର ତାଙ୍କର ପୂର୍ବ ଅଭିଜ୍ଞତା ଅଛି । ବେଶୀ ଦିନ ତଳର କଥା ନୁହେଁ ତ, ତେଣୁ ଭୁଲି ନାହାନ୍ତି ।

ସେଦିନ ଏଇଠି ପଞ୍ଚାଏ ଛାତ୍ର ଥଟାରେ ମଜାରେ ବଡ଼ପାଟି କରି ଗପୁଥିଲେ । କଥା କଥାକେ ବାକ୍ୟରେ ଅପଶବ୍ଦମାନ ଖଞ୍ଜି ଖଞ୍ଜି ବ୍ୟବହାର କରୁ ଥାଆନ୍ତି । ଶ୍ରୀହରିବାବୁଙ୍କ ରୁଚିବୋଧକୁ ବାଧିଲା । କହିଲେ - 'ଏଇଟା ଏପ୍ରକାର କଥାଭାଷା ହେବା ଭଳି ସ୍ଥାନ ନୁହେଁ ।' ଆଉ ଯିବେ କୁଆଡ଼େ ?

ଚିହିଙ୍କି ଆସିଲା ସେହି ଯୁବଛାତ୍ର ଦଳରୁ ଜଣେ । କହିଲା 'ଏଇଠି, ଏଇ ଗଛମୂଳେ, ପାର୍କ କାନ୍ଥରେ କଅଣ ଖଞ୍ଜା ହୋଇଛି ? ଏମିତି କାରୁକାର୍ଯ୍ୟ ଖଚିତ ପ୍ରାଚୀନ ମନ୍ଦିରର ପଥର ମିଉଜିୟମରେ ନରହି ଏଠି ଲଗା ଯାଇଛି କାହିଁକି ? ଏଇଟା ତା ରହିବା ଜାଗା ? ଆପଣ ପରା ସାମ୍ବାଦିକ ? ଆପରଣଙ୍କ ଆଖିରେ କଣ ଶୁଖୁଆ କଣ୍ଟା ଗେଞ୍ଜା ହୋଇଛି ?' ସେଇ ନହନହକା ପତଳା ପାତିଆ ଟୋକା ଖଣ୍ଡକ ଆଙ୍ଗୁଠି ହଲାଇ ହଲାଇ କହି ଯାଉଥାଏ । ଅନ୍ୟମାନେ ଠୋ ଠୋ ହୋଇ ହସୁ ଥାଆନ୍ତି । ଶ୍ରୀହରି ବାବୁଙ୍କର ମନରେ ଲାଖି ରହିଛି ସେଦିନର ଦୃଶ୍ୟପଟ୍ଟ ଓ ବାକ୍ୟାବଳୀ ।

ଶ୍ରୀ ହରିବାବୁ ନେତା ବା ଅଫିସରମାନଙ୍କୁ ଡ଼ରନ୍ତି ନାହିଁ । ବରଂ ସେମାନେ ତାଙ୍କୁ ଡ଼ରନ୍ତି । କିନ୍ତୁ ଏଇ ଯୁବକମାନଙ୍କୁ ତାଙ୍କର ଭାରି ଡ଼ର ।

ଶ୍ରୀହରିବାବୁ ନନ୍ଦକୁ ଦେଖି ଛନ୍ତି । ପୁଣି ଦେଖିଛନ୍ତି ତାର ଧୂମପାନର ରଙ୍ଗ ଢ଼ଙ୍ଗ । ହୁଏତ ଲକ୍ଷ୍ୟ କରିଥିବେ ତା ମୁହଁର ବିଷର୍ଣ୍ଣତା । ମାତ୍ର ଗୁରୁତ୍ୱ ଦେଇ ନାହାନ୍ତି । କିନ୍ତୁ କାହିଁକି ? ନନ୍ଦ ଓ ତାର ସମସ୍ୟା କଣ ସମ୍ବାଦ ପତ୍ରର ବିଷୟ ଭିତରକୁ ଆସି ପାରିବ ନାହିଁ ? ଶ୍ରୀହରିବାବୁଙ୍କର ସେଇ ଦୃଷ୍ଟି ହୁଏତ ଫିଟି ନାହିଁ । ଖବର କାଗଜର ସମ୍ପାଦକ କିମ୍ବା ମାଲିକମାନେ ସେ ଦିଗରେ ବୋଧହୁଏ ଆଗ୍ରହୀ ନୁହନ୍ତି ।

ନନ୍ଦ ଯଦି କୌଣସି କାରଣରୁ ଉତ୍ୟକ୍ତ ହୋଇ ଶ୍ରୀହରି ବାବୁଙ୍କୁ ମୁଥେ ମାରି ଥାଆନ୍ତା, ତେବେ ସେ ନିଶ୍ଚୟ ସମ୍ବାଦ ପତ୍ରର ବିଷୟ ଭିତରକୁ ଆସି ପାରି ଥାଆନ୍ତା । ଖବର କାଗଜମାନଙ୍କରେ ବାହାରି ଥାଆନ୍ତା- 'ଉତ୍ୟକ୍ତ ଯୁବକର ଅମାନୁଷିକ କାଣ୍ଡ'- 'ସାମ୍ବାଦିକଙ୍କ ଉପରେ ଆକ୍ରମଣ', କିଛି ଦିନ ଅନ୍ତେ ତଦୁପରି ସମ୍ବାଦ- 'ପୋଲିସ୍ ନିଷ୍କ୍ରିୟ, ସରକାରଙ୍କ ନିକଟରେ ସାମ୍ବାଦିକ ସଂଘର ଦାବୀ', 'ଗୁଣ୍ଡାମାନଙ୍କ ଉପଦ୍ରବରେ ବୁଦ୍ଧିଜୀବୀ ମହଲରେ ଆତଙ୍କ', 'ବିଧାନ ସଭାରେ ତୁମୂଳ ପ୍ରତିକ୍ରିୟା' । ପୁଣି ଜଣେ ନିଷ୍ଠାପର ସାମ୍ବାଦିକଙ୍କ ଉପରେ ଏପରି ନଗ୍ନ ଆକ୍ରମଣ ମୂଳରେ କୌଣସି ରାଜନୈତିକ ବ୍ୟକ୍ତିଙ୍କର ହାତ ଅଛି ବୋଲି ସନ୍ଦେହ ଇତ୍ୟାଦି । କିନ୍ତୁ ପୁଲିସ ଯଦି ଏମନ୍ତ ଘଟଣାରେ ନନ୍ଦ ଦାସକୁ ଧରି ନେଇ ଗୋଗଛ ବାଡ଼ିଆ କରି ହାଜତରେ ଠୁଙ୍କି ଦେଇ ଥାଆନ୍ତା, ସମ୍ବାଦ ଗୋଟିଏ ଦିନରେ ସରି ଥାଆନ୍ତା । ପ୍ରକାଶିତ ସମ୍ବାଦର ଶେଷ ବାକ୍ୟଟି ହୋଇଥାଆନ୍ତା 'ଆସାମୀ ପୁଲିସ୍ ହାଜତରେ ଅଛି । ଘଟଣାର ତଦନ୍ତ ଚାଲିଛି ।'

ଯଦି ଏବଂବିଧ ଘଟଣାରେ ନନ୍ଦ ଦାସକୁ ମାଜିଷ୍ଟ୍ରେଟ୍ଙ୍କ ପାଖରେ ହାଜର କରାଯାଇଆନ୍ତା ଏବଂ ସେ ରାଜଧାନୀର ବିଭିନ୍ନ ଦପ୍ତରରେ ଚାଲିଥିବା ପ୍ରିୟାପ୍ରୀତି ଲାଞ୍ଚ ଗୁଞ୍ଜା ଗୁଞ୍ଜି ଓ ବେକା ର ଯୁବକମାନଙ୍କ କିଂକର୍ତ୍ତବ୍ୟ ବିମୂଢ଼ତାର ବୟାନ ଦେଇ ଥାଆନ୍ତା, ତେବେ ସମ୍ବାଦ ପତ୍ରରେ ବାହାରି ଥାଆନ୍ତା- 'ଯୁବକର ଚାଞ୍ଚଲ୍ୟକର ତଥ୍ୟ ପ୍ରକାଶ', 'ସମ୍ପୃକ୍ତ ଅଫିସରମାନଙ୍କୁ ଚିହ୍ନଟ କରି ଉପଯୁକ୍ତ କାର୍ଯ୍ୟାନୁଷ୍ଠାନ ଲାଗି ପୁଲିସକୁ ଅଦାଲତଙ୍କର ନିର୍ଦ୍ଦେଶ ।'

ନନ୍ଦଦାସ ପାର୍କର ଗୋଟିଏ କଣରେ ବସିଥିଲା । ତଳେ ଘାସ ଉପରେ ନୁହେଁ, ସିମେଟ ବେଞ୍ଚରେ । ଘାସ ଉପରେ ବସିଥିଲେ ଦୁଇ ତିନି ଜଣ ଯୁବକ । ଏଣୁ ତେଣୁ ଗପୁଥିଲେ । ସେମାନଙ୍କ ଭିତରୁ ଜଣେ ଗୋଡ଼ିଟିଏମାନ ଉଠାଇ ପାଖ ପାଣି କୁଣ୍ଡ ଭିତରକୁ ଫୋପାଡୁଥିଲା । ସେଗୁଡ଼ିକ ଶବ୍ଦ କରି ପାରି ଭିତରକୁ ବୁଡ଼ି ଯାଉଥିଲା । ସେମିତି ନନ୍ଦ ଦାସ ବିଡ଼ି ଟାଣୁଥିଲା ।

କିଛି ଦୂରରେ ବସିଥିଲେ କୀର୍ତ୍ତନବାବୁ । ଭାବାବିଷ୍ଟ ଥିଲେ । ସେ ହୁଏତ ଯୁବକମାନଙ୍କୁ ଲକ୍ଷ୍ୟକରି ଭାବୁଥିବେ - ଦେଶରେ ମାନବ ସମ୍ବଳର କ୍ଷୟକ୍ଷତି ସମ୍ପର୍କରେ । ଯୁବଶକ୍ତିର ବିପୁଳ ଅପଚୟ ବିଷୟରେ ସେ ବିଶେଷ ଚିନ୍ତିତ । ସେ ସେଦିନ ନନ୍ଦଭଳି ଯୁବକମାନଙ୍କର ଦୃଷ୍ଟାନ୍ତ ଦେଇ ଅଲୋଚନା କରୁଥିଲେ । କିନ୍ତୁ କହୁ କହୁ କହିଦେଇଥିଲେ 'ଯେତେଦିନ ଯାଏ ଯୁବକମାନଙ୍କ ଅନ୍ତରର-ଅସନ୍ତୋଷ ବହ୍ନିମାନ ହୋଇ ହାତରେ ବିହୁଡ଼ି ନହୋଇଛି, ପାଟିର

ଭାଷାରେ ନ ଜାଳିଛି, ସେତେଦିନଯାଏ ଭାରତରେ ଫୁଙ୍କିମାରି ବୁଲୁଥିବା ତଥାକଥିତ ଗଣତନ୍ତ୍ରର କର୍ଣ୍ଣଧାରମାନେ ନିରାପଦରେ ଅଛନ୍ତି ଓ ରହିଥିବେ । ଆମର ଯୁବକମାନେ ଦିଆସିଲି କାଠି ଖଣ୍ଡିଏ ପାଇଲେ ସୂର୍ଯ୍ୟର ଅସ୍ତିତ୍ୱ ଭୁଲି ଯାଆନ୍ତି । ବିଡ଼ି ଖଣ୍ଡିଏ ପାଇଲେ ଜୀବନର ଜ୍ୱାଳାକୁ ଟାରି ଗୁଲରେ ଜଳାଇ ଝାଡ଼ି ଦିଅନ୍ତି । ସେମାନଙ୍କ ମନରୁ ଭାଗ୍ୟ ଆଉ ଭଗବନାଙ୍କୁ ଛୁଟି ଦେବାକୁ ହେବ । ସେମାନଙ୍କ ବୁଦ୍ଧିକୁ ତୀକ୍ଷ୍ଣ, ବିଚାରଧାରାକୁ ଯୁଗ ଉପଯୋଗୀ, ହୃଦୟକୁ ନିର୍ଭୟ, ମନକୁ ଯଥାର୍ଥ ଲକ୍ଷ୍ୟ ହାସଲ ଲାଗି ସଂକଳ୍ପବଦ୍ଧ କରାଇବାକୁ ହେବ । ସେତକ ହେଲା ପରେ ଦେଖି ପରଖି ହେବ, ଭାରତର ଗଣତନ୍ତ୍ର ଠିକ୍ ବାଟରେ ଚାଲିଛି କି ନାହିଁ । ସେମାନଙ୍କ ମୁହଁରେ ଉଜ୍ଜ୍ୱଳତା ନଫୁଟିଲା ଯାଏ ଦେଶର ଭବିଷ୍ୟତ ଉଜ୍ଜ୍ୱଳ ନୁହେଁ ।' କିନ୍ତୁ ସେ କେବଳ ଭାବନ୍ତି ଓ ସୁଯୋଗ ପାଇଲେ ଭାଷଣ ଦିଅନ୍ତି । ସେ ସ୍ୱଭାବତଃ ଅସନ୍ତୁଷ୍ଟ । ତାଙ୍କର ଅନୁରାଗୀ ଓ ଅନୁଗାମୀ ନାହାନ୍ତି । କେହି କେହି କୁହନ୍ତି- କୀର୍ତ୍ତନବାବୁ ଆଡ଼ବାୟା ! ସେ ନନ୍ଦପାଖକୁ ଆସି ନଥିଲେ କି ନନ୍ଦ ତାଙ୍କର ସମୀପ ବର୍ତ୍ତୀ ହୋଇ ନଥିଲା ।

ନନ୍ଦ ପାର୍କରେ ଆସି ବସିବା ଆଗରୁ ଯାଇଥିଲା ଗୋବିନ୍ଦବାବୁଙ୍କ ପାଖକୁ । ସେ ଗୋଟିଏ ଦପ୍ତରରେ ଜଣେ ପାରିବାର ବ୍ୟକ୍ତି । ତାଙ୍କୁ ଧରିପାରିଲେ କିଛି ନା କିଛି କର୍ମ ମିଳିଯିବାର ସମ୍ଭାବନା ସମ୍ପର୍କରେ ସୂଚନା ମିଳିଥିଲା । ନନ୍ଦ ତାଙ୍କ ପାଖରେ ଗୋଡ଼ ଭାଙ୍ଗି ଠିଆ ହୋଇଥିଲା । କିନ୍ତୁ କର୍ମ ବିନିମୟରେ ସେ ଲୋକଙ୍କଠାରୁ ଯାହା ପାଉଥିଲେ, ନନ୍ଦଦାସ ପକେଟରେ ସେତେ ଧନ ନଥିଲା ।

ସାଙ୍ଗରେ ଆଣିଥିବା ପଇସାରୁ ରାସ୍ତାଖର୍ଚ୍ଚ ଗଲାପରେ ଯେତିକି ଅବଶିଷ୍ଟ ଥିଲା, ସେଥିରେ କଠାଏ ବିଡ଼ି ଓ କେତେକପ୍ ଚା ଅଥବା କିଛି ଚିନା ବାଦାମ ଓ ମୁଢ଼ି ଛଡ଼ା ଅଧିକ ହୋଇ ପାରିନଥାନ୍ତା । ତେଣୁ ସେ ଗୋବିନ୍ଦ ବାବୁଙ୍କ ପାଖରୁ ଫେରି ଆସିଥିଲା । କେବଳ ସେତିକି ନୁହେଁ, ଏମିତି ଆଉ କେତୋଟି ଜାଗାରୁ ମଧ୍ୟ ଫେରିଥିଲା । ଲେଉଟାଣି ବାଟରେ ଦିଟା ବରା ଖାଇ ଦି ଗିଲାସ ପାଣି ଓ କପେ ଚା ପିଇଥିଲା । ତା ପରେ ମୁଣ୍ଡରେ କଣ ପଶିଗଲା କେଜାଣି, କିଣିଲା କଠାଏ ବିଡ଼ି ଓ ଗୋଟାଏ ଦିଆସିଲି ।

ନନ୍ଦ ବସିଥିଲା ଗାନ୍ଧୀ ପାର୍କରେ । ତାର ଭାଗ୍ୟକୁ ଆଦରି ବସି ଥିଲା ବିଚରା । ନିଜ ଜୀବନର ଯନ୍ତ୍ରଣାକୁ ହାଲୁକା କରିବା ପାଇଁ ଓଠରେ ଚାପି ଧରିଥିଲା ବିଡ଼ି ଖଣ୍ଡିଏ । କୁହୁଳା ପ୍ରାଣର ଧୂଆଁ ସେଇବାଟେ ବାହାରୁଥିଲା । କୀର୍ତ୍ତନବାବୁଙ୍କ ଭାଷାରେ ଭାବିଲେ- ବିଡ଼ି ଗୁଲରେ ଜଳି ଜଳି ଝଡ଼ି ପଡୁଥିବା ପାଉଁସ ଭିତରେ ହଜି ହଜି ଆସୁଥିଲା ତାର ଆକାଂକ୍ଷା ।

# ॥ ୪ ॥

ଆମେ ସତେ ଅବା ଗୋଟିଏ ଅନାତ୍ମୀୟ ମାଟିରେ ରହିଛୁ । କେହି କାହା କଥା ବୁଝିବାକୁ ପ୍ରସ୍ତୁତ ନୁହେ । ଜଣେ ଜଣକ ବିପଦରେ ସାହା ହେବାକୁ କି ଦୁଃଖରେ ଆହା କହିବାକୁ ନାହିଁ । ନନ୍ଦ ଦାସ ଓଡ଼ିଶାର ଗୋଟିଏ ଗାଁରୁ ଆସିଛି । ସେ କିଛି ଦୁନିଆ ବାହାର ଜାଗାକୁ ଆସି ନାହିଁ; ଆସିଛି ଓଡ଼ିଶାର ରାଜଧାନୀକୁ । ସେ ମୁଣ୍ଡଗୁଞ୍ଜିବାକୁ ଜାଗା ଟିକିଏ ନ ପାଇ ପାର୍କରେ ବସିଛି । ରାତି ହେଲେ ପୁଲିସ୍ ତଡ଼ି ଦେବ । ରାସ୍ତା କଡ଼ରେ ହୁଏତ ପଡ଼ିବ । ପଇସା ତ ସରିଲା । ଖାଇବ କେମିତି ? ଏଠି ଯଦି ଉପାସ ଭୋକରେ ପଡ଼ି ମରିବ, ଦୋଷ କାହା ମୁଣ୍ଡରେ ନଦା ହେବ ?

ନନ୍ଦ ଦାସର ମନେ ପଡ଼ିଲା ପିଲା ଦିନର କଥା । ନନ୍ଦ ଗାଁରେ ଦିନେ ଜଣେ ବାଟୋଇ ଅଟକି ଗଲେ । ଗାଁଯାକ ଲୋକ ତାଙ୍କର ରହିବା ଖାଇବା ଚର୍ଚ୍ଚାରେ ଲାଗି ପଡ଼ିଲେ । ଲୋକଟି ଉପାସ ଭୋକରେ କୋଉ ଗଛମୂଳେ ରାତିଟା କଟାଇ ଗଲେ ଗାଁକୁ ଅପନିନ୍ଦା । ସେ ଗାଁ ଲୋକେ କଣ କହିବେ ? କହିବେ, 'ଏତେ ବଡ଼ ଗାଁରେ ମଣିଷଟିଏ ନ ଥିଲେ ? ବାଟୋଇଟା ଉପାସ ଭୋକରେ ରାତି କଟାଇଲା !'

ଅଙ୍ଗେ ଲିଭାଇବା ଘଟଣା । ସେଦିନ ଅକସ୍ମାତ୍ ଝଡ଼ ଉଠାଇ ବର୍ଷା ହେଲା । ପାଖ ଗାଁର କୁଣିଆ ଗାଁ ଦାଣ୍ଡରେ ଯାଉ ଯାଉ ତାଙ୍କ ପିଣ୍ଡାକୁ ଉଠି ଆସିଲେ । ସେଇଠି ପିଣ୍ଡାରେ ଆଶ୍ରା ନେଲେ । ବର୍ଷା ଛାଡ଼ିବ କଣ ବଢୁଥାଏ । ସେତେବେଳକୁ ନନ୍ଦ ଘରେ ତରକାରି ସରି ଯାଇଥିଲା । ଭାତ ଡ଼ାଲି ଥାଏ । ନନ୍ଦ ସେତେବେଳକୁ ସାତ ଆଠ ବର୍ଷର ପିଲା । ତା ବୋଉ ତାକୁ ସାଙ୍ଗରେ ଧରି ପଡ଼ିଶା ଘରକୁ ଗଲେ । ତାଙ୍କ ଘରୁ ଗିନାଏ ତରକାରି ଆଣିଲେ । ଆମ୍ବୁଲ ଫଡ଼ାଏ ଆଣିଲେ । ଘରେ ହାଣ୍ଡିରୁ ବଡ଼ି କାଢ଼ିଲେ । ବଡ଼ି ଆମ୍ବୁଲରେ ପକାଇ ବଡ଼ି ଫୁଲା କଲେ । ବାରିରୁ ଶାଗ ପଟାଳିରୁ ଶାଗ ତୋଳି ଆଣି ଖରଡ଼ି ଦେଲେ । ବଡ଼ି ଗଣ୍ଡାଏ ଭାଜି ପିଆଜ କଟା ସହିତ ଚୁରି ଦେଲେ । ଅତିଥିଙ୍କ ପାଇଁ ଭାତ ସହିତ ଶାଗଭଜା, ତରକାରୀ, ବଡ଼ିଫୁଲା, ବଡ଼ିଚୁରା, ଡ଼ାଲି ଆଦି ପାଞ୍ଚ ଠା କରି ବାଢ଼ି ଦେଲେ । ସେ ଘର ପରି ସନ୍ତୋଷରେ ଖାଇ ପିଇ ଦାଣ୍ଡଘରେ ରାତିକ ବିଶ୍ରାମ ନେଲେ । ସକାଳୁ ଉଠିଲା ନନ୍ଦ, ପାଣି ଢ଼ାଳେ ଦାନ୍ତ କାଠି ଥୋଇ ଦେଲା ତାଙ୍କ ପାଇଁ । ବୋଉ କବାଟ ସେପଟେ ଥାଇ କହୁଥାଏ ପଚାର- ଗୁଡ଼ାଖୁ ଦରକାର ? କୁଣିଆ କୃତଜ୍ଞ ସ୍ୱରରେ ହଁ କଲେ । ସେ ଆଣି ଦେଲା । ସେ ଦାନ୍ତ ଘଷି ସାରିବା

ବେଳକୁ ଗିନାରେ ତେଲ ଧରି ଠିଆ ହେଲା ନନ୍ଦ ।

ପଚାରିଲା - ଗାଧୋଇ ଯିବେ ?

ସେ ତା ମୁଣ୍ଡରେ ହାତ ବୁଲାଇ କହିଲେ 'ନାଇଁରେ ବାବୁ, ବରଷାତ ଛାଡ଼ିଲାଣି, ଆମେ ଗୋଟିଏ ଗୋଟିଏ ଚାଲିଯିବୁ ।' ନନ୍ଦର ବାପା ଅତିଥିଙ୍କ ବିଛଣା ପତ୍ରର ବ୍ୟବସ୍ଥା କରିଥିଲେ । ତାଙ୍କୁ ଗାଁ ମୁଣ୍ଡଯାଏ ବଳାଇ ଦେବାକୁ ଯାଇଥିଲେ ।

ଅତିଥି ନନ୍ଦଦାସ ପରିବାରର କେହି ବା କିଛି ନଥିଲେ । ତାଙ୍କ ବନ୍ଧୁଘର ସହିତ ମଧ ନନ୍ଦଦାସଙ୍କ ଘରର କିଛି ସମ୍ପର୍କ ନଥିଲା । ଥିଲା କେବଳ ମଣିଷ ପଣିଆ । ଏତେ ବଡ଼ ରାଜଧାନୀରେ କଣ ସେତକ ନାହିଁ ?

ଦଳେ ଲୋକ ଗପି ଗପି ପାର୍କ ଭିତରକୁ ଆସିଲେ । ନନ୍ଦ ବାଟଦେଇ ଟିକିଏ ଦୂରକୁ ଥିବା ପାଣି ଫୁଆରା ଆଡ଼କୁ ଗଲେ । ନନ୍ଦ କାନରେ ବାଜିଲା ଆପଣାର 'ବୋଲି ।' ହେଲେ ହେଉ ପଛକେ ବୋଲି; ତା ପାଇଁ ସିଏ ଭାଷା । ଏଇ ଭାଷାରେ ସେ କଥା ଭାଷା ହୁଏ-ଘରେ, ଗାଁଆରେ । ତା ଭାଷା ବହିର ଭାଷାରୁ ଭିନେ । ସେ କ୍ଲାସରେ, ସ୍କୁଲରେ, କଲେଜରେ ସାଦ୍‌ମାନଙ୍କ ସହିତ ବହିର ଭାଷାରେ କଥାବାର୍ତ୍ତା ହୁଏ । ଭୁବନେଶ୍ୱରରେ ବି ସେଇ ବହିର ଭାଷା ଚଳେ । ହେଲେ ତା 'ବୋଲି' ତା ପାଟିରେ ଭଲ ପଇଟେ । ସେ କାନେଇଲା ।

ସେମାନଙ୍କ ମନରେ କ୍ରୋଧ, ତାଙ୍କ ଗାଁ ଗଣ୍ଡା ଜମିବାଡ଼ି ବୁଡ଼ିଲା । ଏଠି ଆଲୁଅ ଜଳିଲା । ପଙ୍ଖା ବୁଲିଲା । ପାର୍କ ହେଲା । ପାର୍କରେ ଏଇ ଯେଉଁ ପାଣିର ଫୁଆରା, ନେଳି ନାଲି ଆଲୁଅ ସାମ୍ନାରେ ନାଚୁଛି, ସିଏ କାହା ପାଇଁ ? ପାଣି ସିନା କୁଆଖାଇ ନଈର; ଆଲୁଅ ? ଲୋକମାନେ ବୋଧହୁଏ କୌଣସି ରାଜନୈତିକ ଦଳର ସମର୍ଥକ । ସେମାନଙ୍କ ଏମ୍. ଏଲ୍. ଏଙ୍କ ପାଖକୁ ଆସିଥିବେ । ନନ୍ଦ କାନରେ ସ୍ପଷ୍ଟ ଧରା ଦେଉଥାଏ, ସେମାନଙ୍କ ଭାଷା ଓ ଭାବ । ସେମାନଙ୍କ ଆଲୋଚନା ଚାଲିଥାଏ ଅବିରତ । ମଝିରେ ମଝିରେ ଗୋଟିଏ ଶବ୍ଦ ବଡ଼ ଜୋରରେ ଶୁଭୁଥାଏ-'ବୈମାତୃକ ଭାବ ।'

ନନ୍ଦ ଭାବିଲା ସେମାନଙ୍କ ସହିତ ସାମିଲ ହେବ । ସମ୍ବଲପୁରୀବୋଲିରେ କଥା ଭାଷା ହେବ । ମନ ବୋଧ କରି ଗୋବିନ୍ଦବାବୁଙ୍କୁ ଗାଳିଦେବ । ସେ କଟକିଆ । ତେଣୁ ତାକୁ ଚାକିରି ଦେଲେ ନାଇଁ । କିନ୍ତୁ, ପୁଣି ଟିକିଏ ଭାବିଲା । ଗୋବିନ୍ଦବାବୁ କଟକ ସମ୍ବଲପୁର ବୁଝନ୍ତି ନାହିଁ । ତାଙ୍କର ପଇସା ଦରକାର । କିଛି ମାଲାମାଲ୍ ଧରାଇ ଦେଇଥିଲେ, ସେ ବି ଚାକିରି

ପାଇ ଥାଆନ୍ତା ।

ନନ୍ଦର ତା ଗାଁ ଓ ଶୈଶବର ସ୍ମୃତି ସହିତ ସ୍କୁଲରେ ପଢ଼ିଥିବା କବିତାରୁ ପଦେ ମନେ ପଡ଼ିଲା ।

Happy the man
Whose wish and care
A few paternal acres bound.....

ମାନ ଗୋବିନ୍ଦ ବାବୁଙ୍କ ପାନଖିଆ ପାଟିର ଉଚ୍ଚାରଣ, ପଢ଼େଇବା ବେଳେ ତାଙ୍କର ଚାହାଣି, ଅଙ୍ଗ ଭଙ୍ଗି ଦିଶିଗଲା ପରି ଲାଗିଲା ।

ଯେଉଁମାନେ ପାଠଶାଠ ପଢ଼ି ନାହାନ୍ତି, ଗାଁରେ ଅଛନ୍ତି । ଚାଷବାସ କରି ଚଳୁଛନ୍ତି । ସେମାନେ କହନ୍ତି- 'ଲଙ୍ଗଳ-କଣ୍ଢିରେ ହାତ ପକାଇଲେ ଚାଷୀର ପେଟ ଅପୋଷା ରହେ ନାହିଁ ।' ଗାଁରେ ନିଜେ ଚାଷ ନ କରି ମୂଲିଆ ଲଗାଇ ଚାଷ କରୁଥିବା ଲୋକ ବି ଅଛନ୍ତି । ତାର ବାପା, ଗୋସେଇଁ ବାପା ବି ସେଇଆ କରୁଥିଲେ । କିନ୍ତୁ ଚାଷର ତତ୍ତ୍ୱନେବା ଭଳି ଜ୍ଞାନ ସେମାନଙ୍କର ଥିଲା । ନନ୍ଦ ଅନୁଭବ କଲା, ସ୍କୁଲ କଲେଜର ପାଠ ଲଙ୍ଗଳ କଣ୍ଢିରେ ହାତ ପକାଇବାର ବଳ ହରି ନେଇଛି । ପୁଣି ହିଡ଼ରେ ବସି, ଖରାତରାରେ ଚାଷୀ ସହିତ ଚାଷୀ ହୋଇ ଚାଷ ବାସର ଯତ୍ନ ନେବାର ମାନସିକତା ମଧ୍ୟ ନଷ୍ଟ କରି ଦେଇଛି । ସତେ ଅବା ଆଗରେ ଦେଖିବା ଭଳି ଲାଗିଲା- ବୋଉର କୁଳୁଚି ସଜାଡ଼ିବା, ବାପାଙ୍କର ଗୋରୁ କୁଣ୍ଡରେ ହାତ ପୁରାଇ ବଳଦମାନଙ୍କୁ ମୁହାଁଇବାର ଦୃଶ୍ୟ । ଘରେ ଗୋରୁଗାଇ ନଖାଇବାଯାଏ ତାର ବୋଉ ବାପା କି ଗୋସେଇଁମା ଖାଆନ୍ତି ନାହିଁ । ସକାଳୁ ଘର ଅଗଣା ଓଳେଇ ସାରି ପବିତ୍ର ପାଣି ପକାଇବା, ଚଉରା ଲିପିବା, ଗାଧୋଇ ସାରି ଚଉରା ମୂଳେ ପାଣି ଦେବା, ରାତି ହେଲେ ସଞ୍ଜବତୀ ଦେବା ପରି ଗୋରୁ ଗୁହାଳ ଲିପି ସଫା ରଖିବା ଓ ଗୋରୁ ମୁହାଁଇବା , ଘରର ନିତ୍ୟକର୍ମ । କଥାରେ ଅଛି

'ଗୁହାଳ ସଫା ଥିଲେ ଗୋରୁ ହମ୍ୱାଳି ପଶେ ।'

ସଫା ଗୁହାଳରେ ଗୋରୁଙ୍କୁ ଫାଟୁଆ ହୁଏ ନାହିଁ । ଗୋରୁଗାଇଙ୍କୁ ନିରୋଗ ରଖିବା ପାଇଁ କେତେ ଯତ୍ନ ନିଅନ୍ତି ସେମାନେ !

ନନ୍ଦର ପୁଣି ମନେ ପଡ଼ିଲା ସ୍କୁଲ ବିଚିତ୍ରାନୁଷ୍ଠାନ କଥା । ତାର ଚେହେରା ସାଙ୍ଗଙ୍କୁ

ସ୍ୱରଥିଲା ଖୁବ୍ ଭଲ । ସ୍କୁଲର ବାର୍ଷିକ ଉତ୍ସବ ହେଉଥାଏ । ସେଇ ଉପଲକ୍ଷେ ଆୟୋଜିତ ହୋଇଥାଏ ବିଚିତ୍ରାନୁଷ୍ଠାନ । ସେଇଥିରେ ନନ୍ଦ ଆବୃତ୍ତି କରୁଥିଲା କୌଣସି ଜଣେ କବିଙ୍କର ଗୋଟିଏ ଗୀତ । ସେଥିପାଇଁ ତାକୁ ନକଲି ପ୍ରଜାପତିଆ ନିଶ ଓ ନକଲି ବାବୁରି ବାଳ ପିନ୍ଧାଇ ବେଶ କରାଇ ଦିଆଯାଇଥାଏ । ସେ ଅଙ୍ଗ ଭଙ୍ଗୀକରି ବୋଲୁଥାଏ-

ଆଇ.ଏ. ଗଲେ ବି.ଏ
କିଛି ନୋହିଲେ ଗ୍ରାଜୁଏଟ୍‌ଟା କହିବ ହେଲେ କିଏ ।
କୁଟୁକୁଟିଆ କଜଳ କେଶ
ନାକ ତଳକୁ ଅଳପ ନିଶ
ପରଚକ୍ଷୁରେ ଆପଣା ବେଶ
ନୟନ ମୋହି ନିଏ
ଆଇ, ଏ ଗଲେ ବି.ଏ ।
ଡେ଼ପୁଟି ଗିରି ମିଳିଲେ ଖଣ୍ଡେ
ଆଉକେ ଦେଖେ ଗାଉଁଲି ଦାଣ୍ଡେ
ମଥାରେ ଥିଲେ ଆଇନ କାଣ୍ଡେ
ବହୁତ କାମ ଦିଏ
ଆଇ.ଏ.ଗଲେ ବି.ଏ....

ଘରକୁ ଫେରି ଗୋସେଇଁମାଙ୍କ ଆଗରେ ସେଇଗୀତ ବୋଲିଲା ବେଳେ ବୁଢ଼ି ହସି ହସି ଗଡ଼ି ଯାଆନ୍ତି । କହନ୍ତି- 'ନିଲଜ ଲାଉ ଟେକିଟାକି ଦେଲେ ପିଢ଼ାକୁ ଯାଉ ।'

ନନ୍ଦର ଉଦ୍ୟମରେ ନିଷ୍ଠା ମିଶିଥିଲେ, ତାକୁ ତା ପାଠ ସହିତ ହୁଏତ ଟେକିଦେଇଥାନ୍ତେ...... । କିନ୍ତୁ ମନ କହେ ଆନ୍, କର୍ମ କରେ ଆନ୍ । ଏହା ସବୁ ଉଦ୍ୟମର ଅଭାବ, ନା କର କପାଳର ଦୋଷ ?

ନନ୍ଦ ନିଜ ଡ଼ାହାଣ ହାତ ପାପୁଲିକୁ ଅନାଇଲା । କେତେକ୍ଷଣ ଭାବୁ ଭାବୁ ତାକୁ ନେଇ ଖୁବ୍ ଜୋରରେ ନିଜ କପାଳରେ ପିଟି ଦେଲା !

ସେଇ ବାଟ ଦେଇ ଚାଲିଯାଉଥିବା ପିଲାଟି ଚମକି ପଡ଼ିଲା । ଅଟକି ଯାଇ ପଚାରିଲା - 'କଣ ହେଲା କି ବାବୁ ?'

ନନ୍ଦ ଅନାଇଲା । ପିଲାଟି ହାତରେ ଆଠ ଦଶଟି ଚିନାବାଦାମ ପୁଡ଼ିଆ । କାଗଜକୁ

ଦୁଦୁରା ଫୁଲ ପରି କରି ଗୁଡ଼ାଇଛି । ବେକରେ ଝୁଲାଇଥିବା ଡ଼ାଲାରୁ ସେଥିରେ କିଛି କିଛି ପୁରାଇ ପୁଣି ପୁଡ଼ିଆ କରୁଛି । ଗୋଟାକୁ ଅଣାଏ । କିଛି ସମୟ ତଳେ ଦିଟାରିଜଣ ଯୁବକ ତାଠୁ କିଣୁଥିଲେ । କିନ୍ତୁ ନନ୍ଦ ପାଖରେ ପଇସା ନାହିଁ ବୋଧ ହୁଏ । ସେ ପକେଟରେ ହାତ ପୂରାଇଲା । ତୁଚ୍ଛା ହାତଟାକୁ କାଢ଼ି ଆଣିଲା ।

ପିଲାଟି କଅଣ ଭାବିଲା କେଜାଣି ! ତା ହାତକୁ ପୁଡ଼ିଆ-ଟିଏ ବଢ଼ାଇ ଦେଲା ।

ନନ୍ଦ କହିଲା - 'ଥାଉ ପଇସା ନାହିଁ ।'

ସେ କହିଲା- 'ନଥାଉ ନିଅ । କାଲିକି ପଇସା ଦେବ ।'

ଏ ପିଲାଟି ତାହେଲେ ନନ୍ଦର ପରିଶୋଧ କ୍ଷମତା କଳନା କରି ନାହିଁ ! ନନ୍ଦ କ୍ଷଣେ ଭାବିଲା, କହିଲା- 'ନାଇଁ ନାଇଁ, କାଲି ତୋ ସହିତ ଦେଖା ହେବ ନାହିଁ । ଥାଉ ।'

ପିଲାଟିର ଖୁସୁମା ଖୁସୁମି ମୁହଁ, ଡ଼ଉଲ ଡ଼ାଉଲ ଚେହେରା ଦେଖିଲେ ଖୁସି ଲାଗିବ । ହସି ଦେଲା ବେଳେ ଗାଲରେ ସୁନ୍ଦର ଖାଲଟିଏ ହୋଇଯାଏ । ଉଜ୍ଜଳ ଆଖି, ମୁଣ୍ଡରେ କଳା ମୁଚୁ ମୁଚୁ ଗହଳିଆ ବାଳ । ତା ସହିତ ଛିଣ୍ଡା କୋତରା ଜାମା ପ୍ୟାଣ୍ଟ ଓ ବେକରେ ଝୁଲୁଥିବା ପସରା ଦେଖିଲେ ଯିଏ ଯାହା ଭାବୁ, ସେ ଖୁସି ମନରେ ତା ବେଉସା କରୁଥାଏ । ସେ ନନ୍ଦ ଆଡ଼କୁ ଅନାଇଲା । ପୁଡ଼ିଆଟି ଫେରାଇ ନନେଇ ହସ ହସ ମୁହଁରେ ଚାଲିଗଲା । ନନ୍ଦ ଆଖିରୁ ଠପ୍ ଠପ୍ ଦୁଇ ବୁନ୍ଦା ଲୁହ ବୋହି ପଡ଼ିଲା ।

## || ୪ ||

୧୯୪୯-୫୦ ମସିହା ।

ସ୍ୱାଧୀନତା ପ୍ରାପ୍ତି ପରେ କେତେ ଆଶା ଆକାଙ୍କ୍ଷାର ବର୍ଷ ଦୁଇଟି । ୧୯୪୯ରେ ସ୍ୱାଧୀନ ଭାରତର ନୂଆ ସଂବିଧାନ ପ୍ରଣୟନ ଶେଷ ହେଲା । ତହିଁ ପରବର୍ଷ ଏହାକୁ କାର୍ଯ୍ୟକାରୀ କରାଗଲା । ସେଥିପାଇଁ ୧୯୪୭ ଅଗଷ୍ଟ ୧୫ ପରି, ୧୯୫୦ ଜାନୁୟାରୀ ୨୬ ପ୍ରତ୍ୟେକ ଭାରତୀୟଙ୍କ ଲାଗି ପବିତ୍ର ଦିବସ ।

୧୯୪୭ ରୁ ୧୯୫୦ ଭିତରେ ଦେଶ ପାଇଁ ଯୋଜନାବଦ୍ଧ ଅର୍ଥନୀତି କଥା ଚିନ୍ତା କରାଯାଉଥିଲା । ନେହେରୁ ହେଲେ ଭାରତର ପ୍ରଥମ ପ୍ରଧାନ ମନ୍ତ୍ରୀ । ସେ ଭାରତର ଅର୍ଥନୈତିକ ରୂପରେଖ ନିର୍ଦ୍ଧାରଣ କରିବାକୁ ୧୯୪୭ ବେଳକୁ ଜାତୀୟ ଯୋଜନା କମିଟି ଗଢ଼ିଲେ ।

୧୯୫୦ରେ ଗଢ଼ାଗଲା ଯୋଜନା କମିଶନ୍ । ଦେଶର ଅର୍ଥନୈତିକ ସମ୍ବଳ ଓ ଆବଶ୍ୟକାତାକୁ ଚାହିଁ ଯୋଜନା କରିବାକୁ ହେବ । ଦେଶର ଅର୍ଥ ନୈତିକ ଉନ୍ନୟନ ପାଇଁ ଲାଗିପଡ଼ିବାକୁ ହେବ । ପୃଥିବୀର ଆଉ ପାଞ୍ଚଟା ଟାଣୁଆ ଦେଶ ଭିତରେ ଭାରତ ହେବ ଗୋଟାଏ । ଜନ୍ମଭୂମି ଆମର ଦୁନିଆର ବଡ଼ ବଡ଼ ଦେଶମାନଙ୍କ ସହିତ ସମକକ୍ଷ ହୋଇ ଛିଡ଼ା ହେବ । ଏଇ ଥିଲା ତାଙ୍କର ସ୍ୱପ୍ନ ଓ ତା ପାଇଁ ସ୍ୱାଧୀନତାର ସଂକଳ୍ପ । ଏଇ ସ୍ୱପ୍ନକୁ ଘେନି ୧୯୫୧ରେ ହେଲା ପ୍ରଥମ ପଞ୍ଚବାର୍ଷିକ ଯେଜନାର ଆରମ୍ଭ ।

ଭାରତ ଦେବ ବାଞ୍ଛିତ ଭୂମି । ଦେବତାମାନେ ଏଇଠି ଜନ୍ମିବାକୁ ସୁଖ ପାଆନ୍ତି । ଅହୋଭାଗ୍ୟ ମଣନ୍ତି । ଏହି ଭୂମିଖଣ୍ଡକ ସ୍ୱର୍ଗ ଏବଂ ଅପବର୍ଗ ପାଇବାର ବାଟ ବୋଲି ପଣ୍ଡିତ ମହାଶୟ କହୁଥିଲେ । ନନ୍ଦର ମନେ ପଡ଼ିଗଲା ସ୍କୁଲ ଜୀବନର ସୁଖକର ଦିନ ଗୁଡ଼ିକ । ସେ ତାଙ୍କରିଠାରୁ ଦୁଇଟି ଦେଶାତ୍ମବୋଧକ ସଂଗୀତ ଶିଖିଥିଲା । ଗୋଟିଏ-ବଙ୍କିମ ଚନ୍ଦ୍ରଙ୍କ 'ବନ୍ଦେ ମାତରମ', ଆରଟି ରାଧାନାଥଙ୍କର 'ଉତ୍କଳ ବନ୍ଦନା '। ସେ ଜାତୀୟ ଦିବସମାନଙ୍କରେ ଏହାକୁ ବୋଲୁଥିଲା ।

ସେ ଯେତେବେଳେ ବନ୍ଦେମାତରମ୍ ବୋଲେ ଅଥବା ଶୁଣେ, ତା ଅନ୍ତର ଭିତରୁ ଶିହରଣ ଚହଟି ଆସେ । 'ସୁଜଳାଂ, ସୁଫଳାଂ, ମଳୟଜ- ଶିତଳାଂ, ଶସ୍ୟ ଶ୍ୟାମଳାଂ' ଭାରତମାତାଙ୍କର ବନ୍ଦାନା ଗାଇବା ବେଳେ ମନ ତାର ପୁଲକିତ ହୋଇ ଉଠେ । ଏଇ ସଂଗୀତଟି ପରାଧୀନ ଭାରତରେ ବୋଧହୁଏ ଉନବିଂଶ ଶତାବ୍ଦୀର ଶେଷ ଆଡ଼କୁ ଲେଖା ହୋଇଥିଲା ।

ବିଂଶ ଶତାବ୍ଦୀର ଆରମ୍ଭ ବେଳକୁ ଗଢ଼ା ହେଲା ଉତ୍କଳ ସମ୍ମିଳନୀ । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବ । ଭାରତ ମାତା କୋଳରେ ମର୍ଯ୍ୟାଦାର ସହିତ ବସିବ । ଏହା ଥିଲା ପ୍ରତ୍ୟେକ ଓଡ଼ିଆର ଜାତୀୟ ଆକାଙ୍କ୍ଷା । ଉତ୍କଳ ସମ୍ମିଳନୀର ଅଧିବେଶନ ପାଇଁ କବିବର ରାଧାନାଥ ସଂସ୍କୃତରେ ଲେଖିଥିଲେ- 'ଉତ୍କଳ ବନ୍ଦନା '। ତାର ପ୍ରଥମ ପଦଟି ଥିଲା- 'ସର୍ବେଷାଂନୋ ଜନନୀ ଭାରତ ଧରଣୀ କଳ୍ପ ଲତେୟମ୍ ।' ଧରଣୀ ଭାରତ ମାତା ଆମର ଇଚ୍ଛା ପୂରଣ କାରିଣୀ ଜନନୀ । ସେଥିରେ ପୁଣି ଗୋଟିଏ ପଦଥିଲା-'ଅସ୍ମଜ୍ଜନ୍ମଦ ମନ୍ନଦ ମନିଶଂ ଶ୍ରୌତ ପୁରାତନ ମାର୍ଷମ', ବେଦ ଓ ମୁନିଋଷି ବନ୍ଦିତ ଏହି ଭାରତ ବର୍ଷ ଆମମାନଙ୍କୁ ଜନ୍ମ ଦେଇଛି, ଅନ୍ନ ଦେଉଛି । ଲାଳନପାଳନ କରୁଛି । ନନ୍ଦର ଅତି ପ୍ରିୟ ସଂଗୀତ ଥିଲା ଏଇଟି । ତାର ସେଇ ସ୍ୱପ୍ନ-ସବୁଜ-ଦିନର ସ୍ମୃତି ବାସ୍ତବତାର ସ୍ପର୍ଶରେ ଧୂସର ହୋଇ ଆସୁଛି ।

୧୯୫୨ରେ ଭାରତର ପ୍ରଥମ ସାଧାରଣ ନିର୍ବାଚନ ସରିଛି । ଦେଶର ଜନଗଣ ବିଧାନ ସଭା ଓ ଲୋକସଭା ପାଇଁ ମନୋମତ ପ୍ରାର୍ଥୀ ବାଛି ଦେଇଛନ୍ତି । ଏମାନେ ପାଞ୍ଚବର୍ଷ ପାଇଁ ଦେଶକୁ ଚଳାଇବେ । ପ୍ରଥମ ପଞ୍ଚବାର୍ଷିକ ଯୋଜନାର କାର୍ଯ୍ୟକାଳ ମଧ ୧୯୫୧-୫୨ ରୁ ୧୯୫୫-୫୬ ପର୍ଯ୍ୟନ୍ତ । କେତେ ଆଶା, କେତେ ଆକାଙ୍କ୍ଷାର ବାଣୀ ଶୁଣିଛି ଏଜାତି !

ସମାଜବାଦୀ ଢ଼ାଞ୍ଚାର ସମାଜ ଗଢ଼ାହେବ । କୃଷି ଓ ଗ୍ରାମ୍ୟ ଶିଳ୍ପ ଉପରେ ଗୁରୁତ୍ୱ ଦିଆଯାଇଛି ବୋଲି କୁହାଯାଉଛି । ଆଗ ଭାତ, ପଛେ ଭାଗବତ । ସେଥିପାଇଁ ପ୍ରଥମ ପଞ୍ଚବାର୍ଷିକ ଯୋଜନାରେ ଖାଦ୍ୟଶସ୍ୟ ଉତ୍ପାଦନ ବଢ଼ାଇବା ପାଇଁ ଯଥେଷ୍ଟ ଗୁରୁତ୍ୱ ଦିଆଯାଇଛି ବୋଲି ମଧ ପ୍ରଚାର ଚାଲିଛି ।

ଯୁବକ ଅଥଚ ଦୁର୍ବଳ ନନ୍ଦ ଦାସ ଅଣ୍ଟାରେ ହାତ ଠେସିଲା । ମୋଡ଼ି ଭିଡ଼ିହେଲା, ଠିଆ ହେଲା । ଚେଷ୍ଟାକଲା ଶରୀରକୁ ଆଗୁସାର କରାଇବାକୁ । କେତେ ପାହୁଣ୍ଡ ଆଗକୁ ଯାଇ ଅଟକି ଗଲା । ବୁଲି ଛିଡ଼ା ହେଲା, ଅନାଇଲା । ସାମ୍ନାରେ ଉତ୍କୀର୍ଣ୍ଣ ଅକ୍ଷର କେତୋଟି ଉପରେ ଦୃଷ୍ଟି ପଡ଼ିଲା । ଲେଖା ହୋଇଛି- 'ଆଜି ୧୩ ତାରିଖ ଅପ୍ରେଲ ୧୯୪୮ ଦିନ ଏହା ଘୋଷଣା କରିବାରେ ମୁଁ ଗର୍ବ ଓ ଆନନ୍ଦ ଅନୁଭବ କରୁଛି ଯେ, ଏହି ଭୁବନେଶ୍ୱର ରାଜଧାନୀର ଶିଳାନ୍ୟାସ ଉତ୍ତମ ଓ ଯଥାର୍ଥ ଭାବରେ ହୋଇ ଅଛି । ଓଡ଼ିଶାର ଜନତାର କଲ୍ୟାଣ ପାଇଁ ଏହି ନଗରକୁ ମୁଁ ଉତ୍ସର୍ଗ କରୁଛି ।' ତାପରେ ଲେଖା ଅଛି 'ଜୟହିନ୍ଦ୍' ଓ ତା ତଳକୁ- 'ଜବାହାରଲାଲ ନେହେରୁ ।'

ନନ୍ଦଦାସ ସେହି ବର୍ଷ ସେହି ତାରିଖଟିକୁ କଳ୍ପନା କରିବାକୁ ଚେଷ୍ଟା କଲା । ସେ ଆଜି ଯେଉଁଠି ଛିଡ଼ା ହୋଇଛି, ସେଦିନ ଏଇଠି ବହୁ ଜନ ସମାବେଶ ହୋଇଥିବ । ପଣ୍ଡିତ ନେହେରୁ ହିନ୍ଦୀରେ ଭାଷଣ ଦେଇଥିବେ । କେତେ ଅନ୍ତରରେ କେତେ ଆନନ୍ଦ, କେତେ ଆଶା, କେତେ ଆକାଙ୍କ୍ଷାର ସଞ୍ଚାର ହୋଇଥିବ ।

ପ୍ରଥମ ପାଞ୍ଚବାର୍ଷିକ ଯୋଜନାର କାର୍ଯ୍ୟକାଳ ସରି ସରି ଆସୁଛି । ଏ ଭିତରେ ଇମ୍ପେରିଆଲ ବ୍ୟାଙ୍କ୍ ହୋଇଛି- ଷ୍ଟେଟ ବ୍ୟାଙ୍କ । ଦେଶର ଅର୍ଥ ନୀତିର ବିକାଶ, ପଞ୍ଚବାର୍ଷିକ ଯୋଜନାମାନଙ୍କର ସଫଳତାରେ ଏହା ହୁଏତ କିଛି ଭୂମିକା ଗ୍ରହଣ କରିପାରେ । କିନ୍ତୁ ନନ୍ଦ ଦାସ ପାଇଁ ଷ୍ଟେଟ ବ୍ୟାଙ୍କ କଣ କରିପାରିବ ? ସେ ତାର ମଳିନ ପରିଧାନ, ବିଷର୍ଣ୍ଣ ମୁଖ ଓ

ଦୁର୍ବଳ ଦେହରେ ସେଠାରେ ପହଞ୍ଚିଗଲେ କିଏ ତା ଆଡ଼କୁ ଅନାଇ ତା କଥା ବୁଝିବ ? କର୍ମଚାରୀମାନେ ତ ଦରମା ପାଇଁ ଚାକିରୀ କରୁଛନ୍ତି । ସେମାନେ କଣ ନନ୍ଦଦାସମାନଙ୍କ କଥା ବୁଝିବାକୁ ବସିଛନ୍ତି ?

ନନ୍ଦ ଦାସର ଆଖି ଲାଖି ରହିଥିଲା ଶିଳାନ୍ୟାସ ପଥରର ଦୁଇଟି ଶବ୍ଦ ଉପରେ- 'ଗର୍ବ' ଏବଂ 'ଆନନ୍ଦ,' ସେ ଆଜି ଏଇ ମାଟିରେ ଛିଡ଼ା ହୋଇ, ଏଇ ଦୁଇଟିରୁ କେଉଁଟିକୁ ଅନୁଭବ କରିବ ?

ସ୍କୁଲ, କଲେଜର ଦିନ ଗୁଡ଼ିକ ଥିଲା ସ୍ୱପ୍ନର ଦିନ । ତେଣୁ ସୁଖ ଓ ଆନନ୍ଦର ଦିନ । ସେ ଦିନର ପ୍ରିୟ ସଂଗୀତର ପଦ, ପଦାର୍ଦ୍ଧମାନ ପବନରେ ଉଡ଼ି ଆସୁଥିବା କାଗଜ ଟୁକୁରା ପରି ଅସଂଲଗ୍ନ ହୋଇ ତାର ସ୍ମୃତି ଭିତରେ ଉଡ଼ିଲେ । ଖେଳିଲେ । ସେ ଉପରକୁ ଅନାଇଲା । ପୁଣି ତଳକୁ ଅନାଇଲା । ବସୁଧାରୁ ଧୂଳିଟିକିଏ ଆଣି କପାଳରେ ମାରିଲା । ଷ୍ଟେସନ୍ ଆଡ଼କୁ ଆଗେଇଲା ।

## ॥ ୬ ॥

ବେଙ୍ଗଲ-ନାଗପୁର ରେଲୱେ କମ୍ପାନୀ ଏଇ ବାଟଦେଇ ରେଳ-ପଥଟିଏ ପକାଇବା ବେଳେ କେତେ ଲୋକ କେତେ କଳ୍ପନା କରିଥିବେ । ଏବେ ରେଳପଥ କମ୍ପାନୀ ହାତରେ ନାହିଁ, ସରକାର ହାତକୁ ନେଲେଣି । ନାଁ ବଦଳି ଗଲାଣି । କିନ୍ତୁ ଏଇ ରେଳପଥଟି ସେହି କମ୍ପାନୀ ଅମଳର । ଭୁବନେଶ୍ୱରକୁ ରାଜଧାନୀ ଉଠାଇ ଆଣିବା ମୂଳରେ ଅନେକ ବିଚାର ଅଛି । କିନ୍ତୁ ତା ଭିତରୁ ଗୋଟିଏ ବିଚାର ହେଲା- ଗମନା ଗମନର ସୁବିଧା । ଏଇଠୁ ରେଳ ଓ ବ୍ୟୋମଯାନରେ ଯାତାୟତ କରିବାର ସୁବିଧା ଅଛି । ଆବଶ୍ୟକତା ଅନୁସାରେ ତାକୁ ବଢ଼ାଯାଇ ପାରିବ । ଏଠାର ଜଳବାୟୁ ଭଲ । ଏଠାର ମାଟି କୋଠାବାଡ଼ି ତୋଳିବା ପାଇଁ ଉପଯୋଗୀ, ନୂତନ ନଗରୀଟିର କାୟାବିସ୍ତାର ପାଇଁ ସୁବିଧା ଅଛି ।

ନନ୍ଦ ଦାସ ଏଠି କୋଠା ତୋଳିବାର ସ୍ୱପ୍ନ ଦେଖି ନଥିଲା ସେ ପର୍ଯ୍ୟନ୍ତ, ତଥାପି ଭାରତର ମାଟି ତା ପାଇଁ ତିଳକ । ସେ ମାଆର ଆଶୀର୍ବାଦ ପରି ତାକୁ କପାଳରେ ଲଗାଇଥିଲା । ଭୁବନେଶ୍ୱରର ବାୟୁ ତା ହୃତ୍‌ପିଣ୍ଡ ଭିତରେ ନିଶ୍ୱାସ ଭାବେ ପଶି ପ୍ରଶ୍ୱାସ ଭାବରେ ଫେରି

ଆସୁଛି । ଜଳ ବି ମିଳିବାରେ ଅସୁବିଧା ନାହିଁ । ଯଦିଓ ସେ ରାଜଧାନୀ ଅଞ୍ଚଳ ଭିତରେ ଦେଖିଥିବା ଦୁଇ ତିନୋଟି କୂଅରେ ଭଉାରତା ଛଡ଼ା ଅନ୍ୟ କିଛି ଦେଖି ନାହିଁ ! ଶୁଣୁଥିଲା, ନୂଆ ହୋଇ ଖୋଳା ହୋଇଥିବା ଏଇ କୂଅ ଗୁଡ଼ିକ ପୁଣି ପୋତା ହେବ । ହେଉ, ତାର ବା କଅଣ ଅଛି ସେଥିରେ । ଦୁର୍ବଳ ଶରୀରଟି ତାର ଗଡିକଲା ଧୀରେ ଧୀରେ ।

ସେତେବେଳେ ରେଲଷ୍ଟେସନଟି ରାଜଧାନୀ ପଟକୁ ନଥିଲା । ଓସାରିଆ ସଡ଼କ ଓ ଏତେ ଘର ବାଡ଼ି କି ବଜାର ମଧ ଏପଟକୁ ନଥିଲା । ଥିଲା ନାଲିମାଟିର ପଡ଼ିଆ ଓ ସେଥିରେ ସ୍ଥାନେ ସ୍ଥାନେ ଖାଲ ଖମା ଓ ଗୁଳାବାଟ । ତାର ଗୋଟିଏ ପଟେ ପ୍ରାୟ ରେଳପଥର କରକୁ ଲାଗି ଗୋଟିଏ ବଡ଼ ଉଦ୍ୟାନ । ରାଜସ୍ଥାନର କିଏ ଜଣେ ଶିଳ୍ପପତି ବହୁ ଏକର ବିଶିଷ୍ଟ ବେଶ୍ ଗୋଟିଏ ବଡ଼ ବଗିଚା କରିଛନ୍ତି । ସେ ଭିତରେ ହୁଏତ ଥିବ ତାଙ୍କର ଉଦ୍ୟାନ ଗୃହ । ସେଇ ବଗିଚା କରଦେଇ ଚାଲୁଥିଲା ନନ୍ଦ ଦାସ ।

କାଉଟିଏ ବୋବାଇଲା ।

ତା ଘରେ କାଉଟିଏ ଏମିତି ବୋବାଇଲେ ବୋଉ ତାର ଠା ଠା କରି ଚାଉଳ ଥୋଉଥିବେ । ନନ୍ଦର ଲେଉଟାଣି ସୂଚନା ପାଇଁ ବ୍ୟଗ୍ର ହେଉଥିବେ । କିନ୍ତୁ ଏଠି କାଉଟି ହୁଏତ ନନ୍ଦକୁ ଡ଼ାକୁଥିଲା । କହିବାକୁ ଚାହୁଥିଲା- 'ଏଇଠି ଖାଇବା ପଦାର୍ଥ ଅଛି ।'

ନନ୍ଦ ଅନାଇଲା ମୁହଁ ବୁଲାଇ । କାଉଟି ଗୋଟିଏ ଉଚ୍ଚ ଗଛ ଉପରେ ବସି ଖୁମ୍ପି ଖୁମ୍ପି ଫଳ ଖାଉଛି । ଏତେ ଦୁଃଖରେ ବି ତା ଭିତରୁ ହସର ଝଲକଟିଏ ଉଠି ଆସି ଓଠ ପାଖରେ ପହଁରିଗଲା - 'ଗଛଚଢ଼ି ନଜାଣେ ଯିଏ କାଉ ଅଇଁଠା ଖାଏ ସିଏ ।' ଏଇ ପଦକ ତାକୁ ଛୁଆ ଦିନେ ଗଛ ଚଢ଼ା ଶିଖିବାର ପରୋକ୍ଷ ପ୍ରେରଣା ଦେଇଥିଲା । ବଗିଚାର ବାଡ଼ ପାଖକୁ ଲାଗି ଧାଡ଼ିଏ ପିଜୁଳି ଗଛ । ଡ଼ାଳଗୁଡ଼ିକ କେତୋଟି କଞ୍ଚା, ପାଚିଲା, ଦର ପାଚିଲା ଫଳଧରି ସତେ ଯେପରି ତାକୁ ଡ଼ାକୁଛନ୍ତି । ବସୁମାତାର ହାତ ପରି ଦିଶିଗଲା । ମା ତାର ଖାଇବାକୁ ଯାଚୁଛି । ସେ ପାଚିଲା ପିଜୁଳି କେତୋଟି ତୋଳିଲା । ମନ ଭିତରେ ଡ଼ରଥାଏ । ହୁଏତ ମାଳି ବା ଜଗୁଆଳି ସେଠି ଥିଲେ ପାଟି କରିବ । କିନ୍ତୁ ପେଟର ଭୋକ କିଛି କ୍ଷଣ ପାଇଁ ଚପାଇ ଦେଲା ସେ ଡ଼ରକୁ ।

ତୋଲୁ ତୋଲୁ ଗୋଟିଏ ପିଜୁଳି ତଳେ ପଡ଼ି, ଗଡ଼ିଗଲା ବୁଦା ଭିତରକୁ । ଭାବିଲା- ହଉ, ପଛେ ଗୋଟାଇବା, ଆଗ ଗଣ୍ଡାଏ ଦି ଗଣ୍ଡା ବ୍ୟାଗରେ ରଖିଦେବା ଭଲ । ଦେଖି ପରଖିଲା । ଭାବିଲା -ନାଃ କଷିଗୁଡ଼ାକ, ଯେତିକି ରହିଲାଣି ଯଥେଷ୍ଟ ।

ନନ୍ଦ ବୁଦା ଗୁଡ଼ିକ ଦରାଣ୍ଡିବାକୁ ଯାଇ ଦେଖିଲା କେତୋଟି କୋଳିବୁଦା । ଆଁଖୁ, ଗୁଆ, ଭଇଁଚ, କୋଳି ଫଳିଛି । କର ପଟକୁ କଣ୍ଟେଇ କୋଳି ଗଛଟିଏ । ଅରମା ଲତାଟାଏ କୋଚିଲାଗଛକୁ ଆଶ୍ରାକରି ଲଟାଇଛି । ପାଚିଲା କଳା କଳା ଆଁଖୁ, ନାଲି ଟହ ଟହ ଗୁଆ ଭଇଁଚ କୋଳି ତା ମନକୁ ଖୁସି କରିଦେଲା । ପିଲାଦିନର ସ୍ମୃତି ମନେ ପଡ଼ିଲା । ସେ କୋଳି ତୋଳିଲା ।

ଦିନେ ସେ ଯେଉଁମାନଙ୍କ ସାଙ୍ଗ ମେଳରେ ପିଲାଦିନେ ବଣ ବୁଦା ଭିତରେ ପଶି କୋଳି ଖାଉଥିଲା, ସେମାନଙ୍କ ଭିତରୁ ଅଧିକାଂଶ ଗାଁରେ ବା ଗାଁ ପାଖରେ ଅଛନ୍ତି । ବିଲବାଡ଼ି ବା ଅନ୍ୟ କିଛି ବେଉସା ଆଦରି ନେଇ ରହିଯାଇଛନ୍ତି ।

ନନ୍ଦ ପିଜୁଳିଟିଏ ଚୋବାଇ ରେଲ ଲାଇନ୍ ଅତିକ୍ରମ କଲା । ପ୍ଲାଟ ଫର୍ମ ଉପରକୁ ଉଠିଲା । ସିମେଟ୍ ବେଞ୍ଚଟିଏ ଉପରେ ବସିଲା, ମନ ଇଛା କୋଳି ପିଜୁଳି ଖାଇ ଭୋକ ମେଣ୍ଟାଇଲା ।

ଡ଼ାଲାଟିଏ ମୁଣ୍ଡରେ ଥୋଇ ଯାଉଥିବା ଲୋକଟି-"ସିଲଟ କମଳା, ପାଚିଲା କଦଳୀ " ବୋଲି ଡ଼ାକଟିଏ ମାରିଦେଲା । ପ୍ଲାଟ ଫର୍ମରେ ଟ୍ରେନ୍ ନାହିଁ, ତଥାପି ଡ଼ାକିଲା । ବୋଧହୁଏ ଏ ଡ଼ାକଟା ଅଭ୍ୟାସ ପାଇଁ ପାଟିରୁ ବାହାରି ପଡ଼ିଲା । ହୁଏତ ହୋଇପାରେ କୌଣସି ବସିଥିବା ଯାତ୍ରୀ କିଣିପାରନ୍ତି ବୋଲି ଆଶା କରିଥିବ । ତା ଗୋଡ଼ରେ ବାଜି କଣଟାଏ ନନ୍ଦ ବସିଥିବା ବେଞ୍ଚ ପାଖକୁ ଛିଟିକି ଆସିଲା । କିନ୍ତୁ ସେ କମଳା ବିକାଳି ବେପରୁଆ ଭାବରେ ତା ବାଟରେ ଚାଲିଗଲା ।

ନନ୍ଦ ଦାସ ଅନାଇଲା କଣ ଗୋଟିଏ ଜରି କାଗଜରେ ଗୁରା ହୋଇଛି । ତା ପୁଣି ସୂତାରେ ବନ୍ଧା ହୋଇଛି । ଆଣି ଫିଟାଇ ଦେଖିଲା । ଖୁସି ହୋଇଗଲା ।

ଅନ୍ୟ ଦିନ ହୋଇଥିଲେ ନନ୍ଦ ଦାସ କିଛି ନଭାବି ନ ଚିନ୍ତି ସେଇଟିକୁ ଥାନାରେ ଦେଇ ଆସି ଥାଆନ୍ତା । କିନ୍ତୁ ସେଦିନ ଆଗପଛ ହେଲା । ଭାବିଲା- 'କାହିଁକି ଦେବ ? ଲାଭ

କଣ ? ହଜାଇଥିବା ଲୋକ ପାଇବ କି ନାହିଁ କିଏ ଜାଣେ ? ଥାନା ବାଲା କିଛି ଦିନ ରଖିଲେ ରଖିବେ, ତା ପରେ ଉପଯୁକ୍ତ ଲୋକ ନେବାକୁ ନ ଆସିଲେ ସେଠାରେ କେହିଜଣେ ନିଜସ୍ୱ କରିନେବ ।'

କିବା ଦରବ ପାଇଲା ଯେ ? କିଛି ରେଜା ପଇସା ଓ କେତୋଟି କୋତରା ନୋଟ୍ । ସମୁଦାୟ ସତର ଟଙ୍କା । ବୋଧହୁଏ କୌଣସି ଗରିବ ଲୋକର କଷ୍ଟ ଅର୍ଜିତ ଧନ, ତାହା ପୁଣି ଜରିକାଗଜରେ ସଯତ୍ନ ସଞ୍ଚିତ । ଏହାର ମାଲିକ ହୁଏତ ଜଣେ କୁଲି ଅଥବା ରିକ୍ସାବାଲା ହୋଇଥାଇ ପାରେ ।

ନନ୍ଦ ଭାବିଲା - 'ଏଇନା କିଛି ଦିନ ଖାଇବା ଚିନ୍ତା ନାହିଁ । ଏଥିରେ କିଛି ଦିନ ଚଳିଯିବ ।' ପୁଣି ଭାବିଲା - 'ନାଃ ଘରକୁ ଫେରିଯିବ । ବାଟ ଖର୍ଚ୍ଚ ମିଳିଗଲା ।'

କିନ୍ତୁ, ଏମିତି କିଛି କୁଆଡୁ ନ ପାଇ କଣ ଭାଣ୍ଡିଆ ମୁହଁରେ ଫେରିବ ?

ନନ୍ଦ କିଛି ସମୟ କିଂ କର୍ତ୍ତବ୍ୟ ବିମୂଢ଼ ଅବସ୍ଥାରେ ରହିଗଲା । ଅଜାଙ୍କ କଥା ମନେ ପଡ଼ିଲା । ସେ କହୁଥିଲେ - 'ଯଦି କେବେ କୌଣସି ଦୋ ଘାଇରେ ପଡ଼ିଯିବ, କଣ କରିବ ନକରିବ ସ୍ଥିର କଲା ଭଳିଆ ବୁଦ୍ଧି ନ ଦିଶିବ, ତା ହେଲେ ଆଖିବୁଜି ବସି ପଡ଼ିବ । ଇଷ୍ଟ ଦେବତା କିମ୍ବା ସବୁବେଳେ ଭଲ ବାଟ ବତାଉଥିବା ଜଣେ ଗୁରୁ ବା ଗୁରୁଜନଙ୍କୁ ମନେ ପକାଇବ । ସଦ୍‌ବୁଦ୍ଧି ମାଗିବ । ଦେଖିବ- ବଳେ ବାଟ ମିଳିଯିବ । ବୋରାବୋରି ଠିକ୍ ରାସ୍ତା ଦିଶିଯିବ ।'

ନନ୍ଦ, ଅଜାଙ୍କ ଉପଦେଶ ମନେ ପକାଇ ସୁନା ପିଲାଟିପରି ସ୍ଥିର ହୋଇ ବସିଗଲା । ତାକୁ ସତକୁ ସତ ଗୋଟାଏ ବାଟ ଦିଶିଲା । ସେ ବାହାରିଲା ଷ୍ଟେସନ୍ ମାଷ୍ଟରଙ୍କ ଅଫିସକୁ ।

ନନ୍ଦ ଷ୍ଟେସନ୍ ମାଷ୍ଟରଙ୍କ ଅଫିସକୁ ବାହାରିଛି । ବାଟରେ ଭେଟିଲା ଜଣେ ଭଦ୍ରଲୋକଙ୍କୁ, ସେ ତାକୁ ଦେଖି ଅଟକି ଗଲେ । ଦୋ ଦୋ ଚିହ୍ନା ବାରିଲା ପରି ଅନାଇଲେ । ନନ୍ଦ ନିଜ ଅଜାଣତରେ ତାଙ୍କୁ ନମସ୍କାର କରିଦେଲା । ଜଣେ ବୟସ୍କ ଲୋକଙ୍କୁ ଦେଖିଲେ, ସେ ପ୍ରାୟ ଏମିତି ନମସ୍କାର କରି ଦେଇଥାଏ ।

ଭଦ୍ରଲୋକ ଜଣକ ତାର ବହୁ ଦିନର ପରିଚିତ ମଣିଷ ପରି ପଚାରିଲେ - 'କୁଆଡ଼େ

ଆସିଥିଲ ?'

ନନ୍ଦ କହିଲା- 'ଚାକିରୀ ଖୋଜିବା ପାଇଁ ଆସିଥିଲି ।'

ସେ ପଚାରିଲେ - 'ପାଇଲ ?'

ନନ୍ଦ ନାସ୍ତିସୂଚକ ଢ଼ଙ୍ଗରେ ମୁଣ୍ଡଟି ହଲାଇ ଦେଇ କହିଲା 'ଆଉ ଗୋଟାଏ ଜିନି ପାଇଲି । ସେଇଟା ଷ୍ଟେସନ-ମାଷ୍ଟରଙ୍କୁ ଦେବାକୁ ଯାଉଛି ।'

ଭଦ୍ରଲୋକ ବୁଝି ନେଲେ, ସେ ଯିଏ ବୋଲି ଅନୁମାନ କରି ନନ୍ଦ ସହିତ କଥାବାର୍ତ୍ତା ଆରମ୍ଭ କରି ଦେଇଥିଲେ , ନନ୍ଦ ସେ ବ୍ୟକ୍ତି ନୁହେଁ । ତଥାପି 'ଷ୍ଟେସନ ମାଷ୍ଟର' ପଦଟି ଶୁଣି କୌତୁହଳ ପ୍ରକାଶ କଲେ । ପଚାରିଲେ - 'ସେ ବିଚରାଟିକୁ କାହିଁକି କ'ଣ ଦେବ ?'

ନନ୍ଦ ପାଇଥିବା ଜିନିସଟି ଦେଖାଇ ଦେଇ କହିଲା-'ଏଇଟି ପାଇଛି । କିନ୍ତୁ ଏହା ମୋର ପ୍ରାପ୍ୟ ନୁହେଁ । ପୁଣି ଯାହାର ଅବା ହୋଇଥିବ ତାକୁ ଠାବ କରି, ତା ହଜିଲା ଦ୍ରବ୍ୟ ତା ଜିମାରେ ଦେବା ମଧ ମୋ ପକ୍ଷରେ ସମ୍ଭବ ନୁହେଁ । ତେଣୁ ଷ୍ଟେସନ ମାଷ୍ଟରଙ୍କୁ ଦେଇଦେଲେ, ମୁଁ ନିଶ୍ଚିନ୍ତ । ଏହା ଯଦି କୌଣସି କୁଲି ବା ରିକ୍ସା ବାଲାର ହୋଇଥିବ, ସେ ବିଚରା ପାଉଯିବ ।'

ଭଦ୍ରଲୋକ ନନ୍ଦ ଦାସକୁ ବଡ଼ ଶ୍ରଦ୍ଧା ଉଛୁଳା ଆଖିରେ- କିଛି କ୍ଷଣ ଅନାଇଲେ । କହି ପକାଇଲେ- 'କଣ କଳିଯୁଗ ସରିଗଲାକି ?'

ସେ ତାକୁ ଶ୍ରଦ୍ଧାରେ ନିଜ ସାଙ୍ଗରେ ଡ଼ାକି ନେଲେ । ଷ୍ଟେସନ- ଅଫିସ୍ ଭିତରେ ପଶୁ ପଶୁ ତାଙ୍କର ସହକର୍ମୀମାନଙ୍କୁ କହିଲେ- 'ଦେଖନ୍ତୁ ଏ ଯୁଗରେ ବି ଏମିତି ଲୋକ ଅଛନ୍ତି ।' ସମସ୍ତେ ଉଦ୍‌ଗ୍ରୀବ, ଉତ୍ସୁକ ହୋଇ ଅନାଇଲେ, ବକ୍ତବ୍ୟର ତାତ୍ପର୍ଯ୍ୟ ବୁଝିବା ପାଇଁ ।

ଭଦ୍ରଲୋକ ଆମୂଳଚୂଳ ଘଟଣାଟି ବର୍ଣ୍ଣନା କରି ଗଲେ । ନନ୍ଦ ସେତେବେଳେ ଜାଣିଲା, ସେ ସ୍ୱୟଂ ଷ୍ଟେସନ ମାଷ୍ଟର । ନିଜ କ୍ୱାଟରକୁ କୌଣସି କାରଣରୁ ଯାଉଥିଲେ । ତାଙ୍କର ସହକର୍ମୀମାନେ ବଡ଼ ଆଦରରେ ନନ୍ଦକୁ ବସିବାକୁ ଅନୁରୋଧ କଲେ ।

ନନ୍ଦ ଏଇ ସାମାନ୍ୟ ଘଟଣା ପାଇଁ ଏତେ ଆଦର, ଏତେ ପ୍ରଶଂସା ପାଇବ ବୋଲି କଳ୍ପନା କରି ନଥିଲା । ତା ଛାତି ଭିତରୁ ଆନନ୍ଦର ଗୋଟାଏ ଉଦ୍‌ବେଳନ ଆସିଲା । କବି

କହିଲା ପରି - 'ନୟନେ ନୀର ଥନ ଥନ, ନକାନ୍ଦି କାନ୍ଦିଲା ବିଧାନ ।'

ଜଣେ କର୍ମଚାରୀ ପଚାରିଲେ- 'ଆପଣଙ୍କ ଶୁଭନାମ ?'

ସେ କହିଲା- 'ମୁଁ ନନ୍ଦ ଦାସ ।'

ସେ ପୁଣି ପଚାରିଲେ - 'ନନ୍ଦ ଏବଂ ଦାସ ମଝିରେ କିଶୋର କିମ୍ବା କୁମାର ଇତ୍ୟାଦି କିଛି ନାହିଁ ?'

ତାଙ୍କର ହସ ହସ ଓଠ, ଉଜ୍ଜ୍ୱଳ ଉତ୍ସୁକ ଆଖିକୁ ଅନାଇ ନନ୍ଦ ମଧ୍ୟ ସାମନ୍ୟ ମୁରୁକି ହସି କହିଲା 'ମୋ ନାଁ ଥିଲା- ନନ୍ଦନନ୍ଦନ ଦାସ । ମୋର ଜେ ଜେ ବୈଷ୍ଣବ ଲୋକ ଥିଲେ ତ, ସେ ଏମିତି ନାଁଟିଏ ଦେଇଥିଲେ ।' ଆନ୍ତରିକ ପରିବେଶଟିଏ ପାଇବାରୁ ସ୍ୱଚ୍ଛନ୍ଦ ଭାବରେ ଭାବ ବିନିମୟ ଆରମ୍ଭ କଲା ନନ୍ଦ ।

ଷ୍ଟେସନ ମାଷ୍ଟର ପାନଖିଆ ଓଠରେ ସ୍ମିତ ହସ ହସି, ବିସ୍ମିତ ହୋଇ ପଚାରିଲେ 'ସେଇଠୁ ?'

ନନ୍ଦ କହିଲା - 'ସେ ପିଲାଦିନ କଥା ସାର୍ । ମୋର ଜଣେ କୁଟୁମ୍ବରେ ଭାଇ ହିସାବ ହେବେ, ତାଙ୍କ ସାଙ୍ଗରେ ଯାଇଥିଲି । ସେ ମୋ ନାଁ ଲେଖାଇ ଦେବାକୁ ସ୍କୁଲକୁ ନେଇ ଯାଇଥିଲେ । ସେଠି ସେ ମୋ ନାଁ ଲେଖାଇ ଦେଲେ - ନନ୍ଦ ଦାସ । ବାଟରେ ବୁଝାଇ ବୁଝାଇ ଆସିଲେ - ଏଇଟା ଆଧୁନିକ ନାଁ, ଆଜି କାଲି  ଛୋଟ ନାଁକୁ ସମସ୍ତେ ପସନ୍ଦ କରୁଛନ୍ତି । ନନ୍ଦ ନନ୍ଦନ ଟା ଗୋଟାଏ ପୁରୁଣା କାଳିଆ ନାଁ ।' ନନ୍ଦର ବୟାନ ଶୁଣି ସମସ୍ତେ ହସି ପକାଇଲେ ।

ଷ୍ଟେସନ ମାଷ୍ଟର ନନ୍ଦ ହାତରୁ ପୁଡ଼ିଆଟି ଗ୍ରହଣ କରି ଜଣଙ୍କ ହାତକୁ ବଢ଼ାଇ ଦେଲେ । କହିଲେ- 'ମୂର୍ତ୍ତିବାକୁ ଏଇ ଟ୍ରଷ୍ଟ ପ୍ରପୋଟି ଆପଣଙ୍କ ଜିମାରେ ରହିଲା । କେହି  କ୍ଲେମାଣ୍ଟ ନ ଆସିଲେ, ଏକୁ ଧନ୍ୟବାଦ ସହ ନନ୍ଦ ବାବୁଙ୍କୁ ଫେରାଇ ଦେବେ ।'

ଆଉ ଜଣେ କର୍ମଚାରୀ ଥଟ୍ଟାରେ କହିଲେ- 'ସାର୍ ଧନ୍ୟବାଦଟା କଣ ସୁଧ ବାବଦକୁ ଦେବେ ?'

ନନ୍ଦ ବହୁଦିନ ପରେ ଗୋଟାଏ ହସ ଖୁସିର ପରିବେଶ ପାଇଲା । ସେ ଏତେ ଦୁଃଖ, ଏତେ ହତାଶା ଭିତରେ, ଏପରି ଆନନ୍ଦ ଉଚ୍ଛୁଳା ମୁହୂର୍ତ୍ତଟିଏ ପାଇବ ବୋଲି କଳ୍ପନା

ସୁଦ୍ଧା କରି ନଥିଲା । ତାର ଅନୁଭବ ହେଲା, ଏଠି ସେ କାହୁଁ ଆସିଥିବା ନିରିମାଖି ମଣିଷଟିଏ ନୁହଁ । ତା ମନରେ ଗୋଟାଏ ଦମ୍ଭ ଆସିଲା । କିଛି ଭଦ୍ରଲୋକଙ୍କ ସହିତ ଭଲରେ ଚିହ୍ନା ପରିଚୟଟାଏ ତ ହୋଇଗଲା !

ମୂର୍ତ୍ତିବାବୁ ପଚାରିଲେ- 'ଆପଣଙ୍କ ଠିକଣା ?'

ନନ୍ଦ ଭିତରେ ପୁଣି ସଂକୋଚର ସଞ୍ଚାର ହେଲା । ସେ କହିଲା 'କିଛି କୂଳ କିନାରା ନପାଇବା ଯାଏ, ଏଇ ପ୍ଲାଟଫର୍ମ ହିଁ ମୋର ଠିକଣା ।' ସମସ୍ତେ ଆଶ୍ଚର୍ଯ୍ୟ ଓ ସହାନଭୂତି ମିଶା ଦୃଷ୍ଟିରେ ନନ୍ଦ ଆଡ଼କୁ ଅନାଇଲେ ।

ମନର ଉଲ୍ଲାସ ନନ୍ଦର କଥନଭଙ୍ଗିକୁ ସଜାଡ଼ି ଦେଉଥିଲା । ପୁଣି ତା ଭିତରେ ଗୋଟିଏ ସ୍ୱାଭିମାନ ମଧ୍ୟ ସଞ୍ଚରି ଯାଇଥିଲା । କହିଲା 'କ୍ଷମା କରିବେ ସାର୍‌, ମୁଁ ଆପଣମାନଙ୍କ ଉପରେ ବୋଝ ହେବି ନାହିଁ । ଜାଗା ଖୋଜିବା ଯାଏ, ନିହାତି ଦରକାର ହେଲେ ମୁସାଫିର୍‌ ଖାନା କିମ୍ବା ପ୍ଲାଟ ଫର୍ମରେ କୋଉଠି ଟିକିଏ ମୁଣ୍ଡ ଗୁଞ୍ଜି ନେବି କିମ୍ବା ଅନ୍ୟ କେଉଁଠିକି ଚାଲି ଯିବି ।'

ମିଶ୍ରବାବୁ ଏତିକି ଶୁଣି ମନେ ମନେ ଭାବୁଥିଲେ- 'ଲୋକଟିକୁ କେମିତି ସାହାଯ୍ୟ କରିହେବ ।'

ଷ୍ଟେସନ ମାଷ୍ଟର ଭାବ ପ୍ରବଣ ଲୋକ, ତାଙ୍କ ଆଖିରେ ଲୁହ ଜକେଇ ଆସିଲା । ମନେ ମନେ ଭାବିଲେ- କାହାର ଅଭିଯୋଗକୁ ସିନା ଡ଼ର, ନହେଲେ ୱେଟିଙ୍ଗରୁମ୍‌ରେ ଲୋକଟାର ରହିବା ବ୍ୟବସ୍ଥା, ଅନ୍ତତଃ କିଛିଦିନ ପାଇଁ କରି ହୁଅନ୍ତା ।

ମୂର୍ତ୍ତିବାବୁ କହିଲେ- 'କାହିଁକି ସାର୍‌ ମୁଁ ତ ଏକା ରହୁଛି । ଯଦି ଆପଣଙ୍କୁ ଅସୁବିଧା ନ ଲାଗିବ ମୋ ସାଙ୍ଗରେ ରହନ୍ତୁ । ମୁଁ ନିଜେ ରାନ୍ଧେ । ଅବଶ୍ୟ ଆମ ଖାଦ୍ୟ ଆପଣଙ୍କର ରୁଚିକର ହେବ ନାହିଁ ।'

କେହି କିଛି କହିବା ଆଗରୁ ଷ୍ଟେସନ ମାଷ୍ଟର ତତ୍‌କ୍ଷଣାତ୍‌ ମୂର୍ତ୍ତିବାବୁଙ୍କ ହାତକୁ ଧରିପକାଇ କହିଲେ - 'ବଡ଼ ଭଲ କଥାଟା କହିଲ ମୂର୍ତ୍ତିବାବୁ । ଭଗବାନ ତମର ମଙ୍ଗଳ କରନ୍ତୁ ।'

ମିଶ୍ରବାବୁ ସେମିତି ନୀରବ ଥାଆନ୍ତି, ମନେ ମନେ ଭାବୁଥାନ୍ତି-ଲୋକଟିର ପଢ଼ାଶୁଣା

ଓ ସ୍ୱଭାବ ଚରିତ୍ର ବିଷୟରେ ଆଉଟିକିଏ ବୁଝିଲାପରେ ଦୁଇଟା ଟିଉସନ୍ ବୁଝିଦେବା ଭଲ ହେବ । ଅନ୍ତତଃ ଚାକିରୀ ପାଇଲା ଯାଏ କିଛିଦିନ ଚଳିଯିବ ।

ନନ୍ଦ ନିଶ୍ୱାସଟିଏ ମାରି ଭଗବାନଙ୍କ ଉଦ୍ଦେଶ୍ୟରେ ପ୍ରଣାମ କଲା । ମୂର୍ତ୍ତିବାବୁଙ୍କୁ କହିଲା- 'ଆପଣଙ୍କୁ କୃତଜ୍ଞତା ଜଣାଇବାକୁ ମୋର ଭାଷା ନାହିଁ । ଭଗବାନ ନିଶ୍ଚୟ ଆପଣଙ୍କର ମଙ୍ଗଳ କରିବେ । କିନ୍ତୁ ଜଣକର ଘରଦ୍ୱାର, ସ୍ୱଭାବ ଚରିତ୍ର ନ ଜାଣି, ତାକୁ ନିଜ ଘରେ ଆଶ୍ରୟ ଦେବା ଭଳି ମହାନ୍ ଲୋକ ବିରଳ । ଆପଣଙ୍କର କଥା ନିର୍ମାଲ୍ୟ ପରି ପବିତ୍ର ଲାଗୁଛି ।' ନନ୍ଦର କଥାରେ ଛଳନା ବା କୃତ୍ରିମତା ନଥିଲା । ତାହା ହୃଦୟରୁ ସ୍ୱାଭାବିକ ଆବେଗ ଘେନି ବାହାରି ଆସୁଥିଲା ।

ମିଶ୍ର ବାବୁ ଓ ଷ୍ଟେସନ ମାଷ୍ଟର ଏକାବେଳକେ କହି ପକାଇଲେ - 'ଆପଣଙ୍କର ସ୍ୱଭାବ ଚରିତ୍ର ସମ୍ପର୍କରେ ଜାଣିବାକୁ କଣ କିଛି ବାକି ଅଛି ?'

ନନ୍ଦ ବିନୟ ପ୍ରକାଶ କରି କହିଲା- 'ସାର୍ ଆପଣମାନେ ଏତେ ଅଳ୍ପ ସମୟର ପରିଚୟ ସତ୍ତ୍ୱେ ଆତ୍ମୀୟ ପରି ଲାଗୁଛନ୍ତି । କିନ୍ତୁ ମୋ ମନ କଥା, ସତରେ କହିବାକୁ ଗଲେ- ମୋତେ ଘରେ ଲାଗୁଥିଲା - ମୁଁ ଯେମିତି ଅବା ମୋ ପରିବାର ଉପରେ ଗୋଟାଏ ବୋଝ ପରି ହୋଇ ପଡୁଛି । ପୁଣି ଏଠାକୁ ଆସି ଅନୁଭବ କଲି, ମୁଁ କେବଳ ବାପା ମା କିମ୍ବା ପରିବାର ଲାଗି ନୁହେଁ, ଧରିତ୍ରୀର ଗୋଟାଏ ବୋଝ । ପ୍ରବାସରେ ଚାକିରୀ କରି ଚଳୁଥିବା ଜଣେ ଭଦ୍ରଲୋକଙ୍କ ଘରେ କୋଉ ଅଧିକାର ଘେନି ମୁଁ ରହିବି ? ପ୍ରତି ମୁହୂର୍ତ୍ତରେ ମୋ ବିବେକ ମୋର ସାମର୍ଥ୍ୟକୁ ଚୁଟୁକି ମାରି ସତେ ଯେପରି ଛ୍ୟାଲେଞ୍ଜ କରୁଛି । ମୂର୍ତ୍ତିବାବୁଙ୍କର କୌଣସି କାମରେ ନ ଆସି, ଖାଲି ତାଙ୍କ ଘରେ ରହିଲେ ଅପରାଧ କଲାପରି ଲାଗିବ ।' ସମସ୍ତେ ନନ୍ଦର ବିନୟ ଅଥବା ଭାବପ୍ରବଣ କଥା ଶୁଣୁଥିଲେ ।

ମିଶ୍ରବାବୁ ପଚାରିଲେ- 'ଦାସବାବୁ ଆପଣ ଟିଉସନ୍ କରିବେ ?'

ନନ୍ଦ ଏକ ସମୟରେ କୃତଜ୍ଞତା ଓ ଆଗ୍ରହ ପ୍ରକାଶ କରି କହିଲା - 'ମୁଁ ଆଇ.ଏ ପଢ଼ିଛି, ମାଟ୍ରିକ୍ ପର୍ଯ୍ୟନ୍ତ ସବୁ ବିଷୟ ପଢ଼ାଇ ପାରିବି ।'

ମୂର୍ତ୍ତିବାବୁ ନନ୍ଦ କାନ୍ଧରେ ହାତ ପକାଇ କହିଲେ - 'ମୁଁ ଆପଣଙ୍କ ଠାରୁ ବୟସରେ ନିଶ୍ଚୟ କିଛି ବଡ଼ । ଆପଣ ମୋର ସାନ ଭାଇ ଭଳି । ମୋ ସାଙ୍ଗରେ ରହିଲେ ଆପଣଙ୍କ ମର୍ଯ୍ୟାଦା ହାନି ହେଲାଭଳି କିଛି ହେବ ନାହିଁ । ମିଶ୍ର ବାବୁ ତ ଟିଉସନ୍ ବୁଝିଦେବେ

କହୁଛନ୍ତି ,ତା ପରେ ଯେଉଁଠି ସୁବିଧା ମନେ କରିବେ, ରହିବେ । ସଙ୍କୋଚ କାହିଁକି କରୁଛନ୍ତି ?'

ଇତି ମଧ୍ୟରେ ଚା କେତେ କପ୍ ଆସି ଯାଇଥିଲା । ନନ୍ଦ ସମସ୍ତଙ୍କ ସହିତ ଚା ପିଉଥିବା ବେଳେ, ମିଶ୍ରବାବୁ କହିଲେ- 'ନନ୍ଦବାବୁ ଏବେ ଅପର କ୍ଲାସ ଓ୍ୱେଟିଙ୍ଗରୁମକୁ ଯାଇ ଧୂଆଧୋଇ ହୁଅନ୍ତୁ । ତା ପରେ.........'

ସେ ବାକ୍ୟଟି ପୂରଣ କରିବା ଆଗରୁ ଷ୍ଟେସନ ମାଷ୍ଟର କହିଲେ - 'ଆମ ଘରେ ଖାଇ ପିଇ, କାଲିଠାରୁ ମୂର୍ତ୍ତିବାବୁଙ୍କ ଘରେ ରହିବେ ।' ଜଣେ ଭଲ ଲୋକକୁ ସାହାଯ୍ୟ କରିପାରିଲେ ମନ ଭିତରେ କିପରି ପବିତ୍ରତା ଓ ପ୍ରଶାନ୍ତି ସଞ୍ଚରି ଯାଏ, ତାହା ସେ ଅନୁଭବ କରୁଥିଲେ ।

ନନ୍ଦର ମନ ହେଉଥିଲା ତାଙ୍କୁ ମୁଣ୍ଡିଆ ମାରିବାକୁ।

## ।। ୭ ।।

ମିଶର ଦେଶର ଚାଷୀମାନେ ଆକାଶକୁ ଚାହିଁ ଗୋଟିଏ ଧଳା ନକ୍ଷତ୍ରକୁ ଅପେକ୍ଷା କରି ଥାଆନ୍ତି । ନକ୍ଷତ୍ରଟିର ନାଁ- ସିରିୟସ । ଏହି ନକ୍ଷତ୍ରଟି ମିଶର ଦେଶର ଆକାଶରେ ଦେଖାଗଲେ ନାଇଲ୍ ନଦୀରେ ପାଣି ଆସେ । ଚାଷୀମାନେ ଏଇ ପାଣିକୁ କୁଲ୍ୟାପଥରେ ନେଇ ଜମିରେ ମଡ଼ାନ୍ତି । ନନ୍ଦଦାସ ଅନୁଭବ କଲା, ତା ଭାଗ୍ୟାକାଶରେ ଏମିତି ଗୋଟିଏ ନକ୍ଷତ୍ର ଉଇଁଛି ।

ମୂର୍ତ୍ତିବାବୁ ଖବର କାଗଜ ପଢୁଥିଲେ ।

ନନ୍ଦ ପଚାରିଲା- 'ଆପଣ ଜ୍ୟୋତିଷ, ଜାତକ ଇତ୍ୟାଦିକୁ ବିଶ୍ୱାସ କରନ୍ତି ?'

ମନ ମାନିବା ଭଳି କଥାରେ ମଣିଷ ବିଶ୍ୱାସ କରିଯାଏ । ଯେତେବେଳେ ଟଲେମି ତାଙ୍କର ପ୍ରସିଦ୍ଧ ଗ୍ରନ୍ଥ ଗାଣିତିକ ତଥ୍ୟାବଳୀ ଆଲମା ଗେଷ୍ଟରେ ପୃଥିବୀ ଚାରିପଟେ ଗ୍ରହମାନେ ବୁଲୁଛନ୍ତି ବୋଲି ଲେଖିଥିଲେ, ସେ କଥାକୁ କେହି ମିଛ ମଣିଲେ ନାହିଁ । ସେ ଖ୍ରୀଷ୍ଟୀୟ ଦ୍ୱିତୀୟ

ଶତାବ୍ଦୀର ପଣ୍ଡିତ । ତାଙ୍କର ସହସ୍ରାଧିକ ବର୍ଷ ପରେ ବାହାରିଲେ କୋପର ନିକସ୍ । ସେ ଜଣେ ଧର୍ମ ପ୍ରଚାରକ ଥିଲେ । କିନ୍ତୁ ଗଣିତ ଓ ଜ୍ୟୋତିର୍ବିଦ୍ୟାରେ ତାଙ୍କର ଆଗ୍ରହ ଓ ସାଧନାଥିଲା ଗଭୀର । ସେ ଗବେଷଣା କରି କହିଦେଲେ ଯେ, ପୃଥିବୀ ଓ ଅନ୍ୟକେତୋଟି ଗ୍ରହ ସୂର୍ଯ୍ୟ ଚାରିପଟେ ବୁଲୁଛନ୍ତି । ସୂର୍ଯ୍ୟ ହିଁ ପୃଥିବୀର କେନ୍ଦ୍ର । ଅଥଚ ଏକଥାକୁ କେହି ବିଶ୍ୱାସ କଲେ ନାହିଁ । ଶେଷରେ ପୁଣି ଏହାକୁ କେବଳ 'ଜଣେ ଲୋକଙ୍କର ଧାରଣା' ବୋଲି ହିଁ କୁହାଗଲା ।

କୋପରନିକସ୍ ସତୁରୀ ବର୍ଷ ବୟସରେ ଦେହତ୍ୟାଗ କଲେ । ସେ ପର୍ଯ୍ୟନ୍ତ କେହି ତାଙ୍କ ମତକୁ ଗ୍ରହଣ କରି ନଥିଲେ । ପୁଣି ଗାଲିଲିଓ କୋପର ନିକସ୍‌ଙ୍କ ମତକୁ ପ୍ରମାଣ କରି ଦେଖାଇ ଦେଲେ । ତଥାପି କେହି ବିଶ୍ୱାସ କଲେ ନାହିଁ । ପୋପ ଗାଲିଲିଓଙ୍କୁ ଧମକାଇଲା ଯାଏ କଥା ଗଲା । ଶେଷରେ, ସେଇ ଧମକରେ ଗାଲିଲିଓଙ୍କ ପରି ବୈଜ୍ଞାନିକ ନିଜ ମତକୁ ନିଜେ ଢ଼ୋକିଲେ । ସେଥିପାଇଁ ଅଠସ୍ତରୀ ବର୍ଷ ବୟସରେ ମୃତ୍ୟୁ ବରଣ କଲାଯାଏ ତାଙ୍କ ମନରେ ଅସ୍ୱସ୍ତି ଗୁମୁରୁଥିଲା । ଏଇ ତ ହେଲା ବିଶ୍ୱାସର ସ୍ୱରୂପ ! ମୂର୍ତ୍ତିବାକୁ କଅଣ କହିବେ ?

ନନ୍ଦ ନିଜ ପ୍ରଶ୍ନର ଉତ୍ତର ନ ପାଇ, ପୁଣି ତାକୁ ଦୋହରାଇଲା ।

ମୂର୍ତ୍ତିବାକୁ କହିଲେ- "ମୋର ଏ ବିଷୟରେ ସେମିତି କିଛି ଜ୍ଞାନ ନାହିଁ । ମୁଁ ଆଇ. ଏସ୍.ସି. ପଢ଼ିବା ବେଳେ ଆମ ପଦାର୍ଥ ବିଜ୍ଞାନର ଅଧ୍ୟାପକଙ୍କୁ ଠିକ୍ ଏମିତି ପ୍ରଶ୍ନଟିଏ ପଚାରିଥିଲି । ସେ କହିଥିଲେ - ଆକାଶରେ ଜ୍ୟୋତିଷ ବା ଗ୍ରହ ତାରାମାନଙ୍କୁ ଦେଖି ଜ୍ୟୋତିର୍ବିଦ ଗବେଷଣା କରନ୍ତି । ଜ୍ୟୋତିଷ ପେଟ ପୋଷେ । ଟିକିଏ ଅଟକି ଯାଇ, ପୁଣି କହିଥିଲେ - ଯେତେବେଳେ ପୃଥିବୀ ସ୍ଥିର ଅଛି ଓ ସୂର୍ଯ୍ୟ ସମେତ ଗ୍ରହମଣ୍ଡଳ ତାର ଚାରିପଟେ ବୁଲୁଛନ୍ତି ବୋଲି ଧାରଣା ଥିଲା, ସେତେବେଳେ ରାଶି ଚକ୍ର ଓ ତାର ପ୍ରଭାବ ବିଷୟରେ କଳ୍ପନା କରାଯାଉଥିଲା, ତୁମେ ପୃଥିବୀ, ସୂର୍ଯ୍ୟ, ଗ୍ରହ, ଓ ତାରାମାନଙ୍କ ବିଷୟରେ ଏତେ ପଢ଼ିଗଲଣି । କ୍ରାନ୍ତି ପଥ କଥା ଜାଣିଲଣି, ତାରାମାନଙ୍କଭିତରେ ସୂର୍ଯ୍ୟ କିପରି ଗତି କରୁଛନ୍ତି ଏବଂ ସଂକ୍ରାନ୍ତି ଗଣନା କରା ଯାଉଛି ବୁଝିଲଣି, ଅୟନ ଚଳନକଥା ବୁଝିଲଣି , ତଥାପି କାହିଁକି ଆଗତ ଭବିଷ୍ୟତ ସହିତ ଏହାକୁ ଯୋଡ଼ି ଭାବୁଛ ଓ ପ୍ରଶ୍ନ କରୁଛ ? ତମେ କଣ ବିଜ୍ଞାନ କ୍ଲାସରେ ଯାହା ପଢୁଛ, ପରୀକ୍ଷା କରି ଦେଖୁଛ, ସେଥିରେ ବିଶ୍ୱାସ କରୁନ ?' ସେଦିନ ତାଙ୍କ ପ୍ରଶ୍ନରୁ ହିଁ ଆମେ ଉତ୍ତର ବାହାର କରିଥିଲୁ ।"

ନନ୍ଦ କହିଲା- 'ସେଥିରୁ ଆପଣ ତାଙ୍କ ଉତ୍ତର ବାହର କରି ଥିଲେ । କିନ୍ତୁ ଆପଣଙ୍କର ଅନୁଭବ ଓ ବିଶ୍ୱାସ କଥା ପଚାରୁଛି ।'

ମୂର୍ତିବାବୁ କହିଲେ- 'ଇଞ୍ଜିନିୟରମାନେ ମଧ୍ୟ ବିଜ୍ଞାନର ଛାତ୍ର । ଆମ ଘର ପାଖରେ ଜଣେ ଇଞ୍ଜିନିୟର ଥିଲେ । ସେ ଜାତକ ଦେଖି ପେଟ ପୋଶୁ ନଥିଲେ । କିନ୍ତୁ ଜାତକ ଦେଖୁଥିଲେ । କେହି ବନ୍ଧୁ ବା ପରିଚିତ ଲୋକ ଅନୁରୋଧ କଲେ ଜାତକ ଦେଖି ଜ୍ୟୋତିଷ ଶାସ୍ତ୍ର ଅନୁସାରେ ଫଳାଫଳ ଗଣନାକରି କହୁଥିଲେ । ସେ ମୋ ବିଷୟରେ ଯାହା କହିଥିଲେ, ଏ ପର୍ଯ୍ୟନ୍ତ ପ୍ରାୟ ସବୁ ଘଟିଯାଇଛି ।'

ଭାରତରେ ବିଜ୍ଞାନର ଗବେଷଣା, ବୈଜ୍ଞାନିକ ଉଦ୍‌ଭାବନ କଣ ହୋଇଥିଲା ବା ହେବ ତାହା ଭିନ୍ନ କଥା । କିନ୍ତୁ ବିଜ୍ଞାନର ଶିକ୍ଷକମାନେ ସେମାନଙ୍କ ଛାତ୍ରଛାତ୍ରୀଙ୍କ ମନରେ ବୈଜ୍ଞାନିକ ଚେତନା ଜାଗ୍ରତ କରିବା ଦିଗରେ ନିଷ୍ଠାପର ପ୍ରୟାସ କରିବା ଏବଂ ସେ ଦିଗରେ ସଫଳ ହେବାର ଦୃଷ୍ଟାନ୍ତ ଅତ୍ୟନ୍ତ ବିରଳ। ଜ୍ଞାନ ଅର୍ଜନ ଓ ବିକାଶର ଗୋଟିଏ ଶୃଙ୍ଖଳା ଅଛି । ପରିଚ୍ଛନ୍ନ ଶୃଙ୍ଖଳିତ ମନଟିଏ ନଥିଲେ ଅଧ୍ୟୟନ ଦ୍ୱାରା ଉପଯୁକ୍ତ ତଥ୍ୟ ସଂଗ୍ରହ କରି, ତାକୁ ବୁଝିବିଚାରି ପରିମାର୍ଜିତ ଜ୍ଞାନ ଲାଭ କରିବା ସମ୍ଭବ ନୁହେଁ । ଭୁଲ କଥାଟିକୁ ଠିକ୍ ବୋଲି ମାନି ଯିବା ଦ୍ୱାରା ଅଧ୍ୟୟନ ପଥଭ୍ରଷ୍ଟ ହୁଏ । ଏହାର ଦୃଷ୍ଟାନ୍ତ ମଧ୍ୟ ବିରଳ ନୁହେଁ । ତେବେ ମୂର୍ତିବାବୁ ଯେ ବିଜ୍ଞାନର ଛାତ୍ରଥିଲେ, ଏହା ଜାଣିବା ପରେ ତାଙ୍କ ସମ୍ପର୍କରେ ନନ୍ଦର ଭାବନା ଭିନ୍ନ ମୋଡ଼ ନେଲା । ସେ ଆଇ.ଏସ୍.ସି. ପଢ଼ିବା ପରେ ଏ ଚାକିରୀରେ ପଶିଲେ କେମିତି ଓ କାହିଁକି ? କିନ୍ତୁ ନନ୍ଦ ଏପରି ଭାବିଲା ସିନା, କିଛି ପଚାରି ପାରିଲା ନାହିଁ । ଆଶଙ୍କା ହେଲା- କାଳେ ତାଙ୍କ ଜୀବନର କୌଣସି ଦୁଃଖଦ ସ୍ମୃତି ମନେ ପଡ଼ିଯିବ । ବିଫଳତା ଓ ହତାଶାର ମୁହୂର୍ତ୍ତ ଗୁଡ଼ିକ ଭୂତ ପ୍ରେତ ପରି ମାଡ଼ି ଆସିବେ । ବିକଟ ହସ ହସିବେ । ସରସ ମନଟି ତାଙ୍କର ବିଷର୍ଣ୍ଣ ହୋଇଯିବ । ସେ କଥାର ମୋଡ଼ ବଦଳାଇ ପଚାରିଲା - 'ଏଇ ରାଜା ମହାରାଜାଙ୍କଠାରୁ ଆରମ୍ଭ କରି ବଡ଼ ବଡ଼ ଧନାଢ଼୍ୟ ଲୋକଙ୍କର ଠାଣି ଫୁଟାଣି ଦେଖିଲେ ହସ ମାଡ଼େ ।'

ନନ୍ଦର ବାକ୍ୟଗୁଡ଼ିକ ବଡ଼ ଅସଂଲଗ୍ନ ଲାଗୁଥିଲା । ନାନାବାୟା ଗୀତରେ ପଦପଦାର୍ଥ ଘଟଣାର କୌଣସି ସମ୍ପର୍କ ନଥିଲା ପରି ମନେହେଉଥିଲା ତାର କଥାମାନ ।

ମୂର୍ତ୍ତିବାବୁ ପଚାରିଲେ- 'କାହିଁକି ?'

ନନ୍ଦ ଦାର୍ଶନିକ ସୁଲଭ ଢ଼ଙ୍ଗରେ କହିଥିଲା - 'ଯାହାର ରାଜ୍ୟରେ ସୂର୍ଯ୍ୟ ଚନ୍ଦ୍ର ଗୋଟିଏ ଗୋଟିଏ ଜ୍ୟୋତିସ୍ମାନ ବିନ୍ଦୁ, ତାର ରାଜ୍ୟରେ ଏମାନେ କେତେ ଏକର ଜମି, କୋଠୋଟି କୋଠାବାଡ଼ି , କେତେ ବା ଧନ ଦୌଲତ ପାଇଁ ଏତେ ଗର୍ବ ଦମ୍ଭ, ଅହଂକାରରେ ଫାଟି ପଡୁଛନ୍ତି ? ସତେ ଏ ଗର୍ବ ଦମ୍ଭ ଅହଂକାର ପଛରେ କେତେ ମୂଢ଼ତା, କେତେ ଅତଳ ସ୍ପର୍ଶୀ ମୂର୍ଖତା ରହିଛି !'

ମୂର୍ତ୍ତିବାବୁ କହିଲେ- 'ସତକଥା । ପ୍ରକୃତରେ କହିବାକୁ ଗଲେ, ଶିକ୍ଷକ, କବି, ଲେଖକ, ଦାର୍ଶନିକମାନେ ହିଁ ଗୋଟିଏ ଗୋଟିଏ ଜାତିର ପ୍ରାଣ ।'

ନନ୍ଦ ତାଙ୍କ କଥାରେ କିଛି ଯୋଡ଼ିବା କିମ୍ବା ଫେଡ଼ିବା ପାଇଁ ଆଗ୍ରହୀ ନଥିଲା ବୋଧ ହୁଏ । ସେ ଶୂନ୍ୟକୁ ଚାହିଁ କହି ଚାଲିଥାଏ - 'ଯେଉଁମାନେ ମହାଶୂନ୍ୟକୁ ଚାହିଁ ଚାହିଁ ସେଠି ଜ୍ୟୋତିଷ୍କମାନଙ୍କୁ ଗୋଟି ଗୋଟି କରି ଚିହ୍ନଟ କରିବାକୁ ଚେଷ୍ଟା କରୁଥିଲେ, ତାଙ୍କଠାରୁ କିଏ ଅଧିକ ବିଚକ୍ଷଣ ? ପୁଣି ତାରକାମାନଙ୍କ ଅବସ୍ଥିତି ଅନୁସାରେ ନକ୍ଷତ୍ର ଗୁଡ଼ିକୁ ଚିହ୍ନିବା ପରେ ସେଗୁଡ଼ିକ ମଧ୍ୟରୁ ପ୍ରତ୍ୟେକର ନାମକରଣ କରିବା ସେମାନଙ୍କ ଭିତରେ ପରସ୍ପରର ସମ୍ପର୍କ ଓ ପୃଥିବୀଉପରେ ତାର ପ୍ରଭାବ କଳନା କରିବା କେତେ ବୁଦ୍ଧି କେତେ ଅଧ୍ୟବସାୟର କଥା ! ଆଉ ମଧ୍ୟ ପୃଥିବୀର ନିର୍ଦ୍ଦିଷ୍ଟ ସ୍ଥାନରେ, ନିର୍ଦ୍ଦିଷ୍ଟ ମୁହୂର୍ତ୍ତରେ ଜନ୍ମ ଲାଭ କରିଥିବା ମନୁଷ୍ୟ ଉପର ସେମାନଙ୍କର ପ୍ରଭାବର କଳନାକୁ ବିଜ୍ଞାନ ବୋଲି ନ ମାନିଲେ ମଧ୍ୟ ସେ ପ୍ରକାର ଉଦ୍ୟମ ସାମାନ୍ୟ କଥା ନୁହେଁ ।'

ମୂର୍ତ୍ତିବାବୁଙ୍କ ମନ ଅନ୍ଦୋଳିତ ହେଉଥିଲା ଜ୍ୟୋତିର୍ବିଜ୍ଞାନ ଓ ଫଳିତ ଜ୍ୟୋତିଷ ମଧ୍ୟରେ । ଗୋଟିଏ ବିଜ୍ଞାନ । ଅନ୍ୟଟି ଅନୁମାନ । ତଥାପି ସେ ଭାବୁଥାଆନ୍ତି - ଫଳିତ ଜ୍ୟୋତିଷକୁ ଅନ୍ଧ ବିଶ୍ୱାସ ବୋଲି କେମିତି କହିବା ?

ମୂର୍ତ୍ତି ବାବୁଙ୍କର ବାପା ଚାହୁଥିଲେ, ପୁଅ ତାଙ୍କର ଇଞ୍ଜିନିୟର ହେଉ । ବଂଶର ବୁନିଆଦି ବଢ଼ିବ । ସେ ସେଥିପାଇଁ ବାପାଙ୍କ କଥାରେ ଆଇ.ଏସ.ସି ପଢ଼ିଲେ । କିନ୍ତୁ ଘଟଣା ଚକ୍ର ଏପରି ବୁଲିଗଲା ଯେ ତାଙ୍କ ପାଠ ପଢ଼ା ସେଇଠି ଅଟକି ଗଲା । ସେ ସହକାରୀ ଷ୍ଟେସନମାଷ୍ଟର ଚାକିରୀ କଲେ ।

ନନ୍ଦ ଭାବୁଥିଲା- 'ସେ କେଉଁ ସୁଦୂର ଗ୍ରାମାଞ୍ଚଳରୁ ଆସି, ଦିନାକେତେ ବହୁ କଷ୍ଟ ଭୋଗି, ପୁଣି ଏମାନଙ୍କ ଗହଣରେ ପହଞ୍ଚିବା ଭାଗ୍ୟର କଥା, ଶୁଭ ଗ୍ରହର ପ୍ରଭାବ । କିମ୍ବା ଗ୍ରହର ଶୁଭ ପ୍ରଭାବ ।'

ଦୁହିଁଙ୍କର ଭାବନା ନୀରବତା ଆଣିଥିଲା । ଏତିକି ବେଳେ ସୁବୋଧ ଆସି ପହଞ୍ଚିଗଲା । ଖବର ଦେଲା- 'ନନ୍ଦବାବୁଙ୍କୁ ମାମୁଁ ଡ଼ାକୁଛନ୍ତି ।'

ସୁବୋଧ, ମିଶ୍ର ବାବୁଙ୍କର ଭଣଜା । ମିଶ୍ରବାବୁ ରହନ୍ତି ଷ୍ଟେସନଠାରୁ ଟିକିଏ ଦୂରରେ । ତାଙ୍କର ଜଣେ ଆତ୍ମୀୟଙ୍କର ବେଶ୍ ବଡ଼ ଘରଟିଏ, ସେ ସେଇଠି ରହନ୍ତି । ଭଡ଼ା ପଡ଼େନି । ବର୍ଷକୁ ଥରେ କୋଠା ଓ ପାଚେରୀ ଧଉଳିବା, ରଙ୍ଗଦେବା ଏବଂ କେବେ କେମିତି ସାମାନ୍ୟ ମରାମତି କରିବାକୁ ପଡ଼େ । ମିଶ୍ରବାବୁ ନିଜେ ତାଙ୍କ ଆଡୁ ଆବୁଡ଼ାପଡ଼ି ସେତକ କରି ଦିଅନ୍ତି । ଏକଥା ନିଜେ ମିଶ୍ରବାବୁ ହିଁ କହୁଥିଲେ । କିନ୍ତୁ ନନ୍ଦ ମିଶ୍ରବାବୁଙ୍କର ଘର ଦେଖି ନି । କେବଳ ବର୍ଣ୍ଣନା ଶୁଣିଛି । ସେ ସୁବୋଧକୁ ପଚାରିଲା - 'କଣ ମତେ ଏକା ଯିବାକୁ କହିଛନ୍ତି ?'

ସୁବୋଧ ଅଡୁଆରେ ପଡ଼ିଲା । ମାମୁଁ ତ ତାକୁ ସେମିତି କିଛି ସ୍ପଷ୍ଟକରି କହି ନାହାନ୍ତି ! କଣ ବା ଉତ୍ତର ଦେବ ?

ମୂର୍ତ୍ତିବାବୁ କହିଲେ-'ହଁ, କେବଳ ଆପଣଙ୍କୁ ହିଁ ଡ଼ାକି ଥିବେ । ଆଜି ମିଶ୍ରବାବୁଙ୍କର ଅଫ୍ ଥିଲା । ଘରେ ତାସ୍ ଖେଳ ଜମିଥିବ । ମତେ ଖେଳି ଆସେନି । ଆପଣଙ୍କୁ ଯଦି ବ୍ରିଜ୍ ଖେଳ ଅସୁଥିବ, ବେଶ୍ ଜମେଇ ନେବେ । ସେ ପୁଣି ସୁବୋଧକୁ କହିଲେ- ଟିକିଏ ଅପେକ୍ଷା କର । ଦାସବାବୁଙ୍କୁ ସାଙ୍ଗରେ ନେଇ ଯିବ । ସେ ତମ ଘର ଦେଖି ନାହାନ୍ତି ।'

ସମଗ୍ର ସ୍କୁଲ ଜୀବନରେ ନନ୍ଦଥିଲା ଶିକ୍ଷକମାନଙ୍କର ପ୍ରିୟଛାତ୍ର । ପାଠ ପଢ଼ାଠାରୁ ଖେଳକୁଦ ଯାଏ ସବୁଥିରେ ସୁନାମଥିଲା । ଆଶା ଥିଲା ଭଲ ଛାତ୍ର ଭାବରେ ନାଁ କରିବ । କିନ୍ତୁ ଦୁର୍ଭାଗ୍ୟକୁ ହାଇସ୍କୁଲ ପରୀକ୍ଷାରେ ଦ୍ୱିତୀୟ ଶ୍ରେଣୀ ହୋଇଗଲା । ତାପରେ ଦୁର୍ଭାଗ୍ୟ ଗୋଡ଼ାଇଲା । କଲେଜ ଜୀବନରେ ତାର ଆଗ୍ରହ ଓ ଅଭ୍ୟାସ ଭିନ୍ନ ମୋଡ଼ ନେଲା । ସେ କେତେ ଜଣ ବନ୍ଧୁଙ୍କ ଠାରୁ ଉତ୍ସାହ ଓ ସମର୍ଥନ ପାଇ ନାଟକ, କ୍ରୀଡ଼ା, ଇତ୍ୟାଦିରେ ଅଧିକ ମନ ଓ ସମୟ ଦେଲା । ସାଙ୍ଗ ମେଳରେ ବେଶ୍ ଫୂର୍ତ୍ତିରେ ସମୟ କଟାଇଲା । ସେହି ସମୟରେ ସେ ତାସ୍‌ର କେତୋଟି ଖେଳରେ ବେଶ୍ ଓସ୍ତାଦ୍ ହୋଇ ଯାଇଥିଲା । ସେ ବ୍ରିଜ୍ ଖେଳ ଜାଣେ । ତା ର

ମନେ ପଡ଼ିଥିଲା କଲେଜ ହଷ୍ଟେଲର ସୁଖକର ଦିନଗୁଡ଼ିକ । ସେଦିନ ଯେଉଁ ଖେଳ ତାର ବିଫଳତାର କାରଣ ହୋଇଥିଲା, ତାହା ଯଦି ଉଭର ଜୀବନରେ ସାମାନ୍ୟ ସାହା ହେଲା ବା ରାହା ଦେଖାଇଲା, ସେଥିରୁ କାଣିଚାଏ ହେଲେ ବି ସାନ୍ତ୍ୱନା ତ ମିଳିବ !

ନନ୍ଦ ଚାଲିଲା ମିଶ୍ରବାବୁଙ୍କ ଘରକୁ । ସୁବୋଧ ଥାଏ ସାଙ୍ଗରେ । ସଞ୍ଜହୋଇ ଆସୁଥାଏ ।

## ।। ୮ ।।

ଛୋଟ ପୁରୁଣା କାଳିଆ କୋଠା । ପ୍ରଶସ୍ତ ହତା । ସାମ୍ନାରେ ଇଜି ଚେୟାର ଦୁଇଟିରୁ ଗୋଟିକରେ ବସିଥିଲେ ମିଶ୍ରବାବୁ । ଧଳା ହାପ୍ ଶାର୍ଟ ଓ ଧୋତି ତାଙ୍କର ପ୍ରିୟ ପରିଧାନ । ସବୁବେଳେ ସଫା ପିନ୍ଧନ୍ତି । ବେଶ୍ ପରିଷ୍କାର ପରିଚ୍ଛନ୍ନ ଚେହେରା । ଆତ୍ମୀୟତା-ପ୍ରସନ୍ନ-ମୁହଁ ।

ପାଖ ଚଉକିରେ ବସିଥିଲେ ଶୁଭ୍ରଧୋତି, ପଞ୍ଜାବୀ ପରିହିତ ଜଣେ ଭଦ୍ରଲୋକ । ତାଙ୍କ ପଞ୍ଜାବୀର ଗିଲ, ଧୋତିର କୁଞ୍ଚ, ସୁନା ଫ୍ରେମ୍‌ର ଚଷମା ତଳୁ ପ୍ରଫୁଲ୍ଲ ପ୍ରଶାନ୍ତ ଚାହାଣିରୁ ତାଙ୍କର ରୁଚି ବାରି ହୋଇଯାଉଥାଏ । ଦୁହିଙ୍କ ଭିତରେ ଆତ୍ମୀୟ ଆଳାପ ଜମିଥାଏ ।

ହତାର ଡ଼ାହାଣ ପଟେ କଣକୁ କୂଅଟିଏ । ତା ଚଉତରାକୁ ଲାଗି ଲଗାହୋଇଥିବା ବଉଳ ଗଛଟି ଅଳ୍ପ ଝଙ୍କାଳିଆ । ତାରି ମୂଳରେ ସୁନ୍ଦର ଛୋଟ ଝିଅଟିଏ ଫୁଲଗୁଡ଼ିଏ ବୁଢ଼ାଇ ଖେଳୁଥିଲା ।

ମିଶ୍ରବାବୁ କହିଲେ- 'ମା, ସଞ୍ଜ ହେଲାଣି, ଭିତରକୁ ଯା ।'

ଝିଅଟି ପଚାରିଲା- 'ନନା, ସୁବୋଧ ଭାଇ କେତେବେଳେ ଫେରିବ ?'

ସେ କହିଲେ- 'ଏଇ ଆସୁଥିବ । ବାଟରେ ହୋଇଥିବ କି କଅଣ ।...... ତୁ ଗଲୁ ମା ଭିତରକୁ ।'

ଝିଅଟି ଟିକିଏ ଉପରକୁ ଅନାଇଲା । ଟିକିଏ ନିଜେ ଫୁଲ ପାଖୁଡ଼ାରେ ସଜାଇଥିବା

କୋଠିକୁ ଅନାଇଲା । ତାଳିଟାଏ ମାରି ଉଠିଗଲା । ଘର ଭିତରକୁ ଯାଉ ଯାଉ ବୋଲୁ ଥିଲା- 'ଆକାଶ ଦିଶେ କି ସୁନ୍ଦର

ବର୍ଣ୍ଣବୋଧର କୌଣସି ଗୋଟିଏ ପଦ୍ୟର ପ୍ରଥମ ପଙ୍‌କ୍ତି ।

ଝିଅଟି ନାନା ପ୍ରକାର ଓ ଆକାରର ଫୁଲ ଆଣି ଆକାଶର ଅନୁକରଣରେ ଚନ୍ଦ୍ର ଓ ତାରା ମଣ୍ଡଳ କରୁଥିଲା ।

ସୁବୋଧ ଫାଟକ ଫିଟାଇ ଭିତରକୁ ଆସିଲା । ତା ପଛେ ପଛେ ଆସୁଥାଏ ନନ୍ଦ । ମାଂସ କଷା ହେଉଥିବାର ବାସ୍ନା ସେଯାଏ ମହକି ଆସୁଥାଏ । ନନ୍ଦ ଅନୁମାନ କଲା, ମିଶ୍ରବାବୁଙ୍କ ଘରେ ଅତିଥି ଚର୍ଚ୍ଚାର ଆୟୋଜନ ଚାଲିଛି ।

ନନ୍ଦକୁ ଦେଖି, ଗେଟ୍ ଯାଏ ଉଠି ଆସିଲେ ମିଶ୍ରବାବୁ । ସୁବୋଧକୁ ଠାରି ଦେଲେ ଚଉକିଟାଏ ଆଣିବାଲାଗି । ବଡ଼ ଆଦରରେ ପାଛୋଟି ନେଲେ । ନନ୍ଦ ଏତେ ସୌଜନ୍ୟ ଆଶାକରୁ ନଥିଲା । ତେଣୁ କୃତଜ୍ଞତାରେ ନମ୍ର ହୋଇ ପଡୁଥାଏ । ସେ ବସିବା ପରେ ମିଶ୍ରବାବୁ, ସେ ଭଦ୍ରଲୋକଙ୍କ ସହିତ ନନ୍ଦକୁ ପରିଚିତ କରାଇ ଦେଲେ । ନନ୍ଦ ଛିଡ଼ା ହୋଇ ନମସ୍କାର କଲା । ସେ ପ୍ରତିନମସ୍କାର କରି ବସିବାକୁ ଅନୁରୋଧ କଲେ । ତାଙ୍କର ସ୍ୱରଥିଲା ଭଦ୍ର ଓ ମାର୍ଜ୍ଜିତ ।

ନନ୍ଦ ମିଶ୍ରବାବୁଙ୍କଠାରୁ କିଛି ଶୁଣିବାକୁ ଅପେକ୍ଷା କରୁଥିଲା । ତେଣୁ ମଉନ ହୋଇ ବସିଥିଲା । କିଛି କ୍ଷଣ ପରେ, ସେ ଭଦ୍ରଲୋକ କଥା ଆରମ୍ଭକଲେ । ସେ ଯେଉଁ ରିକ୍ସାରେ ଆସୁଥିଲେ, ସେଇ ରିକ୍ସାବାଲା ଜଣେ ବାବୁଙ୍କର କଲମ ତାଙ୍କ ରଖିବାକୁ ଠାକୁରଙ୍କୁ ଡ଼ାକୁଥିଲା । ଠାକୁରେ ତାଙ୍କର ଉନ୍ନତି କରିବେ ବୋଲି କହୁଥିଲା । କିନ୍ତୁ ସେ ବିଚରା ସେଇ ଭଦ୍ରଲୋକଙ୍କୁ ଏପର୍ଯ୍ୟନ୍ତ ଦେଖି ନାହିଁ ।

ମିଶ୍ରବାବୁ କହିଲେ- 'ହଉ, ସେ ନ ଦେଖୁଣୁ ତମେ ତ ଦେଖିଲ ।'

ନନ୍ଦକୁ କଥାଟି ବୁଝିବାକୁ ଦୁଇମିନିଟ୍ ଲାଗିଲା । ତାର ସେ ଦିନର କଥା ମନେ ପଡ଼ିଗଲା । ସେଦିନ ଭୋକିଲା ଥିଲା । ପଇସାତକ ଧରି ହୋଟେଲକୁ ଯିବ ବୋଲି ଭାବୁଥିଲା । ସେଇ ଦିନ ଓ ସେଇ ପରିସ୍ଥିତି ମନେ ପଡ଼ିବାରୁ ନନ୍ଦକୁ ଲାଜମାଡ଼ିଲା । ଭଗବାନ ତାକୁ କେତେବଡ଼ ଭ୍ରମରୁ ରକ୍ଷା କରିଦେଲେ । ତାର ମନ ଭଗବାନଙ୍କ ପ୍ରତି କୃତଜ୍ଞତାରେ ଭରି

ଉଠିଲା । ମନର ଭାବ ଓ ଭାବନା ମୁଖ ମୁଣ୍ଡଳକୁ ଚହଟ ଦେଉଥାଏ । ତାର ଚେହେରା ଓ ଢ଼ଙ୍ଗ ଭଦ୍ରଲୋକଙ୍କୁ ପ୍ରଭାବିତ କଲା ।

ମିଶ୍ରବାବୁ କହିଲେ- 'ନନ୍ଦବାବୁ, ମୁଁ ଆପଣଙ୍କୁ ଆଗରୁ ଖବର ଦେଇ ପାରି ନଥିଲି । କିଛି ଭାବିବେ ନାହିଁ । ଆଜି ଆପଣ ଆମ ସାଙ୍ଗରେ ଠାଆରେ ବସିବେ ।'

ନନ୍ଦ ଟିକିଏ ଅଡୁଆରେ ପଡ଼ିଲା । କହିଲା- 'ମୁଁ ଆପଣଙ୍କ ପାଖରେ କୃତଜ୍ଞ । କିନ୍ତୁ ଆଜି ତ ଆମେ ରାତି ପାଇଁ ରାନ୍ଧି ଦେଇଛୁ । ଖାଦ୍ୟତକ ନଷ୍ଟ ହେବ । ପୁଣି ମୂର୍ତ୍ତିବାବୁଙ୍କୁ ମଧ କହି ଆସିନି । ସେ ମୋତେ ଅପେକ୍ଷା କରି, ନଖାଇ ରହିଯିବେ ।'

ସୁବୋଧ ଘର ଭିତରୁ ଆସିଲା । ତା ହାତକୁ ଧରି ସେଇ ଝିଅଟି ଅଝଟ ହୋଇ କହୁଥାଏ- 'ମତେ ଧ୍ରୁବତାରା ଦେଖାଇ ଦିଅ ।'

ସୁବୋଧ ମିଶ୍ରବାବୁଙ୍କ ପାଖକୁ ଆସି ଚୁପ୍‌କରି କହିଲା- 'ମାଇଁ ପଠାଉଛନ୍ତି ମୂର୍ତ୍ତିବାବୁଙ୍କୁ କହି ଆସିବା ପାଇଁ । ଆପଣ ମୀନୁକୁ ଧ୍ରୁବତାରା ଦେଖାଉ ଥାଆନ୍ତୁ । ମୁଁ ତାଙ୍କ ଘରକୁ ଯାଇ ଡ଼ାକି ଦେଇ ଆସେ ।'

ନନ୍ଦକୁ ସୁବୋଧର କଥା ଶୁଣାଗଲା । ମିଶ୍ରବାବୁ ନନ୍ଦ ଆଡ଼କୁ ଅନାଇ ଟିକିଏ ହସିଦେଲେ । ସୁବୋଧକୁ କହିଲେ - 'ହଁ ଯେ ବାପା, ସଞ୍ଜ ହୋଇଗଲାଣି । ଟିକିଏ ହୁସିଆର ହୋଇ ଯିବୁ । ମୂର୍ତ୍ତିମଉସାଙ୍କୁ ମୁଁ କହିଛି ବୋଲି କହିବୁ ।'

ସୁବୋଧ ମୁଣ୍ଡ ଟୁଙ୍ଗାରି ଦେଇ ଚାଲି ଗଲା । ମୀନୁ ଆସି ଛିଡ଼ା ହେଲା ମିଶ୍ର ବାବୁଙ୍କ ପାଖରେ । ନନ୍ଦ ଆଡ଼କୁ ଟିକିଏ ଲାଜ ଲାଜ ହୋଇ, ହସ ହସ ମୁହଁରେ ଅନାଇ ମୁହଁଟି ତଳକୁ ପୋତି ଦେଲା ।

ନନ୍ଦ ମୀନୁକୁ ହାତରେ ଠାରି ଡ଼ାକିଲା, କହିଲା- 'ଆସ ମା, ମୁଁ ତୁମକୁ ଧ୍ରୁବତାରା ଚିହ୍ନାଇ ଦେବି ।'

ଝିଅଟି ମିଶ୍ରବାବୁଙ୍କ ପାଖକୁ ଲାଗି ଆସି ଛିଡ଼ା ହେଲା । ଗେଲେଇ ହୋଇ କହିଲା- 'ନନା, ଇଏ ପରା ଜଣେ ସାର୍‌, ମତେ କଅଣ 'ତମେ' ବୋଲିକା କହୁଛନ୍ତି ?'

ନନ୍ଦ ଭାବିଲା, ଏଇଠି ବୋଧେ ଆଜିଠାରୁ ଟିଉସନ୍ ପାଇଁ ନିଯୁକ୍ତି ମିଳିଗଲା । ସେ

ହସି ହସି କହିଲା - 'ନାଇଁ ଲୋ ମା, ମୋର ଭୁଲ ହୋଇଗଲା । ଆ ମୋ ପାଖକୁ ।' ସେ ଝିଅଟିକୁ ପାଖକୁ ନେଇଗଲା ।

ମୀନୁ ନନ୍ଦ ପାଖରେ ଛିଡ଼ା ହେଲା । ନନ୍ଦ ପଚାରିଲା- 'ମତେ ଆଗ କହ, ତୁ ଭାଲୁ ଦେଖିବୁ କି ସାତ ଋଷିଙ୍କୁ ଦେଖିବୁ ? ତୁ ଯାହାକୁ ଦେଖିବାକୁ କହିବୁ, ତାକୁ ଦେଖାଇ ଦେବି ।'

ମୀନୁ ବିଶି ଆଙ୍ଗୁଠିକୁ ଟିକିଏ ନାକ ପାଖରେ ରଖି ଭାବିଲା । କହିଲା- 'ଭାଲୁ ଦେଖିବି ।'

ନନ୍ଦ କହିଲା - 'ହଉ, ଆମେ ଆକାଶରେ ଭାଲୁ ଦେଖିବା ଯେ, ତୁ ଆଗ ମତେ କହ ଭାଲୁ ଦେଖିଛୁ କି ନାହିଁ ?'

ମୀନୁ ହଁ କଲା ।

ନନ୍ଦ ପୁଣି ପଚାରିଲା - 'ତା ନାଚ ଦେଖିଛୁ ?'

ସେ ହଁ କଲାରୁ ପୁଣି ପଚାରିଲା - 'ତୁ ତା ପରି ନାଚି ପାରିବୁ ?'

ମୀନୁ କିଛି କହିଲାନି । ତାକୁ ଲାଜ ଲାଗିଲା ।

ନନ୍ଦ କହିଲା- 'ହଉ, ଥାଉ । ତୁ ତୋ ସୁବୋଧ ଭାଇକୁ ଭାଲୁ ନାଚ ଦେଖାଇବୁ । ଏବେ ମତେ କହ, ଭାଲୁ ଚିତ୍ର ଆଙ୍କି ପାରିବୁ କି ନାହିଁ ?'

ମୀନୁ ନିଜ ବିଶି ଆଙ୍ଗୁଠିକୁ ଦାନ୍ତରେ କାମୁଡ଼ି ତଳକୁ ମୁହଁପୋତି ଛିଡ଼ା ହୋଇଥାଏ ।

'ପାଟିରୁ ହାତ କାଢ଼ି ଦେ, ମା'- କହି, ନନ୍ଦ ତା ହାତଟିକୁ ପାଟି ପାଖରୁ କଢ଼ାଇ ଆଣିଲା । କହିଲା- 'ତୁ ଖାତା ପେନ୍‌ସିଲ ଧରି ପିଣ୍ଡା ଉପରକୁ ଆ । ମୁଁ ବତାଇଦେବି କେମିତି କେତୋଟି ବିନ୍ଦୁକୁ ଯୋଡ଼ିଲେ ଭାଲୁଚିତ୍ର ଆଙ୍କିଦେଇହେବ ।'

ଦୁହେଁ ଉଠିଗଲେ ପିଣ୍ଡା ଉପରକୁ । ମୀନୁ ବିନ୍ଦୁଗୁଡ଼ିକୁ ଯୋଡ଼ି ଯୋଡ଼ି ଭାଲୁ ଚିତ୍ର ଆଙ୍କି ପାରିବା ଯାଏ, ନନ୍ଦ ପୁଣି ଅଙ୍କାଉ ଥାଏ । ଚାରି ପାଞ୍ଚଥର ଚେଷ୍ଟାପରେ ହୋଇଗଲା କି କଣ, ଖୁସି ହୋଇ ଦୁହେଁ ଉଠି ଆସିଲେ ବାହାରକୁ ।

ନନ୍ଦ କହିଲା- 'ଦେଖ, ଆମ ହାତରେ ଏଇନା, ପେନ୍‌ସିଲ ନାହିଁ କି କାଗଜ ନାହିଁ । ତତେ ଆକାଶରେ କେତୋଟି ତାରା ଚିହ୍ନାଇ ଦେବି । ଦେଖିବା ତୁ ମନେ ମନେ ତାକୁ ଯୋଡ଼ି

ଯୋଡ଼ିକା ଭାଲୁଟିଏ କଳ୍ପନା କରି ପାରୁଛୁ କି ନାହିଁ ।’

ମୀନୁ ଭାଲୁର ଚିତ୍ର କଳ୍ପନା କରିବା ସଙ୍ଗେ ସଙ୍ଗେ ତାରାମାନେ କେମିତି ଆକାଶରେ ସଜାଇ ହୋଇଅଛନ୍ତି ଲକ୍ଷ୍ୟ କଲା । ତାକୁ ଭାରି ମଜା ଲାଗିଲା ।

ନନ୍ଦ କହିଲା - ‘ଏଇ ତାରାମାନଙ୍କ ଭିତରେ ସାତୋଟି ତାରା ଅଛନ୍ତି । ସାତ ଜଣ ଋଷିଙ୍କ ନାଁ ଅନୁସାରେ ସେମାନଙ୍କ ନାଁ ଦିଆଯାଇଛି । ସେଇ ତାରାଗୁଡ଼ିକ ହେଲେ- ମରୀଚି, ବଶିଷ୍ଠ, ଅଙ୍ଗିରା, ଅତ୍ରି, ପୁଲସ୍ତ୍ୟ, ପୁଲହ, କ୍ରତୁ । ଏଇନା ଯଦି ଭାଲୁକୁ ଭୁଲିଯିବୁ, ତେବେ ଦେଖିବୁ ଏଇ ସାତ ଜଣ ଋଷି ପ୍ରଶ୍ନବାଚକ ଚିହ୍ନ ଉପରେ ବସିଲା ପରି, ଯିଏ ଯାହା ଜାଗାରେ ସଜାଡ଼ି ହୋଇ ବସିଛନ୍ତି ।’

ନନ୍ଦ ତାରା ଗୁଡ଼ିକୁ ଚିହ୍ନାଇ ଦେଇ, ତା ମୁଣ୍ଡ ଉପରେ ସ୍ଥିର ଭାବରେ ଥିବା ଅଳ୍ପ ଉଜ୍ଜ୍ୱଳ ତାରାଟିକୁ ଦେଖାଇ ପଚାରିଲା- ‘ଏଇ ସେଠି ତାରାଟିଏ ଦେଖି ପାରୁଛୁ ?’

ମୀନୁ କେତେଥର ଚେଷ୍ଟା କଲା ପରେ ଦେଖି ପାରିଲା, ହଁ କଲା । ନନ୍ଦ କହିଲା ‘ସେଇଟି ଧ୍ରୁବ ତାରା । ମୁଁ ପଅର ଦିନ ଆସିବି । ମତେ ଧ୍ରୁବ ତାରା ଚିହ୍ନାଇ ଦେବୁ, ତା ପରେ ତତେ ଧ୍ରୁବ, ଉତ୍ତାନ ପାଦ ରାଜା ଓ ତାଙ୍କର ଦୁଇ ରାଣୀଙ୍କ କଥା କହିବି ।’

ମିଶ୍ରବାବୁଙ୍କ କାନରେ ମୀନୁ ଓ ନନ୍ଦଙ୍କ ଆଲୋଚନାରୁ ପଦେ ପଦେ ପଡୁଥାଏ । କିନ୍ତୁ ତାଙ୍କର ବନ୍ଧୁ ମଝିରେ ମଝିରେ ସେମାନଙ୍କୁ ଲକ୍ଷ୍ୟ କରୁଥାନ୍ତି ।

ମିଶ୍ରବାବୁ କହିଲେ- ‘ପ୍ରଭୁ, ଏଇ ଯୋଉ ଦୃଷ୍ଟିକୋଣ କଥାଟି ନା, ବଡ଼ ବିଚିତ୍ର ! ଆମ ଆଖିକୁ ଯିଏ ସାତ ଋଷିଙ୍କର ବୈଠକ ପରି ଦିଶୁଛି, ପାଶ୍ଚାତ୍ୟ ଲୋକଙ୍କୁ ସେଠି ଭାଲୁଟାଏ ଲାଞ୍ଜଟେକି ତିନି ଗୋଡ଼ରେ ଛିଡ଼ା ହେଲା ପରି ଦିଶୁଛି ।’

ନନ୍ଦ, ଭଦ୍ରଲୋକଙ୍କ ନାଁ ଜାଣିବାରେ ଆଗ୍ରହୀଥିଲା । ସେମାନଙ୍କ କଥାବାର୍ତ୍ତାରୁ ଅନୁମାନ କଲା, ହୁଏତ ପ୍ରଭୁପାଦ ବା ପ୍ରଭୁପ୍ରସାଦ ହୋଇଥିବ । ସେ ବଡ଼ ମଧୁର ହସ ହସି, ପଦେ ପଦେ କଥା କହୁଥାଆନ୍ତି । କିନ୍ତୁ ଭାଲୁ ନାଁ ଟା ଶୁଣି ମନ ସହିତ ଟିକିଏ ଅତୀତକୁ ପଳାଇଲା ପରି ଲାଗିଲେ । ତା ପରେ ମିଶ୍ରବାବୁଙ୍କ ଆଡ଼କୁ ଚାହିଁ କହିଲେ- ‘ମୁଁ କିନ୍ତୁ ଭାଲୁକୁ ଭୁଲି ପାରେ ନାହିଁ । ଆଃ ବଢ଼ିଆ ଲୋକଟା ।’

'ବଡ଼ କାବା କଥା ! ତୋ ଭାଲୁ କଣ ତା ହେଲେ ଗୋଟାଏ ମଣିଷ ?' -ମିଶ୍ର ବାବୁ ପ୍ରଶ୍ନ କଲେ ।

ଭଦ୍ରଲୋକ ବୋଧହୁଏ ମିଶ୍ର ବାବୁଙ୍କର ସବୁ କଥା ଶୁଣି ପାରୁ ନ ଥାନ୍ତି । ତାଙ୍କ ମନ କେଉଁ ମଧୁର ମୁଲାୟମ ଇଲାକାକୁ ମୁହାଁଇଥାଏ । ତଥାପି ଟିକିଏ ଅଟକି ଅଟକି ବାକ୍ୟ ଟିଏ ଉଚ୍ଚାରଣ କଲେ - 'ବଡ଼ ଅପାସୋରା ସେଇ ସ୍ମୃତି ।'

'ସେ ଯମେଶ୍ୱର । ବାପାଙ୍କର ଡ୍ରାଇଭର । ବଡ଼ କ୍ୱାଟରର ଗୋଟିଏ କରକୁ ଗାରାଜ ଓ ଡ୍ରାଇଭରର ରହିବା ଘର । ମଣିଷ ଭାବେ ସେ ଭାରି ଭଲ, ବିଶ୍ୱସ୍ତ । ଘର ବୋଧହୁଏ ଦଶପଲ୍ଲା କି ନୟାଗଡ଼ । ଠିକ୍ ମନେ ନାହିଁ । ତେବେ ବହୁ ଦିନୁ ଜୟପୁରରେ ଚଳିଛି । ସେ ଅଞ୍ଚଳର ରାସ୍ତା ଘାଟ ପାହାଡ଼, ନଈ ସହିତ ତାର ପରିଚୟ ଜମିଯାଇଥାଏ । ବହୁ ଗଛଲଟା ଚିହ୍ନି ଜାଣେ । କେତେ କେତେ ଲତା ଗୁଳ୍ମର ଦ୍ରବ୍ୟଗୁଣ ବିଷୟରେ କହେ । ଆମ ପ୍ରତି ତାର ବ୍ୟବହାରରେ ସ୍ନେହ ଓ ଖାତିରକୁ ଏମିତି ଭାବରେ ମିଶାଇ ପ୍ରୀତିକର କରିଦେଇଥାଏ ଯେ, ଆମେ ତା ପ୍ରତି ପ୍ରାୟ ଢ଼ଳି ଯାଇଥାଉ । କଳା, ଗେଡ଼ା, ବାଳ ବାଳୁଆ ଚେହେରା । ଗୋଜିଆ ମୁହଁ । ଡ଼ାରଉଇନ୍ ତାକୁ ଦେଖିଥିଲେ ବୋଧହୁଏ ମଣିଷର ପୂର୍ବ ଅବସ୍ଥା ବିଷୟରେ ଭିନ୍ନ ମତ ଦେଇଥାନ୍ତେ । କେହି କେହି ତାକୁ ଭାଲୁ ଡ୍ରାଇଭର କହନ୍ତି ।'

ମିଶ୍ରବାବୁ ପାନ ଡ଼ବା କାଢ଼ି ତାଙ୍କ ଆଡ଼କୁ ବଢ଼ାଇ ଦେଲେ । ନିଜେ ଖଣ୍ଡିଏ ପାଟିରେ ଦେଉ ଦେଉ କହିଲେ - 'ତା ହେଲେ ତାରି କଥା ମନେ ପଡ଼ିଗଲା ?'

ପ୍ରଭୁବାବୁ ପାନ ଖିଲେ ନେଉ ନେଉ କହିଲେ - 'ଶୁଣ, ସେତେବେଳେ ଭାଇ ଆଇନ୍ ପଢୁଥାଏ । ତମେ ତ ଭାଇ ସ୍ୱଭାବ ଜାଣିଛ ।'

ମିଶ୍ରବାବୁ ମୁଣ୍ଡ ହଲାଇ କହିଲେ - 'ହଁ ବିଭୁ ଭାଇକି ଜାଣିନି ? ଭାରି ଶିକାର ପ୍ରିୟ , ଚେସ୍ ଖେଳରେ ବି ଓସ୍ତାଦ୍ । କଣ ହେଲା ତା ପରେ ?'

ପ୍ରଭୁ ବାବୁ କହିଲେ- 'ବାପା ସେତେବେଳେ ରହୁ ଥାନ୍ତି ଜୟପୁରରେ । ମୁଁ ତ ପିଇସି ଘରକୁ ପୁଅ ହୋଇ ଆସିଥାଏ । ତେଣୁ ନିଜ ଘରେ କୁଣିଆ ! ବାପାଙ୍କୁ ଡ଼ାକେ 'ଜୟପୁର ବାପା' । ଭାଇ ମୋଠୁ ଆଠ ନଅ ବର୍ଷ ବଡ଼ । ବାପାଙ୍କର ସମାସ୍କନ୍ଦ ପୁଅ ପରି

ବାହାରି ଆସୁଥାଏ । ସବୁ କଥାରେ ମାମଲତି କରୁଥାଏ । କହିଲା- କୁଟୁରା ମାଂସ ଖାଇବାକୁ ମନ ହୋଇଛି । ଶିକାରକୁ ଯିବା ।'

ଆମେ ଶିକାରକୁ ଗଲୁ କହିଲେ ଭୁଲ ହେବ । ବରଂ ସେ ଗଲେ, ମୁଁ ଗଲି ତାଙ୍କ ସାଙ୍ଗରେ । ଜମେଶ୍ୱର ଜିପ୍ ଚଳାଉଥାଏ । ଜୟପୁରଠାରୁ ପ୍ରାୟ ୧୦ ମାଇଲ ଖଣ୍ଡେ ହେବ । କୋଲାବ୍ ନଦୀ କୂଳରେ ତିନି ଚାରୋଟି ପାଖାପାଖି ଠିଆ ହୋଇଥିବା ପାହାଡ଼, ଜଙ୍ଗଲ ମଝିରେ ଭାରି ସୁନ୍ଦର ଦେଖା ଯାଉଥାଏ । ଧଳା ଧଳା କୋରେଇ ଫୁଲ ସବୁଜ ପତ୍ର ସାଙ୍ଗକୁ ପେନ୍ଥା ପେନ୍ଥା ହୋଇ ଗଛମାନଙ୍କରେ ଖୁନ୍ଦିହୋଇ ଖୁବ୍ ଚମତ୍କାର ଦିଶୁଥାଏ । ନଈ ଉପରେ ବ୍ରିଜ୍, ମୁଁ କହିଲି - 'ଏଇଠି ଟିକିଏ ରହିବା । ଜାଗାଟି ଭାରି ଭଲ ଲାଗୁଛି ।'

ଭାଇ କହିଲା- 'ଏତେ ବାଟ ଯାଏ ଆସିଲେ କୋଉଠି ତ କୁଟୁରାଟାଏ କି ମିରିଗଟାଏ ହାବୁଡ଼ିଲା ନାଇଁ । ଚାଲ ଆର ପଟକୁ ଯିବା ।'

ସୂର୍ଯ୍ୟ ଅସ୍ତ ହେବା ବେଳକୁ ଏ ଜାଗାଟି କେମିତି ଦିଶୁଥିବ ବୋଲି ମନେ ମନେ ଅନୁମାନ କରି ମୁଁ ଖୁସି ହେଉଥାଏ । ଆର ପାରିକୁ ଗଲୁ । କିଛି ବାଟ ଖେଦିବା ପରେ ଶିକାର ଧରି ଫେରିବା ବେଳର ଦୃଶ୍ୟ, ସତରେ ଭୁଲିବାର ନୁହେଁ ।

ବ୍ରିଜ୍ ଉପରେ ବାଘଟିଏ ଶୋଇଛି । ଆମେ ଯିବୁ କେମିତି ? ଭାଇ ବନ୍ଧୁକ ସଜାଡ଼ି ଧରିଲା, ଏଣେ ଯମେଶ୍ୱର ପ୍ରମାଦ ଗଣିଲାଣି । ଡ଼ାକୁଥାଏ-'ପ୍ରଭୁ ରଘୁନାଥ, ହନୁମାନ, ଯାମ୍ବବାନ ।'

ଭାଇର ବୀରତ୍ୱ ଉପରେ କେତେ ବା ଭରସା ! ବାଘ ତ ଆଉ କୁଟୁରା ନୁହେଁ । ମୁଁ ଡ଼ରିଗଲିଣି ସେତେ ବେଳକୁ । ଗାଡ଼ି ଅଳ୍ପୁଅ କିଛି ସମୟ ପଡ଼ିଲା ପରେ ବାଘଟା ଉଠିଲା । ଧୀରେ ଧୀରେ ଚାଲିଗଲା । ସେହି ଚାଲି ଏବଂ ବେପରୁଆ ଠାଣିରେ ଯିବାର ଦୃଶ୍ୟ ଏବେ ବି ମନରେ ଲାଖି ରହିଛି ।

ସେଦିନ ଜିପ୍‌ରେ ଷ୍ଟିଅରିଙ୍ଗ ଧରିଥିବା ବେଳେ ଯମେଶ୍ୱର ଜାମ୍ବବାନ ପରି ଲାଗୁଥାଏ । ପରେ ଜାଣିଲି, ତା ବାପା ରାମଲୀଳାରେ ଜାମ୍ବବାନ ହୋଇ ବାହାରୁଥିଲେ । ସେ ତାଙ୍କଠାରୁ ଶୁଣିଥିଲା - ବଣ ବାଟରେ ହନୁମାନ ଜାମ୍ବବାନଙ୍କୁ ସୁମରଣା କଲେ ବିପଦ କଟିଯାଏ ।'

ପ୍ରଭୁବାବୁ କହିସାରି ସୁନ୍ଦର ହସଟିଏ ହସି ଦେଲେ । ପୁଣି କହିଲେ- 'ଏଇ ଭୁବନେଶ୍ୱର

କଣ କମ୍ କଣ ଥିଲା କି !' ତାପରେ ଚାଲିଲା ଭୁବନେଶ୍ୱର ନୂଆ ରାଜଧାନୀ ତୋଳା ହେଉଥିବା ଅଞ୍ଚଳରେ ଏଇ କେତେବର୍ଷ ତଳଯାଏ ଥିବା ରାମପୁର, ଭରତପୁର ସଂରକ୍ଷିତ ଅରଣ୍ୟର ବର୍ଣ୍ଣନା ।

ନନ୍ଦ ସେମାନଙ୍କ ଆଲୋଚନ ଉପଭୋଗ କରୁଥାଏ । ମଣିଷ ମନ ସତରେ ବଡ଼ ବିଚିତ୍ର । କଥା ପଡୁ ପଡୁ ସ୍ମୃତି କୁଆଡ଼େ କୁଆଡ଼େ ଖେଦି ଯାଏ । ନନ୍ଦ କହିଲା- "ସାର୍ ରେଳଗାଡ଼ି ଦେଖିଲେ ମୋର ଫକୀର ମୋହନଙ୍କ ଦଶପଲାରେ ଦେବାନୀ ଅନୁଭୂତି ମନେ ପଡ଼େ । ରାଜା ଯୋଉ କହିଲେ - 'କଣ ସାହାବ, ରେଳ ଗାଡ଼ି ଚଳିବ ? ସେ ଶଗଡ଼ ଏ ବିଲ ବାଟରେ ଚଳି ପାରିବ ନାହିଁତ ?" ମିଶ୍ର ବାବୁ ହୋ ହୋ ହୋଇ ହସି ଉଠିଲେ ।

ପ୍ରଭୁବାବୁଙ୍କ ସ୍ମୃତିରେ ବୋଧହୁଏ ଫକୀର ମୋହନଙ୍କ ଆତ୍ମଜୀବନୀର ସେଇ ଅଂଶଟି ତାଜା ଥିଲା । କହିଲେ - 'ସେ ରେଳ ଗାଡ଼ି ପାଇଁ ଯେଉଁ ସଡ଼କ ତୟାର ହେବ ସେଥିରେ ପାଞ୍ଚ ହଜାର ଯାଏ ଟଙ୍କା ଖରଚ ହୋଇଯିବ ବୋଲି ରାଜା ଅଟକଳ କରିଥିଲେ । ସାହେବ ଯେତେବେଳେ କହିଲେ ନା ନା ଢେର ଅଧିକ ଖରଚ ହେବ । ରାଜା କାବା ହୋଇ ଗଲେ । କିନ୍ତୁ ତାଙ୍କ ଅନ୍ଦାଜ କୋଡ଼ିଏ ହଜାର ଉପରକୁ ଯାଇ ପାରିଲା ନାହିଁ ।'

ସମସ୍ତେ ନିଜ ନିଜ କଥାକୁ ଉପଭୋଗ କରି ହସି ଉଠିଲେ । ତାରି ଭିତରେ ଶୁଭିଲା ଗୋଟିଏ ଛୋଟ ପିଲାର ହସ ।

ମୀନୁ କେତେ ବେଳେ ରେଳ ଗାଡ଼ି ନାଁ ଶୁଣି ସେଠାକୁ ଚାଲି ଆସିଥିଲା । ପାଖରେ ଛିଡ଼ା ହୋଇ ସେମାନଙ୍କ କଥା ବାର୍ତ୍ତାକୁ ଉପଭୋଗ କରୁଥିଲା ।

ପରଦା ସେପଟୁ ଶୁଭିଲା- 'ମୀନ , ନନାଙ୍କୁ କହ, ତିନି ଜଣଙ୍କ ପାଇଁ ଭିତର ପିଣ୍ଡାରେ ଆସନ ପଡ଼ିଲାଣି ।'

ନନ୍ଦ ଯେ ତିନି ଜଣଙ୍କ ଭିତରୁ ଜଣେ, ତାହା ଭାବି ଭଗବାନଙ୍କ ପ୍ରତି ମନେ ମନେ କୃତଜ୍ଞତାରେ ଅବନତ ହୋଇ ଆସିଲା । ମନେ ପଡ଼ିଗଲା- 'ଦେଶେ ଦେଶେ କଳତ୍ରାଣି, ଦେଶେ ଦେଶେଚ ବାନ୍ଧବାଃ ।'

ନନ୍ଦ ଆଗରୁ ଭାବିଥିଲା ମିଶ୍ରବାବୁ ତା ପାଇଁ ଟିଉସନ୍ ବୁଝି ଦେବେ । ସେଦିନ

ଅନୁମାନ କଲା, ତାଙ୍କରି ଘରେ ମୀନୁକୁ ଟିଉସନ୍ କରିବାକୁ ପଡ଼ିବ । କିନ୍ତୁ ଖିଆ ପିଆ ପରେ ବିଦାୟ ନେଇ ଆସିବାର ଅଳ୍ପ ସମୟ ପୂର୍ବରୁ ଅନ୍ୟ କଥା ଜାଣିଲା । ମନ ଭିତରଟା ଆନନ୍ଦ, କୃତଜ୍ଞତା, ଆଶା, କଳ୍ପନାରେ ଗୁଡ଼େଇ ତୁଡ଼େଇ ହୋଇ କେମିତି ହୋଇଗଲା, ତାହା ସେ ଏକା ଜାଣେ ।

ମିଶ୍ରବାବୁ ତା ପାଇଁ ଚାକିରୀ ବୁଝି ଦେଇଛନ୍ତି । ସେ ଗୋଟିଏ ସ୍କୁଲ ରେ ସହକାରୀ ଶିକ୍ଷକ ଭାବରେ ଯୋଗ ଦେବ । ପ୍ରଭୁବାବୁ ସେଇ ସ୍କୁଲର ପ୍ରେସିଡେ଼ଣ୍ଟ । ତାଙ୍କର ଇଚ୍ଛା, ନନ୍ଦ ସେଇଠି ଚାକିରୀ କରି ଘରୋଇ ଭାବରେ ବି.ଏ ପାଶ୍ କରିଗଲେ, ତାକୁ ସ୍କୁଲ ଖର୍ଚ୍ଚରେ ବି.ଇଡ଼ି ପଢ଼ିବାକୁ ପଠାଇ ଦେବେ ।

ତା ପାଇଁ କେତେ ଯୋଜନା କରି ଗଲେଣି ସେମାନେ ! ଫେରିବା ବାଟରେ ସେଇକଥା ନନ୍ଦର ମନ ଭିତରେ ମହକୁ ଥାଏ ।

ବସାରେ ପହଞ୍ଚିବା ବେଳକୁ ବେଶ୍ ସମୟ ହୋଇଗଲାଣି । ଜହ୍ନ ଉଠି ଆସିଲାଣି । ଜ୍ୟୋସ୍ନା ପଡ଼ିଥାଏ । ଶୁକ୍ଳ ପକ୍ଷ ରାତି ତ ! ମୂର୍ତ୍ତିବାବୁ ଝରକା ପାଖ ଖଟରେ ବସି ଖଣ୍ଡିଏ ବହି ଧରି ମଝିରେ ମଝିରେ ବାହାରକୁ ଅନାଉ ଥାଆନ୍ତି । ନନ୍ଦକୁ ଦେଖୁ ଦେଖୁ ଉଠି ଆସିଲେ, କବାଟ ଫିଟାଉ ଫିଟାଉ କହିଲେ- 'ତରଭାରୁ କିଏ ଜଣେ ଆସିଥିଲେ । ଆପଣଙ୍କୁ ଖୋଜୁଥିଲେ, କାଲି ସକାଳେ ଆସିବେ ।'

## ।। ୯ ।।

ତରଭା ?

ଗାଁରୁ ଖବର ଆସିଛି ବୋଧ ହୁଏ ।

ଘର ମନେ ପଡ଼ିଲା । ଚିଠି ତ ମିଳିଯିବଣି । ସେଥିରେ ଠିକଣା ବି ତ ଥିଲା । ଯଦି କିଛି ଖବର ଦେବାର ଥିଲା, ଚିଠି ଖଣ୍ଡକରେ ଦେଇ ପାରି ଥାଆନ୍ତେ । ଗାଁରୁ ତରଭା ଯାଏ ଆସି, କିଏ କାହା ହାତରେ କି ଖବର ଦେଇଥିବ ? କିଏ ବା ଆସି ଥାଇ ପାରେ ?

ନନ୍ଦ ଅନୁମାନ ଲଗେଇଲା ।

ମୂର୍ତ୍ତିବାବୁ ପଚାରିଲେ- 'କଣ ଭାବୁଛନ୍ତି ?' ନନ୍ଦ ବାଆଁରେଇ ଦେବାକୁ କହିଲା-

'ନାଇଁ ଏମିତି.... ।' ପୁଣି ଓଲଟି ପ୍ରଶ୍ନ କଲା- 'ସେଇଟି କି ବହି ପଢୁ ଥିଲେ କି ?'

'ଗୀତା ।' ସଂକ୍ଷେପରେ ଉତ୍ତର ଦେଲେ ମୂର୍ତ୍ତିବାବୁ ।

ନନ୍ଦ ବହିଟିକୁ ଧରି ଦେଖିଲା । ସେ ଯେ ଗୀତା ଦେଖି ନଥିଲା ବୋଲି ଦେଖିଲା ତା ନୁହେଁ । ବରଂ, ଏ ବହି ଖଣ୍ଡକ ତାକୁ ନିଆରା ଦେଖାଗଲା । ସଂସ୍କୃତ ଗୀତା ତେଲେଗୁ ଅକ୍ଷରରେ ଛାପା ହୋଇଛି । ପ୍ରତି ଶ୍ଳୋକ ତଳେ ତେଲୁଗୁରେ ଅର୍ଥ ଓ ବ୍ୟାଖ୍ୟା ଅଛି । ନନ୍ଦ ଏଇ ଅକ୍ଷର ଓ ଭାଷାଟି ଶିଖି ନାହିଁ । କେତୋଟି ପୃଷ୍ଠା ଓଲଟାଇ ଚିତ୍ର ଦେଖି ବହିଟି ମୁଣ୍ଡରେ ଛୁଆଇଁ ରଖି ଦେଲା । ତା ବାପା ତାକୁ କହିଥିଲେ- 'ଖାଇବ ପିଠା, ଗାଇବ ଗୀତା, ତେବେକେ ହୋଇବ ଜଗତ ଜିତା ।' ଏଇ ଗ୍ରନ୍ଥଟି ନିତି ପଢ଼ିବା ଉଚିତ୍ ବୋଲି କେତେ ଜଣଙ୍କଠାରୁ ଶୁଣିଛି । କିନ୍ତୁ ନିଜେ ତାହା କରି ପାରି ନାହିଁ । ତଥାପି ମନ୍ତବ୍ୟ ଦେଲା- 'ମନକୁ ପବିତ୍ର କରିଦେଲା ପରି ଗ୍ରନ୍ଥଟିଏ ।'

ମୂର୍ତ୍ତିବାବୁ କହିଲେ- 'ଆଜି ଗୋଟିଏ ଘଟଣାରୁ ଏଇଟି ପଢ଼ିବାକୁ ମନ ବଳିଲା ।' ନନ୍ଦ ତାଙ୍କ କଥା ପଦକ ଶୁଣି ଅନାଇ ରହିଲା ସେଇ ଘଟଣାଟି କଣ ଜାଣିବା ପାଇଁ, ମୂର୍ତ୍ତିବାବୁ ମଧ୍ୟ ତା ଚାହାଣିରୁ ଉଦ୍ଦେଶ୍ୟଟି ବୁଝି ନେଲେ ।

ପାଖ ଘରଟି ସିହ୍ନା ବାବୁଙ୍କର । ତାଙ୍କ ବାପା ଅଛନ୍ତି । ବୁଢ଼ା ଲୋକ । ବଡ଼ ଧାର୍ମିକ ସ୍ୱଭାବ । ଏଇଠୁ ଖଣ୍ଡେ ଦୂରରେ ରିଫିଉଜି କଲୋନି । ପୂର୍ବ ବଙ୍ଗରୁ ପ୍ରାଣ ଘେନି ପଳାଇ ଆସିଥିବା କେତୋଟି ବଙ୍ଗାଳୀ ପରିବାର ପୁନର୍ବସତି ନେଇଛନ୍ତି । ଏମାନେ ନିଜକୁ ନିଜେ ଭାବୁଛନ୍ତି 'ଉଦ୍‌ବାସ୍ତୁ' । ଏଇଠି ନିଜ ନିଜକୁ ରୋପିତ କରିବାର ଆଶାକୁ ଘେନି ଯୋଜନା କରୁଛନ୍ତି । ସରକାର ସାହାଯ୍ୟ କରୁଛି । ଭାରତ ବଢ଼ାଇ ଦେଇଛି ସୌହାର୍ଦ୍ଦ୍ୟର ବାହୁ ।

ସେଇଠୁ ହାଲ୍‌ଦାର ବାବୁଙ୍କ ବାବା ଏଇ ଆଡ଼କୁ ଆସନ୍ତି । ସିହ୍ନା ବାବୁଙ୍କ ବାପାଙ୍କ ସହିତ ତାଙ୍କର ମନ ମିଳେ । ଦୁଇ ବୁଢ଼ା ବସି ଗପ କରନ୍ତି । ମୂର୍ତ୍ତିବାବୁ ବଙ୍ଗଳା କହି ପାରନ୍ତନି ସିନା, ବେଶ୍ ବୁଝନ୍ତି । ଦୁଇ ବୁଢ଼ାଙ୍କ ଆଳାପର ଗୋଟିଏ ଅଂଶ ତାଙ୍କ କାନରେ ପଡ଼ିଲା । ସେଇଠୁ ଗୀତାର ପୃଷ୍ଠାଗୁଡ଼ିକ ଓଲଟାଇ ଯିବାକୁ ମନ ଧାଇଁଛି ।

ମୂର୍ତ୍ତି ବାବୁ କହିଲେ- 'ପରୀକ୍ଷିତ ଶୁକଙ୍କୁ ଗୁରୁମାନି ନେଲେ । ମୃତ୍ୟୁର କେତୋଟି ଦିନ ଆଗରୁ ଶୁକ ତାଙ୍କ ସାମ୍ନାରେ ପଦ୍ମାସନରେ ବସି ଯାଇଛନ୍ତି । ଅହୋରାତ୍ର ସାତ ଦିନ ଧରି

ଏକାସନରେ ବସି ବୁଝାଉଛନ୍ତି । କଣ ବୁଝାଇ ଛନ୍ତି ? ଯାହା ବୁଝାଛନ୍ତି ବା କହିଛନ୍ତି ତାର ମୂଳ ତତ୍ତ୍ୱ ହେଲା ମୃତ୍ୟୁ ପାଇଁ କେମିତି ପ୍ରସ୍ତୁତ ହୋଇଯିବ । ମରିବା ପାଇଁ, କେମିତି ମରିବ ବୋଲି ମନକୁ ବାଗେଇ ଦେବାର ଦର୍ଶନ ସତରେ ବଡ଼ ଅଦ୍‌ଭୂତ । ଶ୍ରୀମଦ୍ ଭାଗବତରୁ ଶ୍ରୀମଦ୍ ଭାଗବଦ୍ ଗୀତା ଯାଏ ବହୁକଥା ସେମାନଙ୍କର ଆଲୋଚନାର ପରିସର ଭୁକ୍ତ ହୋଇଥିଲା । ମୋ ପାଖରେ ତ ଭାଗବତ ନାହିଁ. ଏହି ଗୀତା ଖଣ୍ଡିକ ଧରି, ସେଇ ତତ୍ତ୍ୱକୁ ଖୋଜୁଥିଲି । ସତରେ ନନ୍ଦ ବାବୁ, ବଞ୍ଚିବା ପାଇଁ ମଣିଷ ଯୋଜନା କରେ କିନ୍ତୁ, ମରିବା ପାଇଁ ଯୋଜନା କରିବା ବଡ଼ ବିଚିତ୍ର ଘଟଣା !'

ନନ୍ଦ ଭାବିଲା, ସତରେ ଶ୍ରୀକୃଷ୍ଣ ଶିଖାଇଛନ୍ତି କେମିତି ବଞ୍ଚିବ । ଜନକ ବି ସେଇପରି ଶିକ୍ଷା ଦେଇଛନ୍ତି । ଏ ଦୁହେଁ କର୍ମ ଯୋଗୀ, ଶୁକ ସନ୍ୟାସୀ, ତପସ୍ୱୀ । ସେ କିନ୍ତୁ କର୍ମ ଯୋଗୀ ଜନକଙ୍କର ଶିଷ୍ୟ । କର୍ମ ଓ ସନ୍ୟାସ ଗୋଟିଏ ବୃତ୍ତ, ଗୋଟିଏ ବଳୟର ଦୁଇଟି ବିନ୍ଦୁ । ନନ୍ଦର ସଦ୍ ଭାବନା ଫିଟି ଫିଟି ଆସିଲା । ରାତି ଶେଷରେ ସବୁ ଫର୍ଚ୍ଚା ଦିଶିଲା ପରି ତାକୁ ତା ମନ ଭିତରଟା ସଫା ଦିଶିଲା । ସବୁ ପରିଚ୍ଛନ୍ନ, ପରିଷ୍କାର ଲାଗିଲା । ଭଗବଦ୍ ଗୀତା ଓ ଭଗବାନ୍ ଶ୍ରୀକୃଷ୍ଣଙ୍କ ଉଦ୍ଦେଶ୍ୟରେ ପ୍ରଣାମ କଲା । ମନ ଏବଂ କର୍ମ ଦୁଇଟିକୁ ଧରି ଜୀବନ ପଥରେ ଆଗେଇବାକୁ ହେବ ।

ରେଲୱେ କଲୋନୀ । ଛୋଟ ଛୋଟ ବସାଟିଏ ମାନ । ତାରି ଭିତରେ ରହିଛନ୍ତି ବଡ଼ ମନର ମଣିଷ କେତୋଟି । ନନ୍ଦର କର୍ମାନୁରାଗ ଓ ପରିଚ୍ଛନ୍ନ ମନ ଆଜି ତାକୁ ସେମାନଙ୍କ ନିକଟତର କରିଛି । ମିଶ୍ରବାବୁ ତା ପାଇଁ ପ୍ରବୃତ୍ତି ଅନୁରୂପ ବୃତ୍ତି ଖୋଜୁଛନ୍ତି । ମୂର୍ତ୍ତିବାବୁ କୁଣିଆ ପଣରେ ପାଛୋଟି ଆଣିଛନ୍ତି । ସେ ବଡ଼ ଆଦର ଓ ଆନନ୍ଦ ଭରା ଆଖିରେ ମୂର୍ତ୍ତିବାବୁଙ୍କ ଆଡ଼କୁ ଅନାଇ ରହିଲା ।

ମୂର୍ତ୍ତିବାବୁଙ୍କ ଆଖିରେ ଆଖିଏ ନିଦ । ପ୍ରସ୍ତାବ ଦେଲା ପରି ପଚାରିଲେ - 'ଶୋଇବା ?'

ନନ୍ଦ ସୁନା ପିଲାଟି ପରି ଶୋଇବାକୁ ଗଲା ।

ନିଦ ଆସୁ ନଥାଏ ଆଖିକୁ । ମନରେ ଉଦ୍‌ବେଗ । ତରଭାରୁ କିଏ କାହିଁକି ଆସିଛି ? ମନ ଉଚ୍ଛନ୍ନ ହେଉଥାଏ ସେଇ ଲୋକଟିକୁ ଭେଟିବା ପାଇଁ । ଦୂର ବିଦେଶରେ ଗାଁ ଭୂଇଁର ମଣିଷଟିଏ ତ, ସେ ଯିଏ ହେଉ । କେମିତି ରାତି ପାଇବ, ତାକୁ ଭେଟିବ ବୋଲି ମନ ବାଉଳି

ହେଉଥାଏ ।

ଶୋଇବା ବେଳେ ସମସ୍ତ କର୍ମ ଓ କର୍ମ ଫଳକୁ ଭଗବାନଙ୍କ ଉଦ୍ଦେଶ୍ୟରେ ସମର୍ପଣ କରିବାକୁ ହୁଏ । ତାହା ଦ୍ୱାରା ସୁଖ ନିଦ୍ରା ମିଳେ । ଶାନ୍ତି ମିଳେ । କର୍ମ କ୍ଷମତା ବଢ଼େ । କିନ୍ତୁ ଜଣେ କିଛି କର୍ମ କରିଥିଲେ ତ ଅର୍ପଣ ବା ସମର୍ପଣ କରିବ ।

ନନ୍ଦ ଶୋଇବାକୁ ଚେଷ୍ଟା କରୁ କରୁ,ରାତିର କୌଣସି ଗୋଟିଏ ପ୍ରହରରୁ ତାକୁ ନିଦ ଆସିଗଲା । ଉଠିଲା ବେଳକୁ ସକାଳ । ଖରା ପଡ଼ିଲାଣି ।

## ।। ୧୦ ।।

ଭୁବନେଶ୍ୱରରେ ସଞ୍ଜ ଓ ସକାଳ ଖୁବ୍ ଭଲ ଲାଗେ । ଝରକା ବାଟେ ନିମ୍ବ ଗଛ ଆଡ଼େ ଅନାଇଲା ନନ୍ଦ ।

ଖରା । ସୁନେଲି ଖରା । ସକାଳର ଏଇ ଖରାଟି ମୁଲାୟମ ଲାଗେ । ଡ଼ାଳରେ ହଲୁଛି ପତ୍ର । ଗାଁ ପୋଖରୀ ତୁଠ କାଚବେଳକୁ ପାଣି, ପାଣି ଚହଲି ଚହଲି ପଥର ପହାଚରେ ହାବୁକା ମାରୁଥିବ । ପାହାଚ୍ କରେ କରେ ଶିଉଳି । ପତଳା କଲି କଲି ଢ଼େଉ ତାକୁ ଛୁଇଁ ଯାଉଥିବ । ଆରପଟ ତୁଠରେ ମାଇପେ ଗାଧୋଉଥିବେ । କେହି କେହି ନିମ ଦାନ୍ତ କାଠି ଖଣ୍ଡିଏ ଖଣ୍ଡିଏ ଧରି ଦାନ୍ତ ଘଷୁଥିବେ । ବାପା ଗାମୁଛାଟିକୁ ଦୋଅଡ଼େଇ ପାଣି ଭିତରକୁ ପକାଇ ଦେଇଥିବେ । ପାହାଚରୁ ପାହାଚକୁ ତଳକୁ ତଳ ଓହ୍ଲାଇ ଓହ୍ଲାଇ ଭିତରକୁ ଭିତରକୁ କ୍ରମେ କ୍ରମେ ପଶୁଥିବେ । ଗାମୁଛା ଖଣ୍ଡିକ ଫେରନ୍ତା ଢ଼େଉରେ ଭାସି ଭାସି ଯାଉଥିବ । ସେ ହାତରେ ପାଣିକୁ ଠେଲି ଠେଲିକା ଯାଉଥିବେ ସେଇ ଗାମୁଛା ସାଙ୍ଗରେ । କୋଉ ପିଲା ଦିନର ଅଭ୍ୟାସ ବୋଧହୁଏ ରହି ଯାଇଥିଲା ତାଙ୍କର ।

ବାପା ସାବୁନ୍ ଲଗାନ୍ତି ନାହିଁ । ତେଲ ମାଲିସ୍ ହୁଅନ୍ତି, ଗାଧୋଇବାର କିଛି ଆଗରୁ । ଭୋଅରୁ ଉଠି ପଡ଼ନ୍ତି । ଗାଧୋଇବା ପୂର୍ବର ନିତ୍ୟ କର୍ମଯାକ ସାରି ଦିଅନ୍ତି । ତା ପରେ ତେଲ ଲଗାଇ ହୁଅନ୍ତି କିଛି ସମୟ ଯାଏ । କଅଁଳ ଖରାରେ ଟିକିଏ ବସନ୍ତି । ସେଇଠୁ ଧୀରେ ଧୀରେ ଗାମୁଛାଟିଏ ଧରି ପୋଖରୀ ତୁଠକୁ ବାହାରନ୍ତି ।

ନନ୍ଦ ପିଲାଦିନେ ବାପାଙ୍କ ସାଙ୍ଗରେ ଗାଧୋଇ ଯାଉଥିଲା । ସେ ତା ଦେହରେ

ତୈଳ ମର୍ଦ୍ଦନ କରୁଥିଲେ । ପୋଖରୀକୁ ଡ଼େଇଁ ପହଁରିବା ଶିଖାଉଥିଲେ । ଆପେ ନାନା ପ୍ରକାରର ପହଁରା ପହଁରୁଥିଲେ, ଅନେକ ସମୟ ଧରି ।

ଆଜି ବାପାଙ୍କର ସେ ମନ ଆଉ ନାହିଁ । ତେଲ ଟିକିଏ ଲଗାଇ ହେଉଛନ୍ତି ସିନା, ଅଧ ଘଣ୍ଟାଏ କାଳ ମର୍ଦ୍ଦନ ହେଉ ନାହାନ୍ତି । ବାହର ପାଣି ବସିବାକୁ ଦୂର ଗହିର ବିଲକୁ ଯାଉଥିଲେ । ଆଜି କାଲି ବାରିପଟେ ବରପାଲି ପାଇଖାନାକୁ ଯାଉଛନ୍ତି । ବେଳେ ବେଳେ ଘରେ କୂଅ ମୂଳେ ଗାଧୋଉଛନ୍ତି । ଅଥଚ ପୋଖରୀରେ ଘଣ୍ଟାଏ ଦି ଘଣ୍ଟା ଜଳ କ୍ରୀଡ଼ା କରିବା ଥିଲା ତାଙ୍କର ବିଳାସ ।

ଥରେ ବାପା, ମାମୁଁ ଓ ଗାଁର କିଏ ଜଣେ ଦାଣ୍ଡ ଚାନ୍ଦିନୀ -ଉପରେ ବସିଥିଲେ । ଗପୁଥିଲେ । ବାପାଙ୍କ ଜୁଆନ ବେଳ କଥା ପଡ଼ିଲା । ବଡ଼ ଉତ୍ସାହରେ ସେ ଦୁହେଁ ଗପୁଥାଆନ୍ତି । ବାପାଙ୍କୁ ବୋଧହୁଏ ଭଲ ଲାଗୁଥାଏ ଶୁଣିବାକୁ । ଶୁଣୁ ଶୁଣୁ ହସିଦେଲେ । ସେ ଏମିତି ହସ କ୍ୱଚିତ୍ ହସନ୍ତି । କହିଲେ - 'ଆଉ କଣ ସେ ବେଳ ଅଛି ନା ସେ ବଳ ଅଛି ? ଏଇନା ହେଲା ଆମର ଗଡ଼ାଣି ବେଳ । ନନ୍ଦଟା କିନାରା ଧରିଲା ବାଦେ ଆମର ଛୁଟି । ଖାଲି ଆଖି ବୁଜିବା ଯାବେ ରହିବା କଥା ।' ନନ୍ଦ ସେତେବେଳେ ସ୍କୁଲରେ ପଢୁଥିଲା ।

ନନ୍ଦ ପଛ କଥା ଭାବିବାକୁ ବେଶୀ ଡର ପାଇଲାନି । ଦାଣ୍ଡ ଆଡୁ କିଏ ଜଣେ ତେଲୁଗୁରେ କିଛି କହି କହି ଦାଣ୍ଡଘର ପାଖରେ ପହଞ୍ଚିଗଲେ । ମୂର୍ତ୍ତିବାବୁଙ୍କ ଉଦ୍ଦେଶ୍ୟରେ କହୁଥାନ୍ତି । ନନ୍ଦ ଉଠି ଆସିଲା ଦୁଆର ମୁହଁକୁ । ମୂର୍ତ୍ତିବାବୁ ଥିଲେ ବାଥରୁମ୍‌ରେ । କିଏ ତାଙ୍କର ସମ୍ପର୍କୀୟ ହେବେ ବୋଧହୁଏ । ସେ ଦୁଇ ଆଗନ୍ତୁକଙ୍କୁ ନମସ୍କାର କରି, ଛୋଟ ବାରଣ୍ଡାଟିରେ କାଠର ଫୋଲଡ଼ିଙ୍ଗ୍ ଚଉକୀ ଦି ଖଣ୍ଡି ପକାଇ,ସମ୍ମାନ ସହକାରେ ବସାଇଲା ।

ମୂର୍ତ୍ତିବାବୁ ନିତ୍ୟ କର୍ମ ସାରି ପୂଜାରେ ବସିବେ । ଏଇଟା ବି ତାଙ୍କର ନିତ୍ୟ କର୍ମର ଗୋଟିଏ ଅଙ୍ଗ । ଅଗଣା ପଟ ବାରଣ୍ଡାକୁ ଟିକିଏ ବଢ଼ାଇ ଦେଇ ଛୋଟ ପୂଜା ଘରଟିଏ କରିଛନ୍ତି । ଭେଙ୍କଟେଶ୍ୱରଙ୍କ ଠାରୁ ଜଗନ୍ନାଥଙ୍କ ଯାଏ ଦିଅଁମାନଙ୍କ ବନ୍ଧେଇ ଚିତ୍ର ସ୍ଥାପିତ ହୋଇ ନିତ୍ୟ ପୂଜା ପାଉଛନ୍ତି । ସେ ସଂସ୍କୃତ ଶ୍ଳୋକ ବୋଲି ପୂଜା କରନ୍ତି । ସବୁ ଦିଅଁଙ୍କର ସ୍ତୋତ୍ରଯାକ ସରିବାକୁ ସମୟ ଲାଗିବ । ତେଣୁ ଭଦ୍ର ଲୋକ ଦୁହିଁଙ୍କୁ ଆଉ ଘଣ୍ଟାଏ ଅପେକ୍ଷା କରିବାକୁ ହେବ । ଏଇ ସମୟତକ ସେମାନଙ୍କର ଚର୍ଚ୍ଚା କରିବାକୁ ହେବ । କେମିତି କଅଣ କରିବ ବୋଲି ନନ୍ଦ ଚିନ୍ତାରେ ପଡ଼ିଲା ।

ମୂର୍ତ୍ତିବାବୁ ଯୋଗକୁ ଗାଧୋଇବା ପରେ ପରେ ପୂଜା ଘରେ ନ ପଶି, ଦାଣ୍ଡ ଘରକୁ ଆସିଲେ ଭାରି, ଦୁଇ ଆଗନ୍ତୁକଙ୍କ ଭିତରକୁ ଜଣେ ତାଙ୍କର ବହୁ ଦିନର ବନ୍ଧୁ । ତାଙ୍କୁ ଦେଖୁ ଦେଖୁ ଭାରି ଖୁସିରେ, 'ଆରେ ମିଶ୍ର ବାବୁ' ବୋଲି କହି କୁଣ୍ଢାଇ ପକାଇଲେ । ତା ପରେ କହିଲେ, 'ଗାଧୁଆ କୁଣ୍ଡରେ ମଗ ବୁଡ଼ାଇବା ବେଳକୁ ଅପଣଙ୍କର ସ୍ୱର ଶୁଭିଲା । ଟିକିଏ ବସନ୍ତୁ ଚଟାପଟ୍ ପୂଜାଟା ସାରିଦେଇ ଆସୁଛି ।'

ନନ୍ଦ ଏମାନଙ୍କ ସମ୍ପର୍କ ବୁଝିନେଲା । ଷ୍ଟୋଭ୍‌ରେ ଚା ବସାଇ ଦେଇ ଆସିଲା । ଡ଼ବାରେ ମିକ୍ସଚର, ବିସ୍କୁଟ୍ ଅଛି । ମୂର୍ତ୍ତିବାବୁ ସେତକ ରଖି ଥାଆନ୍ତି ଆଇଲା ଗଲାଙ୍କ ପାଇଁ । ଅବଶ୍ୟ ତାଙ୍କ ଘରକୁ ସେମିତି କଦବା କେହି ଆସନ୍ତି । ନନ୍ଦ ଭଦ୍ରଲୋକ ଦୁହିଁଙ୍କ ଚର୍ଚ୍ଚାରେ ଲାଗିଗଲା ।

ମୂର୍ତ୍ତିବାବୁ ସତକୁ ସତ ସଂକ୍ଷେପରେ ସବୁକାମ ସାରି ଦେଲେ । ଭଦ୍ରଲୋକ ଦୁହିଁଙ୍କୁ ଘର ଭିତରକୁ ବଡ଼ ଆଦରରେ ଡ଼ାକି ନେଇ ଆରାମ କରିବାକୁ କହିଲେ । ନନ୍ଦକୁ ଅଗଣାକୁ ଡ଼ାକି ନେଇ ଆସ୍ତେ ଆସ୍ତେ କହିଲେ- 'ମୁଁ ବଜାରଆଡୁ ଅସୁଛି । ଆପଣ ଏମାନଙ୍କ ସହିତ କଥାବାର୍ତ୍ତା ହେଉ ଥାଆନ୍ତୁ । ଏମାନେ ଓଡ଼ିଆ ବୁଝନ୍ତି । କିଛି ଅସୁବିଧା ନାହିଁ ।' ମିଶ୍ରବାବୁ ମୂର୍ତ୍ତିବାବୁଙ୍କୁ ତେଲୁଗୁରେ କଣ କହିଲେ ନନ୍ଦ ବୁଝି ପାରିଲା ନାହିଁ । କିନ୍ତୁ ମୂର୍ତ୍ତିବାବୁ ଓଡ଼ିଆରେ ଉତ୍ତର ଦେଲେ - 'ପୁରୁଆ ନାହିଁ । ଆପଣମାନେ ନିତ୍ୟକର୍ମ ସାରି ବିଶ୍ରାମ ନିଅନ୍ତୁ । ମୁଁ ଏଇ ସାଙ୍ଗେ ସାଙ୍ଗେ ଏଇଠୁ ଆସୁଛି ।' ଏତିକି କହି ସେ ବାହରି ଗଲେ ବଜାରକୁ ।

ନନ୍ଦ ଟିକିଏ ଅଡୁଆରେ ପଡ଼ିଲା । ଉପାୟ କଣ ? ସେମାନେ ବାଥ୍‌ରୁମ୍‌ରୁ ଆସିବା ଭିତରେ, ସେ ଦାନ୍ତ ଘସାଟା କେବଳ ସାରି ଦେଇ ପାରିଲା । ଗାଧୁଆ ଘର ଓ ପାଇଖାନା ପ୍ରାୟ ଦେଢ଼ ଘଣ୍ଟା ପାଇଁ ବନ୍ଦ । ତା ପରେ କଥା ବାର୍ତ୍ତା କରିବାକୁ ପଡ଼ିବ । ରନ୍ଧା ବଢ଼ାରେ ସାହାଯ୍ୟ କରିବାକୁ ହେବ ମୂର୍ତ୍ତିବାବୁଙ୍କୁ । ସମୟ ହେଲାଣି ଏଗାରଟା ।

ତରଭାରୁ କିଏ ଆସିଥିଲେ । ସେ ପୁଣି କୋଉଠି ଅଛନ୍ତି । କିଛି ତ ଜଣା ଗଲା ନାହିଁ । ନନ୍ଦ ମନରେ ଉଦ୍‌ବେଗ ।

ଅପେକ୍ଷା କରିବାଟା ସତରେ ବଡ଼ ଯନ୍ତ୍ରଣା ଦାୟକ । ମନଟା ପୁରା ବନ୍ଦୀ ଅବସ୍ଥାରେ ରହିଯାଏ ।

ମିଶ୍ରବାବୁ କହିଲେ 'ବାଟରେ ସୁବଳ ବାବୁ ଗୋଟିଏ ବଢ଼ିଆ କଥା କହୁଥିଲେ । କଣ ତ... ମନେ ତ ରହିଲା ନି... କହି ଦେବଟି ଟିକିଏ ।' ମିଶ୍ରବାବୁଙ୍କ ସାଥିରେ ଥିବା ଭଦ୍ର ଲୋକଙ୍କ ନାଁ ତା ହେଲେ 'ସୁବଳ ବାବୁ ।' ନନ୍ଦ ତାଙ୍କ ଆଡ଼କୁ ଅନାଇଲା । ଏ ଭିତରେ ମୂର୍ତ୍ତିବାବୁ ବି ଆସି ପହଞ୍ଚିଗଲେ ଓ ସେମାନଙ୍କ ସହିତ କଥାବାର୍ତ୍ତା ପାଇଁ ପ୍ରସ୍ତୁତ ହୋଇଗଲେ ।

ଭଦ୍ରଲୋକ ଜଣକ ଟିକିଏ ଅପ୍ରସ୍ତୁତ ଅନୁଭବ କଲେ କି କଣ । ମଧୁର ହସ ଭିତରେ ମୁହଁର ଭାଣ୍ଡିଆ ଭାଣ୍ଡିଆ ଭାବ ଚହଟୁଥାଏ । କହିଲେ 'ନାଇଁମ, ମୁଁ ଏଇ ପ୍ଲାନିଙ୍ଗ କଥା କହୁଥିଲି । କଣ କେମିତି କେତେବେଳେ କରିବାକୁ ହେବ, ତାର ଗୋଟାଏ ଚିଠା କରି ସେଇ ଅନୁସାରେ ଗୋଟି ଗୋଟି କରି କାମଟିମାନ ସାରି ନଦେଉଣୁ ଆଉ ନୂଆ ନୂଆ ପାଞ୍ଚଟା ଧନ୍ଦାରେ ଗୁଞ୍ଜି ହୋଇଯିବାଟା ଠିକ୍ ନୁହଁ ବୋଲି ତ କହୁଥିଲି, ଆଉ କଣ ?

ମିଶ୍ରବାବୁ ଉଁ..... ହୁଁ ଉଁ..ହୁଁ ହୋଇ ବିଚାରି ଥରକେ କହିଲେ, 'କାହାର ଗୋଟାଏ କହିବା କଥା ଉପଲକ୍ଷ୍ୟ ଦେଇ କହୁ ନଥିଲ ? ମନେ ପଡୁନି ?'

ସୁବଳ ବାବୁ ବୁଝିଗଲେ ମିଶ୍ରବାବୁ କଣ ଚାହୁଛନ୍ତି । ତାଙ୍କର ମଧ ମନେ ପଡ଼ିଗଲା କହିଥିବା କଥାଟା । ସେ କହିଲେ- When a man does not know what harbour he is making for, no wind is the right wind.

ମିଶ୍ରବାବୁ କହିଲେ - କୋଉ କଥାରୁ ସେ ଏଇଟି କହିଲେ ଜାଣିଛ ? ମୁଁ ଆସିବା ବେଳେ ଏମିତି କହୁ କହୁ କହି ଦେଲି ମୂର୍ତ୍ତିବାବୁଙ୍କ ସାଙ୍ଗରେ ଓଳିଏ କଟାଇ କାଲିକ ଭୁବନେଶ୍ୱର, ପୁରୀ କୋଣାର୍କ ଆଡ଼େ ଘେରାଏ ବୁଲା ବୁଲି କରିବା ।

ମୂର୍ତ୍ତିବାବୁ କହିଲେ - 'ବେଶ୍ ଭଲ ପ୍ରସ୍ତାବ ତ । ଆଜି ଟିକିଏ ବିଶ୍ରାମ ନେଇ ଲିଙ୍ଗରାଜ ମନ୍ଦିର ଓ ଖଣ୍ଡଗିରି ଆଡୁ ବୁଲି ଆସନ୍ତୁ । କାଲି ପୁରୀ ଓ କୋଣାର୍କ ଯିବେ ।'

ସୁବଳବାବୁ କହିଲେ - 'ନାଇଁ ଆଜ୍ଞା, ଆମେ ଗୋଟାଏ କାମରେ ଆସିଛୁ । ସେ କାମଟା ସାରି ସେ ଆଡୁ ଲେଉଟିବା ପରେ ଦିନେ କିଆଁ ଦି ଦିନ ବୁଲା ବୁଲି କରିବା । ଆପଣ ବି ଆମ ସାଙ୍ଗରେ ବୁଲି ଯିବେ ।'

ମିଶ୍ରବାବୁ ନନ୍ଦ ଆଡ଼କୁ ଅନାଇ କହିଲେ- 'ଆମର ଗୋଟିଏ କଥା ନାଇଁ, ପାଇଟି

ସାରି ବସିବ..., ଏଙ୍କର ଏଇ ସ୍ୱଭାବ ।' ତା ପରେ ମୂର୍ତ୍ତିବାବୁଙ୍କୁ ବାହାରକୁ ଡ଼ାକିନେଲେ ଏକାନ୍ତରେ କିଛି କହିବେ ବୋଲି ।

ମୂର୍ତ୍ତିବାବୁ ମିଶ୍ରବାବୁଙ୍କ କଥା ଶୁଣୁ ଶୁଣୁ କହିଲେ- 'ଆମର ଏଠି ଜଣେ ମିଶ୍ରବାବୁ ଅଛନ୍ତି । ଭଲ ମଣିଷ । ତାଙ୍କୁ କହିବା । ତାଙ୍କ ନଜରରେ କୋଉଠି ଭଲ ପାତ୍ର ଥାଇପାରେ । କିନ୍ତୁ ଆପଣମାନେ ଆଗ ସୋନପୁରରୁ ଆସନ୍ତୁ । ସେଠି ନହେଲେ, ଏଠି ବୁଝିବା ।'

ସୁବଳବାବୁ ଏମାନଙ୍କ କଥାବାର୍ତ୍ତା ଶୁଣି ଫଟୋଟିଏ କାଢ଼ି ବଢ଼ାଇ ଦେଲେ । କହିଲେ - 'ଆଜ୍ଞା ଆମେ ଝିଅ ପକ୍ଷ । ପାରୁ ପର୍ଯ୍ୟନ୍ତ ଲାଗି ପଡ଼ି ଯଥା ସମ୍ଭବ ଯୋଗ୍ୟ ପାତ୍ର ଖୋଜିବା । ଯେଉଁଠିକି ଗଲେ ଝିଅଟି ସୁଖରେ ରହିବ ଓ ଆମେ ଭଲ ବନ୍ଧୁ ପାଇବା, ସେମିତି ଜାଗା ପାଇବା ଯାଏ ଖୋଜୁଥିବା । ଆମେ ତ ସୋନପୁର ପ୍ରସ୍ତାବ ଶୁଣି, କଥା ପକେଇବାକୁ ଆସିଛୁ । କିନ୍ତୁ ଆପଣଙ୍କ ବାଟେ ଯିବାର ଆଉ ଗୋଟିଏ ଉଦ୍ଦେଶ୍ୟ ହେଲା, ଯଦି ଆଉ କୋଉଠି ଭଲ ପ୍ରସ୍ତାବ ମିଳେ ଦେଖି ଯିବା । ଏମିତି ଆଜ୍ଞା ଝିଅ ଥିଲେ, ପୁଅ ଥିଲେ ପାଞ୍ଚ ଜାଗାରେ କଥା ପଡ଼େ । ଆପଣଙ୍କୁ ଲାଗିଲା । ଟିକିଏ ଦୟା ପଡ଼ି ସାହାଯ୍ୟ କରିବେ ।'

ମୂର୍ତ୍ତିବାବୁ ଫଟୋଟିକୁ ରଖୁ ରଖୁ ପଚାରିଲେ- 'ଏଇ ଯେଉଁ ପ୍ରସ୍ତାବଟି ପଡ଼ିଛି, ସେ ପିଲାର ଯୋଗ୍ୟତା କଣ ?'

ସୁବଳ ବାବୁ କହିଲେ- 'ପିଲାଟି ଭୁବନେଶ୍ୱରରେ କଣ କରୁଛି । ଆଇ.ଏ ପଢ଼ିଛି । ଘରେ କିଛି ଜମି ବାଡ଼ି ଅଛି । ଭଲ ଘରୁଆ ଘର । ବର ପାତ୍ରଟି ସୋନପୁରର ନୁହେଁ ଆଜ୍ଞା, ବଲାଙ୍ଗୀର ପାଖା ପାଖି କୋଉ ଗୋଟାଏ ଗାଁରେ ସେମାନଙ୍କର ଘର । ସୋନପୁର ସହିତ ସେମାନଙ୍କର କି ସମ୍ପର୍କ, ସେଠୁ କେତେ ବାଟ ସେ ଗାଁ, କିଛି ଜାଣି ନାହିଁ । ସୋନପୁରର ଜଣେ ବନ୍ଧୁ ଏଇ ପ୍ରସ୍ତାବ ଦେଇଛନ୍ତି ।' ପୁଣି ଟିକିଏ କହିବା ବନ୍ଦ କରି, ଥରେ ମିଶ୍ରବାବୁଙ୍କ ଆଡ଼କୁ, ଥରେ ମୂର୍ତ୍ତିବାବୁଙ୍କ ଆଡ଼କୁ ଅନାଇ କହିଲେ- 'ମୋ ଝିଅ ବୋଲି କହୁନି ଆଜ୍ଞା, ମିଶ୍ର ବାବୁ ଦେଖିଛନ୍ତି, ଜାଣିଛନ୍ତି । ସେତ ଆମ ପରିବାରର ମଣିଷ କହିଲେ ଚଳେ । ସିଏ କହିବେ ।'

ମିଶ୍ରବାବୁ ଉପରେ ପଡ଼ିଲା ପରି କହିଲେ- 'ଝିଅଟିକୁ ରୂପ ଗୁଣ କାହିଁରେ ଖୁଣିବାକୁ ନାହିଁ । ଗୋଟିଏ ଚାଉଳରେ ଗଢ଼ା । ବଡ଼ ସଣ୍ଢଣା, ଭାରି ଗୁଣର । ହେଲେ, ସୁବଳବାବୁ ସପ୍ତମ ଶ୍ରେଣୀରୁ ଛୁଆଟାର ପାଠ ବନ୍ଦ କରିଦେଲେ । ତାଙ୍କ ସ୍ତ୍ରୀଙ୍କ ମତ ହେଲା 'ଝିଅ ଗୃହଯୋଗ୍ୟା ହେଲାଣି । ଆଉ ସ୍କୁଲକୁ ଛାଡ଼ିବା ନାଁ ଧରନି ।' ଝିଅଟିକୁ ବଡ଼ ଆକଟ ଯତ୍ନରେ ବଢ଼ାଇଛନ୍ତି ।'

କଥାଟା ଶୁଣି ନନ୍ଦକୁ ଭାରି ହସ ମାଡ଼ିଲା । ମନେ ମନେ ହସିଲା । କହିଲା- 'କଣ ଆଜ୍ଞା ଝିଅଟା ବୋଲି ପଢ଼ିବ ନାହିଁ ? ଇଏ ତ ତାର ମୌଳିକ ଅଧିକାର ଉପରେ ଆକ୍ରମଣ !'

ସୁବଳ ବାବୁ ବୋଧ ହୁଏ ଟିକିଏ ନରମ ସ୍ୱଭାବର ମଣିଷ । ଟିକିଏ ଶରମି ଗଲେ ।

ମୂର୍ତ୍ତିବାବୁଙ୍କ ଟେବୁଲ ଉପରେ ଝିଅର ଫଟୋ, ନନ୍ଦର ଆଖି ପଡ଼ିଲା । ସତରେ ସୁନ୍ଦର ଝିଅଟିଏ ତ !

## ।। ୧୧ ।।

ତରଭାରୁ ଯିଏ ଆସିଥିଲେ, ଦିନ ଦୁଇଟା ଯାଏ ଅସିଲେ ନାହିଁ । ନନ୍ଦ ଭାବିଲା ଏମ୍. ଏଲ୍.ଏ. କଲୋନି ଆଡ଼େ ଗଲେ ହୁଅନ୍ତା । ଆସେମ୍ବ୍ଲି ଚାଲିଥିଲା । ଏବେ ସରିଛି । କିଏ ଥିବେ କି ନଥିବେ । ତରଭାର ଆଗନ୍ତୁକ ବ୍ୟକ୍ତି ଜଣକ ପୁଣି କାହା ଘରେ ଥିବ ଜଣା ନାହିଁ । କୋଉଠି ବା ଖୋଜିବ ତାକୁ । ସେ ଏମିତି ଅନିଶ୍ଚିତ ଅବସ୍ଥାରେ ଛାଇ ନେଉଟିବା ପରେ ବାହାରିଲା ।

ବାଟରେ ଦୁଇଜଣ କଥା ଭାଷା ହେଉ ଥାଆନ୍ତି । ଜଣେ ବଡ଼ ବିରକ୍ତ ହୋଇ କହୁଛନ୍ତି- 'ଖାଲି ଦିନ ସାରା ଇଆଡ଼େ ଗଲି, ସିଆଡ଼େ ଗଲି, ଇଆ କଲି ତା କଲି ବୋଲି କହିଗଲେ ତ ହେବ ନାହିଁ, ତୁମକୁ ଯେଉଁ ଦାୟିତ୍ୱଟି ଦିଆ ହୋଇଥିଲା, ତାକୁ କେତେ ଦୂର ତୁଲାଇଲ, ସେଇଟି ହେଲା ଅସଲ କଥା, ଯଦି ନ ତୁଲାଇଛ, ତୁମେ କିଛି କରି ନାହିଁ । ତେଣୁ ଅଯୋଗ୍ୟ । ତମେ ଯଦି ଜାଣି ପାରିବ ନାହିଁ- କଣ ଟା କରୁଛ ଏବଂ ଯାହା କରୁଛ ସେଇଟା ତମ କାମ କି ନୁହେଁ, ସେଇଟା କଲେ ତମର କି ଲାଭ ହେବ, କି ଗୌରବ ବା ଯଶ ମିଳିବ, ତୁମକୁ ଦିଆ ଯାଇଥିବା କାମ ଭିତର ସେଇଟା ଆସୁଛି କି ନାହିଁ, ତେବେ ତୁମେ କୋଉ ମଣିଷରେ ଲେଖା !'

ଆଉ ଜଣେ କହୁ ଥାଆନ୍ତି - 'ସେତକ ବୁଦ୍ଧିଥିଲେ କଣ ଠିକଣାଟା ଦେଇ ଆସିନଥାନ୍ତା । ଶୁଣୁଛ ଗୋଟାଏ ଜାଗାକୁ ଗଲା ଯେ କୋଉଠୁ ଆସିଛି, କୋଉଠି ଅଛି, କାହିଁକି ଆସିଥିଲା କିଛି କହି ଆସିଲା ନି ! ହେଲେ ଖବରଟା ଦେଇ ଆସି ଥାଆନ୍ତା । ତା ବି କଲାନି । କହିଲେ ମୂହଁଟା-ଘୁଙ୍ଗା କରିଦବ ।'

ନନ୍ଦ ଅନୁମାନ କରିନେଲା ଭଦ୍ରଲୋକ ଦୁହେଁ କଟକ ଭୁବନେଶ୍ୱର ଆଡ଼ର ନୁହନ୍ତି । ତା ପଟର ହେବେ । ସେ ସେମାନଙ୍କ ପଛେ ପଛେ ଗଲା । କିନ୍ତୁ ସେ ଦୁହେଁ ଗୋଟିଏ ହୋଟେଲରେ ପଶିଲେ । ନନ୍ଦ ସେଠାକୁ ଯିବାକୁ ମନ କଲା ନାହିଁ । ବାହାରେ ଅପେକ୍ଷା କଲା ।

ଅନେକ ସମୟ ପରେ ସେମାନେ ହୋଟେଲରୁ ବାହାରି ଗୋଟିଏ ରିକ୍ସାରେ ବସିଲେ ।

ନନ୍ଦ ଫେରି ଆସିଲା ବସାକୁ ।

ଏଣେ, ମୂର୍ତ୍ତି ବାବୁଙ୍କ ପିଣ୍ଡା ପାଖରେ ଜଣେ ଯୁବକ ଆସି ଠିଆ ହେଲେ । କାହାକୁ କିଛି ନ କହି ଚିଠିଟି ଧରି ଏଣେ ତେଣେ ଚାହିଁଲେ । ଖଣ୍ଡିଏ କାଗଜରେ କଣ ଲେଖିଦେଇ କବାଟରେ ଠକ୍ ଠକ୍ କଲେ । ମିଶ୍ର ବାବୁ ଓ ସୁବଳ ବାବୁ ସେତେବେଳେ ଭିତରେ ଶୋଇଥିଲେ । ସୁବଳ ବାବୁ କେହି ଡ଼ାକୁଥିବାର ଶୁଣି ଉଠି ଆସିଲେ । କବାଟ ଖୋଲିଲେ ।

'ନନ୍ଦ ଦାସ ନାହାନ୍ତି ? '

ଆଗନ୍ତୁକ ଯୁବକଙ୍କ ପ୍ରଶ୍ନ ସୁବଳ ବାବୁଙ୍କୁ ସାମାନ୍ୟ ଅଡୁଆରେ ପକାଇଲା । ସେ କହିଲେ- 'ଏଇଟା ମୂର୍ତ୍ତିବାବୁଙ୍କ କ୍ୱାଟର । ତାଙ୍କ ସାଙ୍ଗରେ ଜଣେ ବାବୁ ଅଛନ୍ତି । ମୁଁ ତାଙ୍କ ନାଁ ଜାଣିନି । ଦୁଇଟା ଯାଏ ଏଠି ଥିଲେ । କୁଆଡ଼େ ଯାଇଛନ୍ତି ।'

ଯୁବକ ତାଙ୍କୁ କାଗଜ ବଢ଼ାଇ ଦେଇ କହିଲେ- 'ଏଇଟା ତାଙ୍କୁ ଦେଇ ଦେବେ । ମୁଁ କାଲି ଆସିଥିଲି । ଆଜି ସକାଳେ ଆସିବାର ଥିଲା । ଆସି ପାରିଲି ନାହିଁ । ତାଙ୍କୁ କହି ଦେବେ, ସେ ଯେମିତି ହେଲେ ଆଜି ନ ହେଲେ ବି କାଲି ଗାଁକୁ ଯିବେ । ତାଙ୍କ ବାପା ଡ଼କାଇଛନ୍ତି । ହଁ, କହିଦେବେ, ଛାନିଆ ହେବେ ନି । ଘରେ ସମସ୍ତେ ଭଲ ଅଛନ୍ତି । ସେ ନମସ୍କାର କରି ଚାଲିଗଲେ । ସୁବଳବାବୁ ଯୁବକ ଜଣକର ବ୍ୟସ୍ତତା ଓ ଚଞ୍ଚଳତାକୁ ଲକ୍ଷ୍ୟ କରୁଥାଆନ୍ତି ।

ଚିଠି ଖଣ୍ଡିକ ମୂର୍ତ୍ତିବାବୁଙ୍କ ଟେବୁଲ ଉପରେ ପେପରୱେଟ୍ ମଡ଼ାଇ ରଖିଦେଲେ ସୁବଳ ବାବୁ ।

## ॥ ୧୨ ॥

ଗଡ଼ ଭଇଁରାରୁ ଶୁକଭାଇନା ତରଭା ଆସିଥିଲେ । ଖବର ଆସିଥିଲା ତାଙ୍କରି ହାତରେ । ଲେଖା ଯୋଖାରେ ରୁଦ୍ର ତାଙ୍କର ଭଣଜା । ସେ ଭୁବନେଶ୍ୱର ଆସୁଥିଲେ । ରାଜଧାନୀଟା କଟକରୁ ଭୁବନେଶ୍ୱର ଉଠି ଆସିବା ପରେ ସେଇଠିକି ଏବେ ସାରା ଓଡ଼ିଶାର ବିଭିନ୍ନ ଅଞ୍ଚଳର ଲୋକମାନଙ୍କର ନାନା କାମରେ ଯାଆ ଆସ ଲାଗି ରହିଛି । ରାଜଧାନୀ ବସିଥିବା ଅଞ୍ଚଳଟିକୁ କୁହା ଯାଉଛି- ନିଉ କ୍ୟାପିଟାଲ୍ ବା ନୂଆ ରାଜଧାନୀ । ସଂକ୍ଷିପ୍ତ ନାମ- କ୍ୟାପିଟାଲ ।

ରାମେଶ୍ୱରଙ୍କର ତରଭାରେ ବ୍ୟବସାୟ ଥିଲା । ସେ ଭୁବନେଶ୍ୱର ବୁଲି ଆସିଥିଲେ । ସେଠାରେ ଗୋଟାଏ ମଧମ ଧରଣର ଜେନେରାଲ ଷ୍ଟୋର କଲେ ଭଲ ଚାଲିବ ବୋଲି ଅନୁମାନ କଲେ । ବ୍ୟବସାୟୀ ଲୋକ ପାଇଁ ଦୂର ବା କୋଉଟା ? ତରଭାରେ ଥିବା ତାଙ୍କର ଜେନେରାଲ ଷ୍ଟୋରଟିକୁ କିଛି ଦିନ ପାଇଁ ବନ୍ଦରଖି ଭୁବନେଶ୍ୱରରେ ବେପାର କରିବାର ଯୋଗାଡ଼ରେ ଅଛନ୍ତି । ଶୁକ ଭାଇନାକୁ ଆଣି, ଆଗ ଛୋଟ କାଟର ହୋଟେଲଟିଏ ଆରମ୍ଭ କରୁଛନ୍ତି । ରୁଦ୍ରକୁ ସାଙ୍ଗରେ ଆଣିଥିଲେ । ସେ ତାଙ୍କ ସାନ ପୁଅ । ତାକୁ ଏଇଠି ରଖାଇ ବେପାର ବଣିଜରେ ତାଲିମ୍ ଦେବାର ବିଚାର ଅଛି । ସେ ଶୁକଙ୍କ ସାଙ୍ଗରେ ମିଶି ଆଗ ହୋଟେଲ ଅରମ୍ଭ କରିବ । ପୁଞ୍ଜି ଖଟାଇବେ ରାମେଶ୍ୱର । ଏଇ କାମରେ ରୁଦ୍ର ଭୁବନେଶ୍ୱର ଯିବା ଆସିବା କରୁଛି ।

ନନ୍ଦର ବାପା, ଶୁକ ଭାଇନାକୁ ବାଟରେ ଭେଟିଲେ । ଶୁଣିଲେ ସେ ଭୁବନେଶ୍ୱର ଯାଉଛନ୍ତି । ତାଙ୍କରି ହାତରେ ପୁଅ ପାଖକୁ ଖବର ପଠାଇଥିଲେ, ଠିକଣା ଦେଇଥିଲେ । ନିଜର ଜଣେ ଲୋକ ପାଇଲେ ବଳ ପାଇଲା ପରି ଲାଗେ । ତେଣୁ ବଡ଼ ଆଗ୍ରହରେ ସେ ନନ୍ଦ ଠିକଣା ଅଣିଥିଲେ, ତାକୁ ଭେଟିବା ଲକ୍ଷ୍ୟ ରଖି । କିନ୍ତୁ ବଲାଙ୍ଗୀର ଆସିବା ପରେ ଯୋଜନା ବଦଳି ଗଲା । ଦିନେ ସୋନପୁରରେ ରହି, ସେଠୁ ଜଣକୁ ସାଙ୍ଗରେ ଧରି ଭୁବନେଶ୍ୱର ଆସିବା ସ୍ଥିର ହେଲା । ରୁଦ୍ର ଏକା ଆସିଲା ବଲାଙ୍ଗୀରରୁ ଭୁବନେଶ୍ୱର । ଶୁକ ତାଆରି ହାତରେ ନନ୍ଦର ଠିକଣା ଲେଖାଇ କାଗଜ ଖଣ୍ଡିଏ ଦେଇଥିଲେ । କହିଥିଲେ- କହିଦେବୁ ଘରେ ସମସ୍ତେ ଭଲ ଅଛନ୍ତି । ବାପା ଗୋଟାଏ ଜରୁରୀ କାମରେ ଡ଼କାଇଛନ୍ତି । ଦିନେ

ଦୁଇଦିନ ଛୁଟି ନେଇ ଶୀଘ୍ର ଗାଁକୁ ଆସିବ । କାନେ କାନେ କହିଥିଲେ, ଖବରଟା ଜରୁରୀ । ଆଗ ପହଞ୍ଚାଇ ଦେବାକୁ ହେବ ।

'ଟୋକା ଟାକରା ଲୋକ । କୋଉ ବୁଦ୍ଧି ହେଲାଣି, ହ...... ହବଣି ଯେ ପାକଳ ହୋଇ ନଥିବ ।' ଥରେ ରୁଦ୍ର କଥାକୁ ମନରେ ରଖି ଶୁକ ଅନୁମାନ କରିଥିଲେ ।

ରାମେଶ୍ୱର କହିଥିଲେ - 'ବୁଝିଲ ଭାଇନା, ଇଏ ଗୋଟାଏ ପରଖ । ଏଙ୍କ ହାତରେ ବେପାର ଭାର କେତେ ଦୂରକୁ ଦେଇ ହେବ ବାରିବା ।'

ରୁଦ୍ର ଆସିବାର ଦୁଇ ଦିନ ଗତେ, ଶୁକ ଆସି ପହଞ୍ଚିଲେ । ଜରୁରୀ ଖବରଟା ନନ୍ଦ ପାଖରେ ପହଞ୍ଚିଛି କି ନାହିଁ ଜାଣି ହୋଇ ନଥାଏ । ପଚାରି ବୁଝିଲେ ଆସିବା ବାସି ରୁଦ୍ର ନନ୍ଦ ବସାକୁ ଯାଇଥିଲା ଯେ, ତାକୁ ପାଇଲା ନାହିଁ । ତା ପର ଦିନ ସେ ନିଜେ ପୁରୀ ଚାଲି ଯାଇଛି । ନନ୍ଦ ଏଯାବତ୍ ଖବର ପାଇ ନଥିବା କଥାଟା ତାଙ୍କ ମନକୁ ଫିଡ଼ିକେଇ ଦେଲା । ରାମେଶ୍ୱର ବି ଅସନ୍ତୁଷ୍ଟ ହେଲେ । କିନ୍ତୁ ରୁଦ୍ରର ବା ଉପାୟ କଣ ? ଖାଲି ନନ୍ଦ କଣ ଏକା ବୁଲି ଯାଉଥିବ, ଆଉ ରୁଦ୍ର କୁଆଡ଼େ ବୁଲି ଯାଇ ପାରିବ ନାହିଁ ?

ଗୋଟାଏ କଥା, ରୁଦ୍ର ନନ୍ଦ ଘର ଠାବ କରି, 'ତରଭାରୁ ଆସିଛି' ବୋଲି ଯିଏ ଥିଲେ ତାଙ୍କୁ କହି ଆସିଥିଲା । କିନ୍ତୁ ଖବରଟା କଣ ତାହା କହିବାକୁ ଭୁଲି ଯାଇଥିଲା । ନିଜେ କିଏ ଓ କୋଉଠି ରହୁଛି, ସେ କଥା ମଧ କହି ଆସି ନଥିଲା । କହି ଥିଲା କାଲିକି ଆସିବ ବୋଲି । କିନ୍ତୁ ସେଠାରୁ ଫେରି ପୁରୀ ଚାଲିଗଲା । ତେଣୁ କହିଥିବା ଅନୁସାରେ ପହଞ୍ଚି ନଥିଲା । ଏଇଟା ତା ପକ୍ଷରେ ଭୁଲ ହୋଇ ପାରେ, ତଥାପି ତ ସେ ସଞ୍ଜ ବେଳେ ଯାଇ ଚିଠିଟାଏ ଦେଇ ଆସିଛି । ଏଥିପାଇଁ ତାକୁ କାହିଁକି କାଇଲି କରାଯିବ ଯେ ! ସେ ବୁଝି ପାରୁ ନ ଥାଏ ଏଇ ବୁଢ଼ା ଗୁଡ଼ାଙ୍କର ମତି ଗତି ।

ନନ୍ଦ ଫେରି ଆସିଲା ବସାକୁ । ଉତ୍କଣ୍ଠା ତଥାପି ମନ ଭିତରେ ଅସ୍ୱସ୍ତି ସୃଷ୍ଟି କରି ଚାଲିଥାଏ । କମିଜଟା କାନ୍ଥରେ ଟାଙ୍ଗି ଦେଉ ଦେଉ ହଠାତ୍ ଦୃଷ୍ଟି ପଡ଼ିଲା ଟେବୁଲ ଉପରେ । ତା ନାଁ ଲେଖା ହୋଇଥିବା କାଗଜଟିଏ ଦେଖି କାବା ହୋଇଗଲା ।

କାଗଜଟି ଉଠାଇ ଆଣୁ ଆଣୁ ଫଟୋଟିଏ ତଳେ ପଡ଼ିଗଲା । ଉଠାଇ ଦେଖିଲା । ସୁବଳ ବାବୁ ଦେଇଥିବା ଫଟୋ । ସତରେ ସୁନ୍ଦର ଚେହେରାର ଝିଅଟିଏ ତ ! କେହି ଆଖ ପାଖରେ ନାହାନ୍ତି । ମନ ପୂରାଇ ଦେଖିଲା । ମନେ ପଡ଼ିଗଲା ମେହେରଙ୍କ କାବ୍ୟରେ ପଢ଼ିଥିବା

ପଦରୁ ଫାଳେ- 'ଯାହା ପୂଜା ପାଇଁ ଥାଉ ଏ କୁସୁମ ଧନ୍ୟ ମୋ ନେତ୍ର ଭ୍ରମରା' ଯଥା ସ୍ଥାନରେ ଯଥାବତ୍ ରଖିଦେଇ, କାଗଜଟିକୁ ବାରମ୍ବାର ଦେଖିଲା ।

ଭୁବନେଶ୍ୱର ଆସିବା ମାସେ ପୂରିନି । ବାପା ଭାବିଛନ୍ତି ନନ୍ଦ ଚାକିରୀ କରିଛି । ଛୁଟି ନେଇ ଆସି ପାରିବ ଗାଁକୁ । ତାଙ୍କୁ ଅସଲ କଥା ଜଣାଇ ଲାଭ ବା କଣ ? ମନ ଦୁଃଖ କରିବେ । ପୁଣି ଚିଡ଼ିବେ । କହିବେ କଲେଜକୁ ଯାଇ ବାଲୁଙ୍ଗା ହୋଇଗଲା । ଖଡ଼ିକି ହେଲାନି କି ପେଡ଼ିକି ହେଲାନି ।

ନନ୍ଦ ଯେ ଚାକିରୀ ନ ଖୋଜିଛି ତା ନୁହେଁ । ଗାଁ ଆଖ ପାଖ ସ୍କୁଲରେ ଶିକ୍ଷକ କାମଟିଏ ଖୋଜି ଖୋଜି ହତାଶ ହୋଇଛି । କେଉଁଠି କିଛି ଚାକିରୀର ସଂଧାନ ପାଇଲେ ଧାଇଁଛି ଓ ହତାଶା ଘେନି ବାହୁଡ଼ି ଆସିଛି । ଶେଷରେ କିଛି ଦିନ ପାଇଁ ଗୋଟାଏ ଯାତ୍ରା ଦଳରେ ମିଶିଥିଲା, ଘରୁ ଦୂରରେ ରହିବ ବୋଲି । କିନ୍ତୁ ସେଇଟା ତା ପଖାଳ କଂସା ନୁହେଁ ବୋଲି ତାର ତୀବ୍ର ଅନୁଭବ ହେବାରୁ ଛାଡ଼ି ଦେଲା । ଶେଷରେ ଆସିଛି ଭୁବନେଶ୍ୱର । ଏବେ ଏଠାରେ ବିଫଳତା ଓ ସଫଳତାର ବିବରଣି ଜଣାଇ ଚିଠି ଦେବାର ଆବଶ୍ୟକତା ନାହିଁ । ସେ ତା ବାପାଙ୍କ ପରିସ୍ଥିତି ହାଡ଼େ ହାଡ଼େ ଅନୁଭବ କରିଛି । ସେ ତାଙ୍କର ଆଶା ଓ ଭରସା । ତେଣୁ ସେ ତା ଭିତରେ ବ୍ୟର୍ଥତାକୁ ସହି ପାରନ୍ତି ନାହିଁ । ଭାବିଲେ, ତୀବ୍ର ବେଦନା ଅନୁଭବ କରନ୍ତି । ସେଇ ଦୁଃଖ ପ୍ରକାଶ ପାଏ ବିରକ୍ତିରେ । ପୁଣି ତାର ପ୍ରଭାବ ପଡ଼େ ତାଙ୍କ ସ୍ୱାସ୍ଥ୍ୟ ଉପରେ । ବୋଉର ଆଖିରୁ ନିଗିଡ଼ି ଆସେ ଲୁହ ।

ନନ୍ଦ ବହୁତ ଭାବିଲା । ମିଶ୍ରବାବୁ କିଛି ଟଙ୍କା ଦେଇଥିଲେ । ନନ୍ଦ ଅମଙ୍ଗ ଥିଲା । ସେ ତାକୁ କହିଲେ - 'ଆପଣ ଧାର୍ ନିଅନ୍ତୁ । ଟିଉସନ୍ ପାଇଲେ ଶୁଝିଦେବେ ।' ସେ ସେଇ ପଇସାକୁ ଜଗିରଖି ଚଳୁଛି । ଅଳ୍ପ ଖର୍ଚ୍ଚ ହୋଇଛି । ଥରେ କିଛି ଡ଼ାଲି, ସଉଦା ଓ ଖଣ୍ଡେ ସାବୁନ୍ କିଣି ଆଣିଥିଲା । ସେଥି ପାଇଁ ମୂର୍ତ୍ତିବାବୁ ଭାରି ମନ ଊଣା କରିଥିଲେ । କିନ୍ତୁ ତା ନିଜକୁ ଆସ୍ୱସ୍ତ ଲାଗିଲା । ଯାହା ବା ଅବଶିଷ୍ଟ ଅଛି, ତାହା ଯିବା ଆସିବାକୁ ନିଅଣ୍ଟ ହେବ । ପୁଣି କଣ ବା ଏମିତି ଜରୁରୀ କାମ ଥାଇପାରେ ?

ବାପା ଅପେକ୍ଷା କରିଥିବେ ଜରୁରୀ କଥା କହିବାକୁ । ବୋଉ ଚାହିଁଥିବ ପୁଅକୁ ଦେଖିବାକୁ ଉତ୍‌କଣ୍ଠା ଘେନି । ପୁଅକୁ ନ ପାଇ, ତା ଚିଠି ପାଇଲେ କଣ ସେମାନଙ୍କର ମନ

ବୋଧ ହେବ ? ଉପାୟ କଣ ?

ସୁବଳ ବାବୁ ତାଙ୍କ ସାଙ୍ଗ ମିଶ୍ରବାବୁଙ୍କୁ ଧରି ସୋନପୁର ଗଲେ । ସେଇ ଏକା ବସରେ ନନ୍ଦ ବି ଯାଇ ପାରି ଥାଆନ୍ତା । ମନ ତ ଥିଲା । ତଥାପି ଯାଇ ପାରିଲାନି । କାରଣ କଅଣ, କାହାକୁ ବା କହିବ ?

ନନ୍ଦ ଚିଠି ଦେଇଦେଲା ଘରକୁ ।

## ।। ୧୩ ।।

ମନ କହେ ଆନ୍ ,
କର୍ମ କହେ ଆନ୍ ।

ନନ୍ଦ ଶିକ୍ଷକତା କରିବା ଦୁଇମାସ ହୋଇ ଗଲାଣି । ମଫସଲ ଗାଁ । କିନ୍ତୁ ଜାଗାଟି ଆରେଇ ଯାଇଛି । ଭୁବନେଶ୍ୱରଠାରୁ ବେଶ୍ ଦୂର । ବସ୍‌ରେ କିଛି ବାଟ ଯିବାକୁ ହୁଏ । ପୁଣି କିଛି ବାଟ ଚାଲିବାକୁ ହୁଏ ପାଦରେ । ହଁ, ସାଇକେଲ ବା ଶଗଡ଼ରେ ଯାଇହେବ । ଆଉ ଗୋଟିଏ ବାଟ ବି ଅଛି । ସେବାଟେ କିଛି ଦୂର ଗଲେ ବିରୂପା ନଈ । ନଈ ବନ୍ଧ ଓସାରିଆ । ସେବାଟେ ଟ୍ରକ ବସ୍ ଯାତାୟତ କରେ । ସେ ପାଖରେ ହାଟ ବସେ । ପ୍ରତି ସୋମବାର ଦିନ ହାଟ ପାଳି । ସ୍କୁଲ ବଗିଚାର ଫଳ, ପନି ପରିବା ସେଠାକୁ ବିକ୍ରି ପାଇଁ ନିଆଯାଏ । ଅବଶ୍ୟ ନନ୍ଦର ତା ସହିତ କିଛି ସମ୍ପର୍କ ନାହିଁ । କାରଣ ସେ ବିଷୟ ବୁଝନ୍ତି ଆଉ ଜଣେ ।

ସ୍କୁଲଟି ବଡ଼ ମନୋରମ ଜାଗାରେ ହୋଇଛି । ତାର ଦୁଇ ପଟେ ବିଲ । ପଛ ପଟକୁ ପୋଖରୀ, ସାମନାରେ ସର୍ବ ସାଧାରଣ ଯାତାୟତ ପଥ । ସେଇ ବାଟେ ଦଶ ପଚିଶ ଖଣ୍ଡି ଗାଁର ଲୋକେ ନିତି ଯାତାୟତ କରନ୍ତି । ଗାଁଟି ସ୍କୁଲକୁ ପ୍ରାୟ ଲାଗିଛି ବୋଲି କହିଲେ ଚଳେ ।

ସ୍କୁଲର ବାଁ ପଟର ଦୁଇ ଏକର ବିଲକୁ ବଗିଚା କରି ଦିଆ ଯାଇଛି । ପଛ ପଟ ପୋଖରୀଟି ଦେଢ଼ ଏକର ଉପରେ ହେବ । ମାଛ ଚାଷ ହେଉଛି । ଏଇଟି ସ୍କୁଲର । ନାଗୁଆ ବେପାରୀ ଅଛନ୍ତି । ଏଇଠୁ ଆସି ମାଛ ନେଇ ଯାଆନ୍ତି । କିଛି ବିଲ ଓ ବିଲ ପାଖର ପଡ଼ିଆକୁ ପୋତି ସ୍କୁଲ କରାଯାଇଛି । ଏଇ ସ୍କୁଲର ପୁଣି ଅଛି ଗୋଟିଏ ଟ୍ରେକର ଓ ପମ୍ପସେଟ୍ । ଏହା ଭଡ଼ା ଲାଗେ । ଏପରି ନାନା ଉପାୟରେ ସ୍କୁଲ ପାଣ୍ଠିକୁ ପଇସା ଆସେ ।

ନନ୍ଦ ଏମିତି ସ୍କୁଲ ଦେଖି ନଥିଲା । ଗାଁ ଯାକ ଲୋକଙ୍କର ସ୍କୁଲ ଉପରେ ଆଖି । ପିଲାଏ କେମିତି ଭଲ ପଢ଼ିବେ । ସ୍କୁଲର ନାଁ ହେବ । ଶିକ୍ଷକମାନେ ଖୁସିରେ ରହିବେ । ମନ ଦେଇ ପାଠ ପଢ଼ାଇବେ । ପିଲାମାନଙ୍କୁ ଗଢ଼ିବେ । କେବଳ ଗଳ୍ପ, ଉପନ୍ୟାସ ପାଇଁ ଏମିତି ସ୍କୁଲ ଓ ଗାଁ କଥା କଳ୍ପନା କରାଯାଇ ପାରେ ସିନା, କିନ୍ତୁ ବାସ୍ତବରେ ଅଛି ବୋଲି ଭାବି ହୁଏ ନାହିଁ । ନନ୍ଦ ଦିନା କେତେ ବିହ୍ୱଳ ହୋଇ ଭାବୁଥିଲା । ଏବେ ସେ ଏହି ଅନୁଷ୍ଠାନର ହୋଇ ଯାଇଛି ଗୋଟିଏ ଅଭିନ୍ନ ଅଙ୍ଗ । ସୁବୁରିଠାରୁ ସ୍ନେହ ଆଦର ପାଉଛି । ପିଲାଏ ତାକୁ ଆପଣାର ମଣି ନେଇଛନ୍ତି ।

ଏବେ ତ ବାହାରକୁ ଯିବାର ସୁବିଧା ସେମିତି ନାହିଁ । ତା ଛଡ଼ା ନନ୍ଦର ମନ ମଧ ଡ଼ାକୁନି କୁଆଡ଼େ ଯିବାକୁ । କେବଳ ସାତ ଆଠ ଦିନ ପାଇଁ ଗାଁକୁ ଯାଇଥିଲା । ବାପା ବୋଉଙ୍କୁ ଦେଖି ଘର କଥା ଟିକିଏ ବୁଝା ସୁଝା କରି ଚାଲି ଆସିଲା । ସ୍କୁଲ ସଭାପତି ପ୍ରଭୁପାଦ ବାବୁ ତାକୁ ଛଶହଟଙ୍କା ଦେଇ ଛୁଟିରେ ପଠାଇ ଦେଇଥିଲେ ଘରକୁ ।

ବାପା ବୋଉ ଭାରି ଖୁସି ହୋଇଥିଲେ । ଅସୁବିଧା କଥାଟି ନନ୍ଦ କହି ନଥିଲା । କାହିଁକି ବା କହି ଥାଆନ୍ତା ? ସେମାନେ ସତେ ଏବେ କୋଉ ସେ ଗାଁକୁ ଯିବେ । ତଥାପି ନନ୍ଦର ଆଶା ଓ ଇଚ୍ଛା ଥିଲା ବାପା, ବୋଉ ଓ ଗୋସେଇଁ ମାଙ୍କୁ କିଛି କିଛି ଦିନ ପାଖରେ ଆଣି ରଖିବ । ସେଇ ଆଶାରେ ଗାଁ ଭିତରେ ଘରଟିଏ ଭଡ଼ା ନେଇଥିଲା । କିନ୍ତୁ ସେମାନେ ଗାଁ ଭୂଇଁ ଘର ଦ୍ୱାର ଛାଡ଼ି ପୁଅ ପାଖରେ ରହିବାକୁ ଅମଙ୍ଗ ହେଲେ । ସ୍କୁଲ ଚାକିରୀ ତ, ଛୁଟିରେ ପୁଅ ଆସିବ । ବେଶ୍ ଦିନା କେତେ ରହିବ । ସେଇ ଆଶାରେ ସେମାନେ ଖୁସି । ତେବେ, ବାପାଙ୍କ ମନରେ ଟିକିଏ ଅସ୍ୱସ୍ତି ଅଛି । ସେକଥା ବି କହିଲେ ।

ନନ୍ଦ ସବୁ ଶୁଣିଲା । ବୁଝିଲା । କହିଲା- 'ଏବେ ବ୍ୟସ୍ତ କାହିଁକି ? ମୁଁ ବି.ଏ. ପାଶ୍ କଲାପରେ ଯାହା ହେବ ।' ତଥାପି ବାପା କହିଲେ- "ଭଲ ପ୍ରସ୍ତାବଟିଏ । ଟାଣୁଆ ବନ୍ଧୁ । ଝିଅଟି ବି ରୂପ ଗୁଣରେ ଭଲ ବୋଲି ଶୁଣୁଛୁ । ସେମାନଙ୍କର ଦୁଇ ତିନିଟା ବ୍ୟବସାୟ ଅଛି । ଆମ ଘର ଦ୍ୱାର ଦେଖିଲା ପରେ ବି ଆଗ୍ରହୀ ଥିଲେ । ତୁ ଆସି ପାରିଲୁନି । ତଥାପି ମନ ଊଣା କଲେ ନାହିଁ । ବରଂ କହିଲେ- 'ହଉ, ଚାକିରି ବାକିରି କଥା, ନୂଆ ମୁକରିର ହୋଇଛନ୍ତି ତ, ଛୁଟି ପାଇ ନଥିବେ ।' ପୁଣି କହିଲେ- 'ଠାକୁରେ କଲେ ଏଇଠି ଯଦି ହୁଏ, ମୋ ଝୁଆଇଁ ଚାକିରୀ କରିବା ଲୋଡ଼ା ହେବ ନାହିଁ । ଆମେ ତ ଲୋକ ରଖୁଛୁ । ଆମ ପିଲାଏ

କାହିଁକି କୋଉଠି ରହିବେ । ବର୍ଷକୁ ଟଙ୍କା ସତୁରୀ ଅଶି ହଜାର କି ଲକ୍ଷେ ଖଣ୍ଡେ ହେଲେ ଖୁସିରେ ଚଳିବେ ।"

ବାପା ପୁଣି କହିଲେ - 'ମୁଁ ଆମ ଆଡୁ ମନା କରି ନାହିଁ । ତୋ ଠାରୁ ତ କିଛି ଶୁଣି ନଥିଲି । ତେଣୁ କହିଛି, ଖବର ଦେବି । ତା ଛଡ଼ା କହିଛି ପୁଅ ଚାକିରୀ ସିନା କରିଛି, ବି.ଏ. ପରୀକ୍ଷା ଦେବ । ତଥାପି ସେମାନେ ଆଶା ରଖିଥିବେ । କିଛି ଗୋଟାଏ ହଁ କି ନାହିଁ କହିଦେବାକୁ ପଡ଼ିବ । ତାଙ୍କର ଝିଅ ପକ୍ଷ ନା, କେତେ ଦିନ ତକେଇବେ ?'

ନନ୍ଦ ନୀରବ ରହିଲା ।

ପ୍ରଭୁପାଦ ବାବୁଙ୍କ ଇଚ୍ଛା 'ନନ୍ଦ ବି.ଏ ପରେ ବି.ଇଡ଼ି କରିବ । ସୁବିଧା ହେଲେ ଏମ.ଏ. କରିବ । ସ୍କୁଲର ଆଚାର୍ଯ୍ୟ ହୋଇ ରହିବ ।' କିନ୍ତୁ ସେ ତାଙ୍କ ସହିତ ମନ ଖୋଲି କିଛି ସମୟ କଥାବାର୍ତ୍ତା ହୋଇ ପାରି ନାହିଁ ।

ସେଦିନ ମିଶ୍ରବାବୁଙ୍କ ଘରେ ତାଙ୍କ ସହିତ ନନ୍ଦର ଅଳ୍ପ ସମୟ ଆଳାପ ହୋଇଥିଲା । ସେ ଜାଣି ପାରି ନଥିଲା ଯେ ପ୍ରଭୁବାବୁ ଏତେ ମହତ ଲୋକ ହୋଇଥିବେ । ଏଇ ଅଞ୍ଚଳରେ ତାଙ୍କର ସତୁରି ଅଶି ଏକର ଅଉଲ ନମ୍ବର ଜମି ଥିଲା । ବଡ଼ ବଡ଼ ପୋଖରୀ ଦୁଇ ତିନୋଟି ଥିଲା । ଖମାର ଅଛି । ସେ ତାଙ୍କ ଜମିରୁ ଦଶ ଏକର ଓ ଗୋଟିଏ ପୋଖରୀ ସ୍କୁଲକୁ ଦେଇ ଦେଇଛନ୍ତି । ଗୋଟିଏ ପୋଖରୀ ବିକ୍ରି କରି ସେଇ ଟଙ୍କାରେ ଟ୍ରେକର ଓ ଦୁଇଟି ପମ୍ପ ସେଟ କିଣା ଯାଇଛି ସ୍କୁଲ ପାଇଁ । ତାର ଭଡ଼ା ସ୍କୁଲ ପାଣ୍ଠିକୁ ଆସେ ।

ପ୍ରଭୁପାଦ ବାବୁଙ୍କର ଗୋଟିଏ ମନ୍ଦିର ଅଛି । ବହୁ ପୁରୁଣା ସଂସ୍ଥା । ସେଇ ମନ୍ଦିରର ମଧ୍ୟ ସ୍ୱତନ୍ତ୍ର ପୋଖରୀ ଓ ଜମି ଅଛି । ପୂଜକ ଓ ସେବକ ହୋଇ କେତେ ଘର ଅଛନ୍ତି । ସେମାନଙ୍କୁ ଆଗରୁ ଜମି ଖଞ୍ଜା ଦିଆ ଯାଇଛି । ସେମାନେ ପୁରୁଷାନୁକ୍ରମେ ଭୋଗ ଦଖଲ କରନ୍ତି । ସେଥିପାଇଁ ମନ୍ଦିର ସେବାପୂଜା ଦାୟିତ୍ୱ ତୁଲାଇ ଆସୁଛନ୍ତି ପୁତ୍ର ପୌତ୍ରାଦିକ୍ରମେ । ତାହା ପ୍ରଭୁପାଦଙ୍କ ବଂଶର ମନ୍ଦିର । କୁଳର ଇଷ୍ଟଦେବତାଙ୍କ ଠାରେ ତାଙ୍କର ଅଚଳା ଭକ୍ତି । ତଥାପି ସେଥିଲେ ଭିନ୍ନ ରୁଚିର ମଣିଷ । ତାଙ୍କର ଇଛା, ମନ୍ଦିର ଭିତରେ ଗୋଟିଏ ସଂସ୍କୃତ ଟୋଲ ଖୋଲିବେ । ସେଠି ମନ୍ଦିର ପାଖରେ ପୋଖରୀକୁ ଲଗାଇ ଗୋଟିଏ ହଷ୍ଟେଲ

କରିଦେବେ । ସେଠି ବିଦ୍ୟାର୍ଥୀ ଓ ଆଚର୍ଯ୍ୟମାନେ ରହିବେ । କିନ୍ତୁ ସେ ନିଜେ ରହନ୍ତି ସହରରେ । ଏଠାକୁ କେବେ କେମିତି ଆସନ୍ତି । ତାଙ୍କର ଜଣେ ବିଶ୍ୱସ୍ତ ଲୋକ ସବୁ ବୁଝା ଶୁଝା କରେ । ସେ ଟିକିନିଖି ଖବର ରଖନ୍ତି । ହିସାବ ବୁଝନ୍ତି । ତାଙ୍କର ଯୋଜନା, ଟୋଲଟିଏ ବସାଇ ସାରିବା ପରେ ଏଥିପାଇଁ ଗୋଟିଏ ଟ୍ରଷ୍ଟ ଗଢ଼ିବେ । ତାରି ଦାୟିତ୍ୱରେ ସ୍କୁଲ ଓ ଟୋଲ ଚଳିବ । ନନ୍ଦ ପରି କେତେଜଣ ନିର୍ଲୋଭ ନିଷ୍ଠାପର ଲୋକ ତାଙ୍କର ଦରକାର ।

ନନ୍ଦ ପ୍ରଭୁପାଦ ବାବୁଙ୍କୁ ଭକ୍ତି କରେ । ତଥାପି କାହିଁକି କେଜାଣି ଏ ପର୍ଯ୍ୟନ୍ତ ତାଙ୍କୁ ଆପଣାର ବୋଲି ଅନ୍ତର ଭିତରୁ ଭାବି ପାରି ନାହିଁ ।

## ॥ ୧୪ ॥

ନନ୍ଦ ବି.ଏ. ପାଶ୍ କଲା ।

ଏଣିକି ସେ ମୁଣ୍ଡ ଟେକି ଚାଲିବ । ଆତ୍ମ ପ୍ରତ୍ୟୟ ଆସିଗଲା । ମନେ ପଡ଼ିଲା ପିଲାଦିନର ସେଇ ଅଭିନୟ ସହିତ ଆବୃତ୍ତି କରୁଥିବା ଗୀତ - 'ଆଇ.ଏ. ଗଲେ ବି.ଏ. ।' ଓ.ଏ.ଏସ୍ ଦେବାକୁ ଥରଟିଏ ମାତ୍ର ସୁଯୋଗ ଅଛି । ବୟସର ସୀମା ଟପିଗଲେ ବି.ଇଡ଼ି., ଏମ୍.ଏ ଇତ୍ୟାଦି ତ ଦେଇ ହେବ, କିନ୍ତୁ ଓ. ଏ.ଏସ୍ ପାଇଁ ବୟସର କଟକଣା ଅଛି । ସେଇଟା ହାତ ଛଡ଼ା କରିବା ଉଚିତ ହେବ ନାହିଁ । ଫର୍ମ ପୂରଣ କରିବା ଆବଶ୍ୟକ । ବହି, ପତ୍ର ପତ୍ରିକା, ପୂର୍ବ ବର୍ଷମାନଙ୍କର ପ୍ରଶ୍ନ ପତ୍ର ଇତ୍ୟାଦି ସଂଗ୍ରହ କରିଦେଲା । କିନ୍ତୁ ପ୍ରଭୁପଦ ବାବୁ କଣ ଭାବିବେ ? ତାଙ୍କର ମନ ନନ୍ଦ ଟ୍ରେଣ୍ଡ ଗ୍ରାଜୁଏଟ୍ ଶିକ୍ଷକ ଭାବରେ ତାଙ୍କରି ସ୍କଲରେ ରହୁ । ତେଣୁ ତାର ସିଭିଲ ସର୍ଭିସ ପରୀକ୍ଷା ପାଇଁ ଅନୁକୂଳ ମତ ମିଳିବା ସମ୍ପର୍କରେ ନନ୍ଦର ଆଶଙ୍କା ଥିଲା । ଯା ବୋଲି ତ ସେ ନିଜର ଗୋଟାଏ ଉଜ୍ଜ୍ୱଳ ଭବିଷ୍ୟତର ସମ୍ଭାବନା ସହିତ ଅପୋଷ କରିଦେବ ନାହିଁ । ଚେଷ୍ଟା କଲେ କ୍ଷତି କଣ ? ଏମିତି ନାନା ଚିନ୍ତାରେ ନନ୍ଦର ମୁଣ୍ଡ ଆନ୍ଦୋଳିତ ହେଉଥାଏ ।

ସ୍କୁଲର ସଭାପତି ପ୍ରଭୁପାଦ ବାବୁଙ୍କ ଆଗରେ ନନ୍ଦ ନିଜର ମନ କଥାଟି ସେଦିନ କହି ଦେଲା । ଆଶଙ୍କା ଥିଲା, ସେ ମନା କରିଦେବେ । କିନ୍ତୁ ସେ ଉତ୍ସାହିତ କଲେ । କହିଲେ- 'ଭଲ । ଆମେ ଦକ୍ଷ, ସଚ୍ଚୋଟ ଓ ନିଷ୍ଠାପର ଅଫିସର ଚାହୁଁଛୁ । ଓ.ଏ.ଏସ୍. ଦିଅନ୍ତୁ । ଯଦି ପାରୁଛନ୍ତି ଆ.ଇ.ଏ.ଏସ୍ ପ୍ରଭୃତି ଉଚ୍ଚତର ପ୍ରଶାସନିକ ପରୀକ୍ଷା ମଧ୍ୟ ଦିଅନ୍ତୁ । ମୁଁ ଆପଣଙ୍କର

ସଫଳତା କାମନା କରୁଛି । ଆପଣ ଯୁଆଡ଼େ ଗଲେ ବି ତ ସ୍କୁଲ କଥା ଭାବିବେ । ଏଇଟି ଆପଣଙ୍କ ଅନୁଷ୍ଠାନ । ଏହାର ଉନ୍ନତି ପାଇଁ ଚିନ୍ତାକରିବେ । ମୁଁ ବାଧା କାହିଁକି ଦେବି ? ବରଂ ଆପଣ ସ୍କୁଲରେ ଥାଇ ସିଭିଲ ପରୀକ୍ଷା ପାଇଁ ପ୍ରସ୍ତୁତ ହୁଅନ୍ତୁ । ଆବଶ୍ୟକ ପତ୍ରିକା ଓ ବହିପତ୍ର ମଗାଇବାର ବ୍ୟବସ୍ଥା କରିବା । ଦରକାର ହେଲେ ଛୁଟି ନେବେ । ମୋର ଦୃଢ଼ ବିଶ୍ୱାସ, ଆପଣ ନିଶ୍ଚୟ ସଫଳ ହେବେ ।'

ନନ୍ଦ ଛୁଟି ନେବା ଲୋଡ଼ା ହେଲା ନାହିଁ । ସେ ରାତିରେ ତା ପରୀକ୍ଷା ପାଇଁ ପ୍ରସ୍ତୁତ ହୁଏ । ସ୍କୁଲର ସହକର୍ମୀମାନଙ୍କଠାରୁ ଛାତ୍ରଛାତ୍ରୀ ଯାଏ ସମସ୍ତେ ତାର ସଫଳତା କାମନା କରୁଥିଲେ । ସେ ବି ପିଲାଙ୍କୁ ପାଠ ପଢ଼ାଇବାରେ ଅବହେଳାକରିନାହିଁ । ଦୁଇ ବର୍ଷର ବ୍ୟବଧାନ ଭିତରେ ନନ୍ଦର ଆକୃତି ଓ ଅଭ୍ୟାସରେ ଆସିଛି ଅନେକ ପରିବର୍ତ୍ତନ ।

ନନ୍ଦ ଓଡ଼ିଶା ପ୍ରଶାସନିକ ସେବା ପରୀକ୍ଷାରେ ସଫଳ ହେଲା । ସ୍କୁଲରେ ହେଲା ତା ପାଇଁ ସମ୍ବର୍ଦ୍ଧନା ସଭା । ସେ ଘରକୁ ଚିଠି ଲେଖିଲା । ମନ ଧାଇଁଥିଲା ଭୁବନେଶ୍ୱର ବଂଧୁମାନଙ୍କ ପାଖକୁ । କିନ୍ତୁ ଯାଇ ହେଲା କେଉଁଠି !

ସେ ଦିନ ସମ୍ବର୍ଦ୍ଧନା ସଭା ସରିଗଲା । ଶୁକ୍ଳପକ୍ଷ ରାତି । ଆକାଶରେ ଜହ୍ନ ହସୁଥାଏ । ସ୍କୁଲ, ତାର ବଗିଚା ଓ ପୋଖରୀ ସହିତ ସତେ ଅବା ମନ ପୂରାଇ ଚାହିଁଥାଏ ଆକାଶକୁ ।

ନନ୍ଦଗଲା ସେଇ କୋଠରି ଭିତରକୁ, ଯେଉଁଠି ସେ ବସି ବସି ପୋଖରୀକୁ ଅନାଉଥାଏ । ବେଳେ ବେଳେ ସେଇ ଘରେ ବସି ସେ କେତେ ରାତି କଟାଇଛି ପରୀକ୍ଷା ପ୍ରସ୍ତୁତି ପାଇଁ । ଏଇଟି ସ୍କୁଲ ଲାଇବ୍ରେରୀକୁ ଲାଗିଥିବା ଶିକ୍ଷକମାନଙ୍କ ପଢା କୋଠରୀ । ଏଇଠି ଦିନେ ଦିନେ ଦୁଇଟି ବେଞ୍ଚକୁ ଯୋଡ଼ିଦେଇ ସେ ଶୋଇପଡ଼େ । ଗାଁ ଭିତରେ ନେଇଥିବା ଭଡ଼ାଘରକୁ ଆଉ ଯାଏ ନାହିଁ । ପଢୁ ପଢୁ ରାତି ପାହିଯାଏ । କ୍ଳାନ୍ତ ମନକୁ ହାଲୁକା କରିବାକୁ ଯାଇ ବସେ ପୋଖରୀ ପାଖ ବଉଳ ଗଛମୂଳେ ।

ସ୍କୁଲ ହତାର ବାଡ଼ କରେ କରେ ନଡ଼ିଆ ଓ ଗୁଆଗଛ । ଜହ୍ନ ରାତିରେ ନଡ଼ିଆ ବାହୁଙ୍ଗାର ଛାଇ ଦେଖାଯାଏ ମାଛ କଣ୍ଟାପରି । ସୁନ୍ଦର ଦିଶେ । କିନ୍ତୁ ପୋଖରୀ କୂଳର ବଉଳ ଗଛ ମୂଳେ ବସି ପାଣିକୁ ଚାହିଁଲେ ଶାନ୍ତି ଲାଗେ । ପୋଖରୀର ବଡ଼ ଆକର୍ଷଣ ସେପଟର କଦମ୍ବ, କୃଷ୍ଣଚୂଡ଼ା ଓ ରାଧାଚୂଡ଼ା ଗଛ ତିନୋଟି । ଏପଟେ ବଉଳ ଗଛଟିକୁ ଛାଡ଼ି ଦେଲେ

ଆଉ ଗଛ ନାହିଁ । ଅଛି ଅନେକ ରଙ୍ଗ ଓ ବାସର ଗୁଡ଼ିଏ ବୁଦୁ ବୁଦୁକିଆ ଫୁଲ ଗଛ । ପୋଖରୀ ଭିତରେ ଯେଉଁ ଅରାଏ ଅରାଏ କଇଁ ଫୁଲ ଫୁଟିଛି, ତାହା ନନ୍ଦର ପ୍ରୟାସ । ସେ ଏଇଠି ନାଲି, ନୀଳ କଇଁ ଓ ପଦ୍ମ ଫୁଟାଇବାକୁ ମନ କରିଥିଲା । କେହି ବାଧା ଦେଇ ନଥିଲେ । କିନ୍ତୁ ମାଛ ବଢ଼ାଇବା ଥିଲା ପୋଖରୀର ବଡ଼ କଥା । ସେଥିରୁ ସ୍କୁଲର କେତେ ଜଣ ଶିକ୍ଷକଙ୍କର ଦରମା ଟଙ୍କାଟା ଉଠି ଯାଉଥିଲା ।

ନନ୍ଦ ଗଲା ପାହାଚରୁ ପାହାଚ ଓହ୍ଲାଇ ଓହ୍ଲାଇ । ପାଣିକୁ ହାତରେ ଟିକିଏ ଚହଲାଇ ଦେଲା । ଅନାଇଲା ନୀଳ କଇଁ ନାଲି କଇଁ, ଧଳା କଇଁ ମଦାଗୁଡ଼ିକ ଆଡ଼କୁ । ପଦ୍ମ ଫୁଲଗୁଡ଼ିକ ମୁଦି ହୋଇ ଯାଇଥାଏ । କିନ୍ତୁ କଇଁ ଫୁଲଗୁଡ଼ିକ ତରାପରି ଫୁଟିଛନ୍ତି । ଜହ୍ନ ସହିତ ସେମାନଙ୍କର କୁଆଡେ ଖୁବ୍ ଭାବଲାଭ ! ପରୀକ୍ଷା ପାଇଁ ପଢୁଥିବା ସେହି ସାହିତ୍ୟ ବହିଟିର ଗୋଟିଏ ଗୀତରେ ଥିଲା- 'ନିର୍ମଳ ଚନ୍ଦ୍ର ମଣ୍ଡଳ ଶରଦେ ବିରାଜି..... ।' ପୁଣି-'କେତେ ଦୂରେ ଚନ୍ଦ୍ର କେତେ ଦୂରେ କୁମୁଦିନୀ, ପ୍ରୀତି ଅଭେଦ ତାଙ୍କର'! ସେ ଆସିଲା ପୁଣି ବଗିଚା ଆଡ଼କୁ । ଜହ୍ନ ଆଲୁଅରେ ବଗିଚାଟି ଝଟକୁ ଥାଏ । ମନ ବୋଧ କରି ଦେଖିଲା । ସ୍କୁଲ ଆଡ଼କୁ ମୁହଁ କରି ଛିଡ଼ା ହେଲା ।

ରାତି ହେଲାଣି ଅନେକ । ଯିଏ ଯୁଆଡେ ଗଲେଣି । କେତେ ବେଳୁ ଚଉକିଦାର ଆସି ଠିଆ ହେଲାଣି । ନନ୍ଦ ତାକୁ ଚାହିଁଦେବା ମାତ୍ରେ, ତା' ପାଟିରୁ ବାହାରିଲା- 'ସାର୍' । କିନ୍ତୁ ତା ଆଖିଥିଲା ଛଳଛଳ । ନନ୍ଦ ସେ ପର୍ଯ୍ୟନ୍ତ ନିଜର ଭାବ ପ୍ରବଣତାକୁ ଚାପି ରଖିଥିଲା । ଆଉ ପାରିଲାନି । ତାକୁ କୁଣ୍ଢାଇ ପକାଇଲା । କଇଁ କଇଁ ହୋଇ କାନ୍ଦିଲା । ସତେ ଯେମିତି ସେ ସ୍କୁଲକୁ ଛାତିରେ ଚାପିଧରି କାନ୍ଦୁଛି !

ପିଲାଏ ବଡ଼ ଭାବପ୍ରବଣ ବକ୍ତୃତା ଦେଇଥିଲେ । ସହକର୍ମୀ ଓ ଶିକ୍ଷକ, କେତେ ଜଣ ଅଭିଭାବକ ଉଚ୍ଛ୍ୱସିତ ହୋଇ କହି ଯାଇଥିଲେ ଅନେକ କଥା । ସଭାଟି ବିଦାୟ ସଭାର ରୂପ ନେଇ ଆସିବା ବେଳକୁ ସଭାପତି ମନେ ପକାଇ ଦେଉଥାନ୍ତି, ମୂଳରୁ ଦେଇଥିବା ସୂଚନାଟିକୁ । ସେ ସଭାର ଆରମ୍ଭରେ କହିଥିଲେ-'ଏହା ବିଦାୟ ସଭା ନୁହେଁ ସମ୍ବର୍ଦ୍ଧନା ସଭା' । ତେଣୁ ସଭାଟିର ସ୍ୱରଥାଏ- 'ନକାନ୍ଦି କାନ୍ଦିଲା ବିଧାନ ।' କିନ୍ତୁ ଚଉକିଦାର ସୁଦର୍ଶନର ଆବେଗ, ଏବେ ସେହି ବନ୍ଧକୁ ଭାଙ୍ଗିଦେଲା ! ଦୁହେଁ ଭୁଲିଗଲେ ନିଜ ନିଜର ପଦ ପଦବୀର ସୀମା । ଦୁହେଁ ପ୍ରଗାଢ଼ ଭାବରେ ଆଲିଙ୍ଗନ କରିଥିଲେ ପରସ୍ପରକୁ ଗୋଟିଏ ଅନୁଷ୍ଠାନର ଦୁଇ ଅନ୍ତରଙ୍ଗ

ଭାବରେ; ଭାବଗଦ୍‌ଗଦ ହୋଇ । ନନ୍ଦର ଆଖି ଆଗରେ ଆକାଶର ବଉଦ ପରି ଭାସି ଭାସି ଉଭା ହୋଇ ଯାଉଥିଲା ଏଇଠି ବିତିଲା ଦିନର ଅନେକ ସ୍ମୃତି, ଅନେକ ଘଟଣା ।

ସଭାପତି ପ୍ରଭୁପାଦ ବାବୁ ତାଙ୍କ ଖମାର ଘରେ ଅଛନ୍ତି । ସେ କାଲି ନନ୍ଦକୁ ନିମନ୍ତ୍ରଣ କରିଛନ୍ତି । ତାଙ୍କ ସହିତ କିଛି ସମୟ କଟାଇବାକୁ ଅନୁରୋଧ କରିଛନ୍ତି । ଏହାପରେ, ସେ କାଲି କଟକ ଫେରିଯିବେ ।

## ॥ ୧୪ ॥

ନନ୍ଦର ତାରା କଣ ? ପ୍ରଭୁପାଦ ବାବୁଙ୍କ ପାଖକୁ ବାହରିବା ବେଳକୁ ଦଳ ଦଳ ପିଲା, ଜଣେ ଜଣେ ସହକର୍ମୀ, କେତେଜଣ ଅଭିଭାବକ, ତା ପଛକୁ ତା ପଛ ଜୁଟି ଯାଉ ଥାଆନ୍ତି । ସେ ତ ଯିବ ବୋଲି ବଡ଼ି ଭୋଅରରୁ ନିତ୍ୟ କର୍ମଯାକ ସାରି ଦେଇଥିଲା । କିନ୍ତୁ ଯେଉଁମାନେ ହୃଦୟ ଭରା ଆନ୍ତରିକତା ଘେନି ଆସୁଛନ୍ତି, ସେମାନଙ୍କୁ ତ ଅଣହେଳା କରି ଯାଇ ହେବ ନାହିଁ । ଏତେ ସ୍ନେହ, ଏତେ ଆନ୍ତରିକତାକୁ କଣ ଆଡ଼େଇ ଦେଇ ହେବ ! ତଥାପି, ସେ ଶେଷରେ ଗୋଟିଏ ସାଇକେଲ ମାଗି ଏକ ମୁହାଁ ହୋଇ ଚାଲିଆସିଲା । ଖମାର ଅଫିସରେ ପହଞ୍ଚିବା ବେଳକୁ ନଅଟା କି ଦଶଟା ହେବ ।

ବାହାରେ ଜଣେ ଅପେକ୍ଷା କରିଥିଲେ । କହିଲେ - 'ବାବୁ ଆପଣଙ୍କ କଥା ପାଞ୍ଚଥର ପଚାରିଲେଣି । ଅଇଛା କାହାକୁ ପଠାଇ ଥାଆନ୍ତେ ।'

ନନ୍ଦକୁ ଟିକିଏ ସଙ୍କୋଚ ଲାଗିଲା । ଏଡ଼େ ମହତ ଲୋକ ! ତା ପରି ଅକିଞ୍ଚନ ପ୍ରତି ଏତେ ମମତା ! ସେ ତର ତର ହୋଇ ଚାଲିଲା ସଭାପତି ପ୍ରଭୁପାଦ ବାବୁଙ୍କୁ ଭେଟିବା ପାଇଁ ।

ପ୍ରଭୁପାଦ ଗୁହାଳ ଆଡ଼େ ଯାଇଛନ୍ତି ବୋଲି ନନ୍ଦ ବୁଝିଲା । ସେତେବେଳକୁ ସେ ଗୁହାଳ ଭିତରେ ପଶି ପ୍ରତ୍ୟେକଟି ବଳଦ ପାଖକୁ ଯାଇ ଦେଖୁ ଥାଆନ୍ତି । ସେମାନଙ୍କୁ କୁଣ୍ଡା, କୁଳୁଚି, କୋଳଥ ଆଦି ଠିକ୍ ଭାବରେ ଓ ଠିକ୍ ପରିମାଣରେ ଦିଆ ଯାଉଛି କି ନାହିଁ, କିଏ ସେମାନଙ୍କୁ ଗାଧୋଇ ଦେଉଛି ଇତ୍ୟାଦି ପଚାରୁ ଥାନ୍ତି । ଗୁହାଳ କେମିତି ସଫା ଅଛି ବୁଲି ବୁଲି ଦେଖୁଥାନ୍ତି । ହଠାତ୍ ବୁଲି ପଡ଼ି ପଚାରିଲେ- 'ଏଠି ପଶୁଡ଼ାକ୍ତର କିଏ ଅଛନ୍ତି ? ' ସେତିକି ବେଳେ ଦୃଷ୍ଟିରେ ପଡ଼ିଗଲା ଅନ୍ୟମାନଙ୍କ ସହିତ ନନ୍ଦ ବି ଛିଡ଼ା ହୋଇଛି । ସେ ତାକୁ

ଦେଖି ଦେଇ ଭାରି ଖୁସି ହୋଇଗଲେ । କହିଲେ - 'ଆରେ, ଆପଣ କେମିତି ଆସିଲେ ? ମୁଁ ଗାଡ଼ି ପଠାଇବାକୁ ଭାବୁଥିଲି । ତା କାନ୍ଧରେ ହାତ ପକାଇ ବଡ଼ ଆଦରରେ ବୈଠକ ଖାନା ଆଡ଼କୁ ନେଇଗଲେ ।'

ନନ୍ଦ ସାମାନ୍ୟ ସଂକୋଚ ଅନୁଭବ କଲା । ଆଦରର ଆତିଶଯ୍ୟ ତାକୁ ଅବନତ କରି ଦେଉଥାଏ । ସେ କହିଲା- 'ଆପଣଙ୍କର ସ୍କୁଲ ମୋତେ ମଣିଷ କରିଦେଲା । କିନ୍ତୁ ମୁଁ ସ୍କୁଲ ପାଇଁ କିଛି କରି ପାରିଲି ନାହିଁ ।' ମାତ୍ର ତା କଥାଟା ସଭାପତିଙ୍କ ଦେହରେ ଧକ୍କା ଭଳି ବାଜି ଯିବ ବୋଲି, ସେ ଆଦୌ ଭାବିନଥିଲା ।

ସଭାପତି ପ୍ରଭୁପାଦ ଚମକି ପଡ଼ିଲେ । ତାଙ୍କ ମୁହଁର ସରସତା ହଠାତ୍ ପୋଛି ହୋଇ ଗଲା । ସେ ଛିଡ଼ା ହୋଇଗଲେ ସ୍ତମ୍ଭପରି । ନିଜକୁ ନିଜେ ପଚାରି ହେଲେ 'ଏ ସ୍କୁଲଟା ମୋର ? ଏ ଧାରଣାଟା କଣ ସତରେ ସମସ୍ତଙ୍କ ମନରେ ବଦ୍ଧ ମୂଳ ହୋଇ ଯାଉଛି ?' ହତାଶ ଲାଗିଲା । ପଚାରିଲେ- 'ଆଚ୍ଛା, ନନ୍ଦବାବୁ, ଏଇ ଭାବନାଟା କେବଳ ଆପଣଙ୍କର, ନା ଅନ୍ୟ ସବୁ କର୍ମଚାରୀ ଏମିତି ଭାବୁଛନ୍ତି ?'

ନନ୍ଦ କିଛି ବୁଝି ପାରିଲା ନାହିଁ । ବଡ଼ ନିରୀହ ସ୍ୱରରେ କହିଲା- 'ସାର୍, ମୁଁ କହୁ କହୁ କଣ କହି ଦେଲି ଜାଣି ପାରୁନି । ମୋର ଭୁଲ ହୋଇଗଲା ।'

ପ୍ରଭୁପାଦ ପ୍ରକୃତିସ୍ଥ ହୋଇଗଲେ । ପୁଣି ନରମ ସ୍ୱରରେ କହିଲେ- 'ନା, ନା, ଆପଣ ସେମିତି କିଛି ଭାବନ୍ତୁ ନାହିଁ । ବରଂ ମୁଁ ଦୁଃଖିତ ଯେ, ମୋ ବ୍ୟବହାର ଆପଣଙ୍କୁ କଷ୍ଟ ଦେଲା । ମୋ କାର୍ଯ୍ୟ ପଦ୍ଧତିରେ ବୋଧ ହୁଏ କିଛି ତ୍ରୁଟି ରହି ଯାଉଛି, ଯାହା ଫଳରେ ଗୋଟିଏ ଭୁଲ ବିଶ୍ୱାସ ମଇଳା ପରି ଜମି ଯାଉଛି । ପ୍ରକୃତରେ ସ୍କୁଲଟି ମୋର ନୁହେଁ । ଏଇ ଅଞ୍ଚଳର ସମସ୍ତଙ୍କର । ଆପଣମାନଙ୍କର । ଛାତ୍ର, ଶିକ୍ଷକ, କର୍ମଚାରୀ ସମସ୍ତଙ୍କର ଏଇ ସ୍କୁଲ ଏବଂ ସେମାନେ ମଧ୍ୟ ସ୍କୁଲର ।'

ସ୍କୁଲଟିକୁ ଯେତେବେଳେ ପ୍ରଭୁପାଦଙ୍କ ବାପାଙ୍କ ନାଁରେ କରିବାକୁ କୁହା ଯାଇଥିଲା, ସେ ସଫା ମନା କରିଦେଇଥିଲେ । ସେ ଯଦି ଏଥିରେ ରାଜି ହୋଇ ଯାଇଥାନ୍ତେ ବା ଉତ୍ସାହିତ ହୋଇ ଥାନ୍ତେ, ତେବେ ସ୍କୁଲଟା ତାଙ୍କର ବୋଲି କାହା କାହା ମନରେ ଉପୁଜିଥିବା ଧାରଣା

ପଛରେ ତାଙ୍କର ଭୂମିକା ଅଛି ବୋଲି ମନକୁ ପାପ ଛୁଇଁ ଥାଆନ୍ତା । ସେ କହି ପକାଇଲେ- 'ସ୍କୁଲଟି ଯଦି ବାପାଙ୍କ ନାଁରେ ନାମିତ କରା ଯାଇ ଥାଆନ୍ତା, କେତେ ବଡ଼ ଭୁଲ ହୋଇ ଥାଆନ୍ତା । ଅବଶ୍ୟ ମୁଁ ଏତେ ବର୍ଷ ଧରି ପରିଚାଳନା ସମିତିର ସଭାପତି ରହିବା ଠିକ୍ ହେଉ ନାହିଁ । ବୋଧହୁଏ ତାହା ହିଁ ଏପରି ଧାରଣାର କାରଣ ।'

ନନ୍ଦ ମନରେ ଟିକିଏ ସାହସ ପଶିଲା । ସେ କହିଲା- 'କିନ୍ତୁ ସାର୍, ଆପଣଙ୍କ ବାପାଙ୍କ ନାଁରେ ସ୍କୁଲ କରିବାରେ ଦୋଷ କେଉଁଠି ଥିଲା ? ତାଙ୍କ ଜାଗା ଓ ଜମିରେ ତ ସ୍କୁଲ ହୋଇଛି । ତା ଛଡ଼ା, ଆପଣ ମୂଳକୁ ସଭାପତି ରହି ନଥିଲେ ସ୍କୁଲ ଆଜି ଯେଉଁ ସ୍ଥିତିକୁ ଆସିଛି, ଯେପରି ସୁସଂଗଠିତ ପବିତ୍ର ବାତାବରଣ ଭିତରେ ଚାଲିଛି, ସେମିତି କଣ ହୋଇ ପାରି ଥାଆନ୍ତା ?'

ପ୍ରଭୁପାଦ କହିଲେ- 'ବାପା ବୋଉଙ୍କ ପାଇଁ ଚାରୋଟି ବୃତ୍ତିର ବ୍ୟବସ୍ଥା କରାଯାଇଛି । ଯେଉଁ ଚାରିଜଣ ପିଲା ଖୁବ୍ ଭଲ ପଢ଼ି, କ୍ରମାନ୍ୱୟରେ ଭଲ ନମ୍ବର ରଖି ପାଶ୍ କରିବେ, ସେମାନଙ୍କୁ ଏହା ମିଳିବ । ଏଥିରେ ସେମାନେ ଉଚ୍ଚ ଶିକ୍ଷା ପାଇବେ । ବିଜ୍ଞାନ, କଳା, ବାଣିଜ୍ୟ ଯେଉଁଥିରେ ଚାହିଁବେ ପଢ଼ିବେ । ଏହା ବାପା ଓ ବୋଉଙ୍କ ନାଁରେ ଦିଆଯିବ । ଏହା ଫଳରେ ତାଙ୍କର ଆତ୍ମା ଶାନ୍ତି ପାଇବ ବୋଲି ମୋର ବିଶ୍ୱାସ । ତା ଛଡ଼ା, ମୋ ବିଷୟରେ ଆପଣ ଯାହା ଭାବୁଛନ୍ତି ତାହା ଠିକ୍ ବୋଲି କହିବା ନାହିଁ । କାରଣ, ଆମ ସମସ୍ତଙ୍କ ଉଦ୍ୟମରେ ଅନୁଷ୍ଠାନଟି ବର୍ତ୍ତମାନର ସ୍ଥିତିକୁ ଆସି ପାରିଛି ଓ ଚଳୁଛି । ଆମେ ସମସ୍ତେ ଏକ ମନ ଏକ ପ୍ରାଣ ହୋଇ ବ୍ୟକ୍ତିଗତ ସୁବିଧା ଅସୁବିଧାକୁ ପଛକୁ ପକାଇ ଲାଗିପଡ଼ିଲେ ବୋଲି ଏହା ଭଲରେ ଭଲରେ ଚାଲିଛି । ଏଇଟା ମୋର ବିନୟୋକ୍ତି ବା ଅତିରଞ୍ଜିତ କଥା ନୁହେଁ, ଅନ୍ତରର ଅକୃତ୍ରିମ ଅନୁଭବ । ଆପଣ ବି ନିର୍ଲିପ୍ତ ଭାବରେ ବିଚାର କଲେ, ମୋ ସହିତ ଏକମତ ହେବେ ।'

ନନ୍ଦ କିଛି କହି ପାରିଲା ନାହିଁ । କେବଳ ତଳକୁ ଚାହିଁ ବସିଥାଏ । ଭାବୁଥାଏ, ସେଦିନ ମିଶ୍ରବାବୁ ଏଇ ଭଦ୍ରଲୋକଙ୍କୁ ଚିହ୍ନାଇ ଦେବାବେଳେ ଏଙ୍କଠାରେ ଏତେ ମହାନତା ଅଛି ବୋଲି ସେ କଳନା କରି ପାରି ନଥିଲା ।

ପ୍ରଭୁପାଦ କହିଲେ- 'ନନ୍ଦବାବୁ, ଆମ ଆଲୋଚନାଟା ଭିନ୍ନ ମୋଡ଼ ନେଇଗଲା । କ୍ଷମା କରିବେ । ଆପଣ କଣ ଖାଇବାକୁ ଭଲ ପାଆନ୍ତି ମୁଁ ଜାଣିନି । କାଲି ପଚାରି ପାରି

ନଥିଲି । ତେବେ, ଆପଣ ମାଛ ଖାଆନ୍ତି ନିଶ୍ଚୟ । ସେଥିରେ ଇଏ କଣ ସବୁ କରିଛନ୍ତି । ଆଉ କଣ ଖାଇବେ ନିଃସଙ୍କୋଚରେ କହନ୍ତୁ । ମୋତେ ଯଦି ଆପଣଙ୍କର ଆତ୍ମୀୟ ବୋଲି ଭାବୁଛନ୍ତି, ତେବେ ଅନୁଗ୍ରହ କରି ମନ ଖୋଲି କହନ୍ତୁ ।'

ପାଖରେ ପାଚକ ଛିଡ଼ା ହୋଇଥିଲା । ବୁଝିଲେ, ସେଇ ଅନୁସାରେ ରାନ୍ଧିବ । ନନ୍ଦ ତାଙ୍କ ଆଡ଼କୁ ଅନାଇଲା । କହିଲା - 'ଆପଣଙ୍କ ଖୁସି । ଯାହା କରୁଛନ୍ତି କରନ୍ତୁ । ଏଠି ସବୁ ମତେ ଅମୃତ ପରି ଲାଗିବ ।'

ଆଉ ଜଣେ ଲୋକ ଆସି କିଛି ଆଦେଶର ଅପେକ୍ଷାରେ ଛିଡ଼ା ହେଲା । ପ୍ରଭୁପାଦ ତାକୁ ଅନାଇବାରୁ ପଚାରିଲା- 'ପଶୁ ଡ଼ାକ୍ତରଙ୍କୁ ଡ଼କାଇବା ?'

ସେ ବ୍ୟସ୍ତ ହୋଇ ପଡ଼ି କହିଲେ- 'ନା, ନା, ମୁଁ ଯିବି । ଆମର ତାଙ୍କ ପାଖରେ କାମ ଅଛି । ଆମେ ଯିବା, ସେ କାହିଁକି ଆସିବେ ?' ତା ପରେ ନନ୍ଦ ଆଡ଼କୁ ଅନାଇ କହିଲେ- 'ମୁଁ ଭାବୁଛି, ଏଠି ଗୋଟାଏ କ୍ୟାମ୍ପ କରାଇ ଗୋପାଳନ ବିଷୟରେ କିଛି ଲୋକଙ୍କୁ ତାଲିମ୍ ଦେବା । ଏହି ଅଞ୍ଚଳରେ କେତେ ଚାଷୀ, ଗୋପାଳ ଓ ସାଧାରଣ ଲୋକଙ୍କ ସହିତ ଆମର ଶିକ୍ଷକ ଓ ପିଲାମାନଙ୍କ ଭିତରୁ ମଧ କେତେ ଜଣ ଏହି ତାଲିମ୍ କାର୍ଯ୍ୟ କ୍ରମରେ ସାମିଲ ହେବା ଦରକାର । ଆମ ସମସ୍ତଙ୍କର ଗାଈ ଗୋରୁଙ୍କ ହେପାଜତ୍ ବିଷୟରେ କିଛି କିଛି ଜ୍ଞାନ ରହିବା ଭଲ । କାମରେ ଆସିବ ।'

ନନ୍ଦ କଥାଟିର ଗୁରୁତ୍ୱ ଅନୁମାନ କରୁଥିଲା । କହିଲା - 'ଠିକ୍ କଥା ସାର୍ । ପିଲାଏ ଖାଲି ପାଠ ମୁଖସ୍ଥ କଲେ ଯଥେଷ୍ଟ ନୁହେଁ । ଏମିତି କିଛି କିଛି ଜାଣିବା ଉଚିତ୍ ।'

ପ୍ରଭୁପାଦ ଜଣେ ଅଭିଜ୍ଞ କବିରାଜଙ୍କୁ ଡ଼କାଇଥିଲେ । ସେ ବିଭିନ୍ନ ବୃକ୍ଷ, ଲତା, ଗୁଳ୍ମ, ତୃଣ ଜାତୀୟ ଉଦ୍‌ଭିଦକୁ ପିଲାମାନଙ୍କୁ ଚିହ୍ନାଇବାକୁ ଓ ସେଗୁଡ଼ିକର ଦ୍ରବ୍ୟଗୁଣ ବୁଝାଇବାକୁ ଯୋଜନା କରିଥିଲେ । ଛାତ୍ର ଓ ଶିକ୍ଷକମାନେ ଦେଶର ବୃକ୍ଷଲତାକୁ ଚିହ୍ନନ୍ତୁ ଓ ଜାଣନ୍ତୁ ବୋଲି ତାଙ୍କର ଇଚ୍ଛାଥିଲା । ଏହି ଚିନ୍ତାଟି ଆରମ୍ଭ ହୋଇଥିଲା ଗୋଟିଏ ସାମାନ୍ୟ ଘଟଣାରୁ ।

'ସ୍କୁଲ ଲାଇବ୍ରେରୀରେ ଥିବା ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷା କୋଷରେ ଶାଗ ବିଷୟରେ କଣ ଲେଖା ହୋଇଛି ପଢ଼ି, ସେଥିରୁ କେତୋଟି ଶାଗକୁ ଆପଣ ଚିହ୍ନିଛନ୍ତି କୁହନ୍ତୁ' ବୋଲି ସେ

ଜଣେ ଶିକ୍ଷକଙ୍କୁ ପାଚାରିଲେ । କ୍ରମେ ଏଇ ପ୍ରଶ୍ନଟିକୁ ପ୍ରତ୍ୟେକ ଶିକ୍ଷକ ନିଜ ନିଜ ଉପରକୁ ନେଲେ ଏବଂ ଦେଖାଗଲା ଅନେକ ଶାଗର ନାଁ କେତେକ ଶିକ୍ଷକ ଆଗରୁ ଜାଣି ନଥିଲେ । ସେଇଠୁ ବୃକ୍ଷଲତାର ଔଷଧିଗୁଣ କଥା ପଡ଼ିଲା ଏବଂ ଜଣେ କବିରାଜ ଓ ଆବଶ୍ୟକ ହେଲେ ଆଦିବାସୀ ଅଞ୍ଚଳର ଜଣେ ଓଝାଙ୍କୁ ଅଣାଇ ଯଥା ସମ୍ଭବ ଏଗୁଡ଼ିକ ଦେଖିବା ଓ ତାର ଗୁଣା ଗୁଣ ବୁଝିବାର ପ୍ରସ୍ତାବ ଉଠିଲା । ଏଥିପାଇଁ କେତେଖର୍ଚ୍ଚ ହେବ ଏବଂ କିପରି ବ୍ୟବସ୍ଥା କରିବାକୁ ହେବ, ତାର ଚିଠା କରାଗଲା । ସେହିପରି ଗୋଟିଏ ଗୋଟିଏ ସମୟରେ ସ୍କୁଲର ବଗିଚା ବଢାଇବା ଓ ପିଲାମାନଙ୍କୁ କୃଷି ଓ କେତେକ ନିର୍ବାଚିତ କାରିଗରୀ କାମ ଶିଖାଇ, ସେଥିପ୍ରତି ସେମାନଙ୍କର ମନରେ ଆଗ୍ରହ ସୃଷ୍ଟିକରିବାର ବ୍ୟବସ୍ଥା କରାଯାଇଛି । ଏହି ପରି କଥା ବାର୍ତ୍ତା ହେଉ ହେଉ ପ୍ରଭୁପାଦ ପଚାରିଲେ - "ଆପଣ 'ଚାରିଟି ସୋ' ଦୁଇଥର କରାଇବାର ଶୁଣିଛି । ଆସି ପାରି ନଥିଲି । ଭାତ ଓ ମୂଲିଆ ନାଟକ କରାଇଥିଲେ ପରା ?

ନନ୍ଦ କେବଳ ମୁଣ୍ଡ ଟୁଙ୍ଗାରି 'ଆଜ୍ଞା' ବୋଲି କହିଲା, ଏବଂ ତାଙ୍କଠାରୁ ଆଉ କିଛି ଶୁଣିବାକୁ ଚାହୁଁଥିଲା

ସେ କହିଲେ- 'ଶୁଣିଥିଲି ଖୁବ୍ ଭଲ ହୋଇଥିଲା । ମୁଁ ଭାବୁଛି, ପିଲାଏ ପାଠ ସହିତ ଖେଳ, କୁସ୍ତି କରସତ, ଡ୍ରାମା, ସଂଗୀତ, ଇତ୍ୟାଦି ଭିତରୁ ଯେଉଁଟି- ଯାହାର ଆଗ୍ରହ, ତାହା ଶିଖିବା ଉଚିତ୍ । ସେ ଦିଗରେ ଶିକ୍ଷକମାନେ ସେମାନଙ୍କୁ ଉତ୍ସାହ ଓ ମାର୍ଗ ଦର୍ଶନ ଦେବାର କଥା । ଆମର ବ୍ୟାୟାମ ଶିକ୍ଷକ କେତେକ ଖେଳ କସରତ ଜିନିସର ତାଲିକା ଦେବା ସଙ୍ଗେ ସଙ୍ଗେ ଆମେ ମଗାଇ ଦେଇଥିଲୁ । କିନ୍ତୁ ତାର ଉପଯୋଗ ହେବାର କଥା । ସ୍ୱାମୀ ଶିବାନନ୍ଦଙ୍କର ଜଣେ ଶିଷ୍ୟ ଯୋଗାସନ ଶିକ୍ଷାର ପ୍ରସ୍ତାବ ଦେବା ମାତ୍ରେ, ଏଠାରେ ଗୋଟାଏ ପନ୍ଦର ଦିନିଆ ଯୋଗାସନ ଶିକ୍ଷା ଶିବିର କରାଯାଇଥିଲା । ପିଲାଏ ଓ ଶିକ୍ଷକମାନେ ବେଶ୍ ଆଗ୍ରହ ପ୍ରକାଶ କରିଥିଲେ । କିନ୍ତୁ ଯେଉଁମାନେ ଶିଖିଲେ, ସେମାନେ ତାଙ୍କ ପରବର୍ତ୍ତୀ ବ୍ୟାଚର ଛାତ୍ରମାନଙ୍କୁ ବତାଇବା ବ୍ୟବସ୍ଥା ଚାଲୁରଖା ଯାଇପାରିଲା ନାହିଁ । ଏମିତି ଆମ ଆଡୁ କିଛି କିଛି ଅବହେଳା ରହିଯାଉଛି ।'

ନନ୍ଦ ମନେ ପକାଉଥିଲା, ଥରେ ପ୍ରଧାନ ଶିକ୍ଷକ ତାକୁ କେତେଜଣ ଅଭିଭାବକଙ୍କ ଘରକୁ ପଠାଇଥିଲେ । ସେମିତି ଅନ୍ୟ ଶିକ୍ଷକମାନେ ବି ଯାଆନ୍ତି । ଉଦ୍ଦେଶ୍ୟ ହେଲା, ଛାତ୍ର

ଛାତ୍ରୀମାନଙ୍କୁ ପରିବାର ଭିତରେ ସଙ୍ଖୋଳି ଆସିବା । ସେଠି ସେମାନେ ସେମାନଙ୍କର ଚଳଣି ଲକ୍ଷ୍ୟ କରିବେ । ପିଲାଟି ନିଜ ପାଠ ପଢ଼ା ସହିତ ବାପାଙ୍କୁ ତାଙ୍କ ଚାଷକାମ, ଗୋରୁଗାଈଙ୍କ ହେପାଜତ୍‌ରେ, ଛାତ୍ରୀ ହୋଇଥିଲେ ମାଆଙ୍କୁ ଘର କାମରେ କେମିତି କେତେଦୂର ସାହାଯ୍ୟ ସହଯୋଗ କରୁଛି ଲକ୍ଷ୍ୟ କରିବା । ପିଲାମାନଙ୍କୁ, ଏ ଦିଗରେ ଉତ୍ସାହିତ କରିବା ଥିଲା ଏପରି କାର୍ଯ୍ୟକ୍ରମର ଲକ୍ଷ୍ୟ । ଏଥି ପାଇଁ ସ୍କୁଲର ବାର୍ଷିକ ଦିବସରେ ୧୦ ଟି ଭଲ ଭଲ ଦାମିକା ପୁରଷ୍କାର ଦିଆଯାଏ । ନନ୍ଦ ଏପରି କେତେ ଥର ଗଲା ପରେ, ଗୋଟିଏ ନୂତନ ଅନୁଭୂତି ହେଲା । ଜଣେ ପୂର୍ବତନ ଛାତ୍ରର ବିବାହ ଭୋଜିରେ ଯୋଗଦେବା ବେଳେ, ସେଇ ବର୍ଷର କେତେ ଜଣ ଛାତ୍ରଙ୍କ ସହିତ ଦେଖା ହେଲା । ସ୍କୁଲର ଆଉ ଜଣେ ଶିକ୍ଷକ ମଧ୍ୟ ଥିଲେ । ସେ ଦୁଇ ଜଣ ଛାତ୍ର ଗୋଟିଏ ଜାଗାରେ ଠିଆ ହୋଇ ରହିଥିବାର ଲକ୍ଷ୍ୟ କରି କହିଲେ - 'ତମେ କିଛି କାମରେ ସାହାଯ୍ୟ କରୁନ । ସମାଜରେ ଚଳିବାକୁ ହେଲେ ଏପ୍ରକାର ନିଷ୍କ୍ରିୟତା ଭଲ ଗୁଣ ନୁହେଁ । ବରଂ ଏହା ଗୋଟିଏ ଖୁଣ । ତୁମେମାନେ ଯେତିକି ଯେତିକି ଅନ୍ୟମାନଙ୍କ କାମରେ ସହଯୋଗ କରିପାରିବ, ସେହି ଅନୁସାରେ ତୁମର ସାମାଜିକ ଗୁରୁତ୍ୱ ଓ ଆଦର ବଢ଼ିବ ।'

ପୂଜାରୀ ଆସି ପଚାରିଲା- 'କେଉଁଠି ଠା କରିବା ହେବେ ? ଟେବୁଲରେ ନାଁ ତଳେ ?'

'ନନ୍ଦବାବୁ ଯାହା କହିବେ' ବୋଲି କହି ପ୍ରଭୁପାଦ ନନ୍ଦ ଆଡ଼କୁ ଅନାଇଲେ ।

ନନ୍ଦର ପୁଣି ଇଚ୍ଛା କଣ ? ସେ ପୂଜାରୀକୁ କହିଲା 'ସାର୍ ଯେମିତି ଯେଉଁଠି ବସନ୍ତି, ସେମିତି କରନ୍ତୁ ।'

ଶିଶୁକାଠରେ ତିଆରି ବଡ଼ ଗୋଲ ଟେବୁଲ । ତାରି ଉପରେ ଖାଦ୍ୟ ପରିଚ୍ଛନ୍ନ ଭାବରେ ବଢ଼ା ହୋଇଛି । ଭାତ, ଡ଼ାଲି, ତିନି ଚାରି ପ୍ରକାରର ନିରାମିଶ ତରକାରୀ, ମାଛ ମଧ୍ୟ ତିନି ଚାରିପ୍ରକାର ହୋଇଛି । ନାନା ପ୍ରକାର ପରିବା ଭଜା ଓ ମାଛ ଭଜା ହୋଇଛି । କ୍ଷୀରୀ ମହମହ ବାସୁଛି । ଘିଅ ଖିଆ ଗିନାରେ ଘିଅ ଅଲଗା ଅଲଗା ରଖା ଯାଇଛି ।

ପ୍ରତିଟି ବ୍ୟଞ୍ଜନ ଚମତ୍କାର ରନ୍ଧା ହୋଇଛି । ଭାତ ବି ସରୁ ସ୍ୱାଦିଷ୍ଟ ବାସନା ଚାଉଳରେ ରନ୍ଧା । ନନ୍ଦ କହିଲା- 'ଚାଉଳଟା ଚମତ୍କାର । କିନ୍ତୁ ସାର୍, ଏପଟେ ତ ବଗଡ଼ା ଉଷୁନା ଚାଉଳର ପ୍ରଚଳନ ବେଶି ।'

ପୂଜାରୀ କିଛି ଆଦେଶର ଅପେକ୍ଷାରେ ଛିଡ଼ା ହୋଇଥାଏ, କହିଲା- 'ଆଜ୍ଞା, କ୍ଷୀରି,

କାନିକା, ଭାତ ପାଇଁ ଭିନେ ଭିନେ ଚାଉଳ ଲାଗେ । ବାବୁ ଉଷୁନା ଖାଆନ୍ତି ନାହିଁ । ତାଙ୍କ ପାଇଁ ଢ଼ିଙ୍କି କୁଟା ଅରୁଆ କିମ୍ୱା କେବେ କେବେ ଉଆ ପଖିଆ ଚାଉଳର ଭାତ ହୁଏ । ଆମେ ମାନେ ଯିଏ ଯାହା ରୁଚି ଅନୁସାରେ ଖାଉ ।'

ପ୍ରଭୁପାଦ କହିଲେ- 'ଆମ ଏଠି ଅନେକ ପ୍ରକାରର ଧାନ ହୁଏ । ଆଗେ ବେପାରୀମାନଙ୍କୁ ଧାନ ବିକ୍ରି କରାଯାଉଥିଲା । ଆମେ ଗତ କେତେ ବର୍ଷ ହେଲା କଟକ ମାଲ ଗୋଦାମକୁ ଚାଉଳ ଯୋଗାଉଛୁ । ମୁଁ ଧାନ ବିକ୍ରି ବନ୍ଦ କରି ଦେଇଛି । ଗୋରୁମାନଙ୍କ ପାଇଁ କୁଣ୍ଡା ହେଲା ନାହିଁ । ସେଥିପାଇଁ ଖମାର ଘରେ ଗୋଟିଏ ହଲର ପକାଯାଇଛି । ଆମ ନିଜ ବ୍ୟବହାର ପାଇଁ କୁଟୁଣୀମାନଙ୍କୁ ଚାଉଳ ପାଇଁ ଧାନ କୁଟା ଦିଆଯାଏ ।'

ନନ୍ଦ ପଚାରିଲା- 'ଏଠି ଆଉ କଣ ସବୁ ଅମଳ ହୁଏ ?'

ପ୍ରଭୁପାଦ କହିଲେ- 'ଗୋଟିଏ ପ୍ରବାଦ ଅଛି-ଅକର୍ମା ଭୂମି ନିନ୍ଦନ୍ତି । ଭୂମିକୁ ଖାଦ୍ୟଦେଲେ, ସେଥିରୁ ଅନେକ ପ୍ରକାର ଫସଲ ଅମଳ କରିହେବ । ତେବେ, ଆମେ ଧାନ ଛଡ଼ା ମୁଗ, ବିରି, ନଳିତା କରୁଥିଲୁ । ମୁଁ ଆମ ଜମିଗୁଡ଼ିକର ମାଟି ପରୀକ୍ଷା କରାଇ, ସେଇ ଅନୁସାରେ ଫସଲ କରୁଛି । କିଛି ଜମିରେ ଗୋରୁଙ୍କ ପାଇଁ କୋଳଥ କରାଯାଉଛି ଓ ଘାସ ମଧ୍ୟ ବଢ଼ାଯାଇଛି । ଗତ ବର୍ଷଠାରୁ ଗୋଟିଏ ଜମିରେ ଚିନାବାଦାମ୍ କରାଯାଇଥିଲା । ବେଶ୍ ଭଲ ଅମଳ ମିଳିଛି । ଖଣ୍ଡେ ସାରୁବିଲ ଓ ତାକୁ ଲାଗି ଆଉ କିଛି ଜମି ଓ ଛୋଟ ଚୁଆଟିଏ ଥିଲା । ତାକୁ ମିଶାଇ ଗୋଟିଏ ବଗିଚା କରାଯାଇଛି । ସେଠି ପନିପରିବା କରାଯାଉଛି । ବଡ଼ ପୋଖରୀ ଦୁଇଟି ଅଛି । ଆମ୍ବ, ପଣସ, ନଡ଼ିଆ ଓ ଲେମ୍ବୁ ଗଛ ତ ଆପଣ ଆମ ବାରି ଚାରି କଡ଼େ ଦେଖିଥିବେ । ଆମେ ଯେଉଁ ଦି ତିନି ପ୍ରକାର ମାଛ ଖାଉଛେ, ସେଗୁଡ଼ିକ ଆମରି ବିଲ, ଆମରି ପୋଖରୀରୁ ଧରା ହୋଇଥିଲା । ପରିବା ପତ୍ର ମଧ୍ୟ ଆମରି ବଗିଚାର ।'

ନନ୍ଦ କେବଳ ଶୁଣୁଥାଏ । ପ୍ରଭୁପଦ ଟିକିଏ ରହିଯାଇ କହିଲେ- 'ଏସବୁ ଶୁଣି ଆପଣଙ୍କୁ ଲାଗୁଥିବ ମୁଁ ଜଣେ ବ୍ୟବସାୟୀ ଲୋକ । ତାହା ମଧ୍ୟ ଭୁଲ ନୁହେଁ ।'

ନନ୍ଦ ଅନୁଭବ କରୁଥିଲା ଖାଇବା ବେଳେ ବେଶୀ କଥା ବାର୍ତ୍ତା ଠିକ୍ ହେଉ ନାହିଁ । ତାହା ବୋଧହୁଏ ପ୍ରଭୁପାଦ ବାବୁଙ୍କ ଖାଇବାରେ ବାଧା ସୃଷ୍ଟି କରୁଛି । କିଛି କହିବାକୁ ପଡ଼ିଲେ, ସେ ଖାଇବା ବନ୍ଦ ରଖି, କହୁଛନ୍ତି । ତେଣୁ ସେ କିଛି କହିଲା ନାହିଁ ।

ଖିଆ ସରିବା ବେଳକୁ ହାତ ଧୋଇବା, ହାତ ପୋଛିବା ପାଇଁ ପାଣି ଓ ନୂଆ ଗାମୁଛା ଧରି ଲୋକ ଛିଡ଼ା ହୋଇ ଥାଆନ୍ତି । ହାତ ପୋଛିବା ପରେ ପରେ ଗୋଟିଏ ରୂପା ଥାଳିଆରେ ପାନ ଓ ମସଲା ଧରି ଆଉ ଗୋଟିଏ ପିଲା ଛିଡ଼ା ହୋଇଥିଲା ।

ଖିଆ ପିଆ ପରେ ଦୁହେଁ ବୈଠକ ଘରକୁ ଆସିଲେ । ନନ୍ଦ କେବଳ କାବା କାବା ହୋଇ ଏଣେ ତେଣେ ଚାହୁଁଥାଏ । ପ୍ରଭୁପାଦ ବାବୁ ପୁଣି କଥାବାର୍ତ୍ତା ଆରମ୍ଭ କରି, କହିଲେ- 'ମୁଁ ଅନେକ ଖର୍ଚ୍ଚ କମାଇ ଦେଇଛି । କିନ୍ତୁ ବାପାଙ୍କ ଅମଳରୁଥିବା ଲୋକମାନଙ୍କୁ ଛାଡ଼ି ପାରି ନାହିଁ । ତେଣୁ ଏଠି କାମ କରିବା ଲୋକଙ୍କ ସଂଖ୍ୟା ଆବଶ୍ୟକତା ତୁଳନାରେ ଅଧିକ । ଏମାନଙ୍କ ଭିତରୁ ଦୁଇ ତିନି ଜଣ ମୋତେ ପୁଅ ଦୃଷ୍ଟିରେ ଦେଖନ୍ତି । ସେମାନେ ବାବୁ ବୋଲି ସମ୍ବୋଧନ କରନ୍ତି । ସମ୍ମାନ ଦେଖାଇ ବ୍ୟବାହାର କରନ୍ତି । କିନ୍ତୁ ବେଶ୍ ଆକଟ କରନ୍ତି ମଧ । ସେମାନଙ୍କ ସମ୍ବୋଧନ ଓ କଥାରେ ସ୍ନେହ ମିଶିରହିଥାଏ । ସେମାନଙ୍କ ପ୍ରତି ଓ ସେମାନଙ୍କ ପରିବାର ପ୍ରତି ମୋର କିଛି କିଛି କର୍ତ୍ତବ୍ୟ ଅଛି ।'

ନନ୍ଦ ପ୍ରଭୁପାଦ ବାବୁଙ୍କ ବିରାଟତାକୁ କଳନା କରୁ କରୁ ସେଥିରେ ବୁଡ଼ିଗଲା ପରି ଅନୁଭବ କରୁଥାଏ । କହିଲା- 'ଆପଣଙ୍କ ପରି ମହାନ୍ ଲୋକ ଦେଶର ରାଜ ନୀତିରେ ଭାଗନେବା ଉଚିତ୍ ।'

ସେ ନନ୍ଦ କଥା ଶୁଣି, ହାତ ଯୋଡ଼ି ପକାଇ କହିଲେ- 'କ୍ଷମା କରିବେ ନନ୍ଦବାବୁ କାହାକୁ ଏମିତି ପରାମର୍ଶ ଦେବେ ନାହିଁ । ମୁଁ ତିନୋଟି ଦାୟିତ୍ୱ ନେଇଛି । ତା ସହିତ ଅଧିକ ଦାୟିତ୍ୱ କିମ୍ବା ତାକୁ ଛାଡ଼ି ଅନ୍ୟ ଦାୟିତ୍ୱ ନେବା ମୋ ପକ୍ଷରେ ଅନୁଚିତ । ପୁଣି ରାଜନୀତି କରିବା ମୋ ଶକ୍ତିର ବାହାରେ । ରାଜନୀତିରେ ପଶି ଶାସନରେ ଅଂଶ ଗ୍ରହଣ କରିବା ପାଇଁ ଯେଉଁ ଯୋଗ୍ୟତା ଓ ଦକ୍ଷତା ଦରକାର, ମୁଁ ତାହା ହାସଲ କରିବାକୁ ଚେଷ୍ଟା କରି ନାହିଁ ବା ସେ ଦିଗରେ ନିଜକୁ ତାଲିମ୍ ଦେଇ ନାହିଁ । ତା ଛଡ଼ା ମୁଁ ଯଦି ଏପଟେ ମୋ ଦାୟିତ୍ୱରୁ ହାତ ଉଠାଇ ନେବି, ତେବେ ବହୁ ବିଭ୍ରାଟ ଘଟି ଯିବ । ତାକୁ ସମ୍ଭାଳିବାକୁ ମୋର କେହି ନାହାନ୍ତି । କିନ୍ତୁ ଆପଣ ଏଥିରୁ ଭାବିବେ ନାହିଁ ଯେ, ମୁଁ ରାଜନୀତି ପ୍ରତି ଉଦାସୀନ ବା ମୋର କୌଣସି ନିର୍ଦ୍ଦିଷ୍ଟ ରାଜନୈତିକ ମତ ନାହିଁ । ବରଂ ଯୋଗ୍ୟ ପ୍ରତିନିଧିଙ୍କୁ ଜିତାଇବାରେ ମୋର ଯେତିକି ସହଯୋଗ ଦରକାର, ତାହା ମୁଁ ମୋ ବିବେକ, ବୁଦ୍ଧି ଓ ସାମର୍ଥ୍ୟ ଅନୁସାରେ କରିଥାଏ । ବିଭିନ୍ନ ଫୋରମ୍‌ରେ ମୋର ମତ ପ୍ରକାଶ କରିବାରେ କୁଣ୍ଠିତ ବା ପଶ୍ଚାତ୍‌ପଦ ହୁଏ ନାହିଁ ।'

ନନ୍ଦ ବୋଧହୁଏ କଣ କହିବ ବା ଆଲୋଚନାର ଧାରାକୁ କୁଆଡ଼େ ବୁଲାଇ କେଉଁଠି ସାରିବ, ଭାବୁଥିଲା । ପ୍ରଭୁପାଦ କହିଲେ- 'ଆପଣ ତ ଶିକ୍ଷା ଦାନ କ୍ଷେତ୍ରରୁ ଦୂରେଇ ଯାଉଛନ୍ତି । କିନ୍ତୁ ମୋର ବିଚାରରେ ଶିକ୍ଷା ଓ ରାଜନୀତି ଦୁଇଟି ଯାକ ଅତି ପବିତ୍ର ଓ ଗୁରୁତ୍ୱ ପୂର୍ଣ୍ଣ କ୍ଷେତ୍ର । ସେଠାରେ ଚରିତ୍ରବାନ୍, ଯୋଗ୍ୟ ଓ ଦକ୍ଷ ଲୋକ ରହିବା ଜରୁରୀ । ଯଦି ଶିକ୍ଷକମାନେ କିଛି ଭଲ ନେତା ଉତାରିବାରେ ତାଙ୍କର ଯଥାସାଧ୍ୟ ଭୂମିକା ନେଇପାରିବେ, ତାହା ହେବ ରାଜନୀତି କ୍ଷେତ୍ରକୁ ସେମାନଙ୍କର ଅବଦାନ । ଆମ ଶିକ୍ଷାୟତନ ଗୁଡ଼ିକ ଦାୟିତ୍ୱବୋଧ ଥିବା ଭଲ ମଣିଷ ଉତାରି ପାରିଲେ ଗୋଟାଏ ବଡ଼ କାମ ହେବ ।'

ନନ୍ଦ ନୀରବରେ ଶୁଣୁଥିଲା । ସେ ଡ୍ରାଇଭରକୁ ଡ଼କାଇଲେ । କହିଲେ- 'ସାର୍‌ଙ୍କୁ ସ୍କୁଲରେ ଛାଡ଼ିଦେଇ ଆସ ।'

ନନ୍ଦ ଉଠି ଠିଆ ହେଲା । ବିନୟ ଓ କୃତଜ୍ଞତାର ସହିତ କହିଲା - 'ଥାଉ ସାର୍, ମୁଁ ସାଇକେଲ ଆଣିଛି ।' ସେ କାର୍ଡ଼ଟିଏ ବଢ଼ାଇ ଦେଇ କହିଲେ- 'ମୋ ଠିକଣା ରଖନ୍ତୁ । କଟକ ଆସିଲେ ନିଶ୍ଚୟ ସମୟ କରି ଆମ ବସାକୁ ଆସିବେ । ଯୋଗାଯୋଗ ରଖୁଥିବେ । ମୁଁ ଆପଣଙ୍କ ପାଇଁ କଣ ବା କାମନା କରିବି ? ଆପଣଙ୍କର କର୍ମ, କାର୍ଯ୍ୟ ଓ ସ୍ୱଭାବ ଆପଣଙ୍କୁ ବହୁତ ଉଚ୍ଚକୁ ନେଇଯିବ । ଖୁବ୍ ସୁଖରେ ରହିବେ । ଏହା ମୋର ଦୃଢ଼ ବିଶ୍ୱାସ ଓ ଅନୁଭବରୁ ବାହାରୁଥିବା କଥା ।'

ନନ୍ଦ ମୁଣ୍ଡିଆ ମାରିବାକୁ ନଇଁ ପଡ଼ିବା ବେଳକୁ, ସେ ତାକୁ ଧରି ନେଇ କୁଣ୍ଢାଇ ପକାଇଲେ । ନନ୍ଦ ବି ତାଙ୍କୁ କୁଣ୍ଢାଇ ଧରିଲା । ଆଖିରେ ଲୁହ ଜକେଇ ଆସିଲା । ସେ ଅନୁଭବ କରୁଥିଲା ସତେ ଅବା ଗରୁଡ଼ ସ୍ତମ୍ଭକୁ କୁଣ୍ଢାଇ ଧରିଛି ! ପ୍ରଭୁପାଦ ବାବୁ ତାକୁ ଧରି ଧରି ଫାଟକ ଯାଏ ଆସିଲେ । ସେଠି ସାଇକେଲଟି ଥୁଆ ହୋଇଥିଲା । ସାଇକେଲ ଚଢ଼ି ନନ୍ଦ ଚାଲିଲା ସ୍କୁଲ ମୁହାଁ ।

ସ୍କୁଲ ଶବ୍ଦଟି ସହିତ ଗ୍ରୀସ୍‌ର ସ୍ୱଚ୍ଛଳ ଅବସ୍ଥାସଂପନ୍ନ ଗୋଷ୍ଠୀର ସଂପର୍କ ଜଡ଼ିତ । ଅଭାବ ନଥିବାରୁ, ସେମାନଙ୍କୁ ପେଟପାଟଣା ପାଇଁ କଠିନ ଶ୍ରମ କରିବାକୁ ପଡୁନଥିଲା । ତେଣୁ ଅବସର ପାଉଥିଲେ । ଏଇଅବସର ସମୟକୁ ଗ୍ରୀକ୍ ଭାଷାରେ କୁହାଯାଏ - ସ୍କୋଲେ (Sco-le), ଯେଉଁ ଧନୀକମାନେ ଏହି ସମୟଟି ବିଦ୍ୟାଚର୍ଚ୍ଚା, ଅଧ୍ୟୟନ, ବିଦ୍ୟାଦାନରେ

ଅତିବାହିତ କରୁଥିଲେ, ସେମାନଙ୍କୁ କୁହାଯାଉଥିଲା- ସ୍କଲାର (Scholar) ଅର୍ଥାତ ପ୍ରାଜ୍ଞ । ଏହି ପ୍ରାଜ୍ଞ ପୁରୁଷମାନେ ଯେଉଁ ସ୍ଥଳରେ ମିଳିତ ହୋଇ ବିଦ୍ୟା ଚର୍ଚ୍ଚା କରୁଥିଲେ, ତାକୁ କୁହାଯାଉଥିଲା - ସ୍କୁଲ (School) । ଏଥିରୁ ଲକ୍ଷ୍ମୀ-ସରସ୍ୱତୀଙ୍କ ବିବାଦ କଥା କିଏ କଳନା କରିବ ? ପ୍ରଭୁପାଦ ବାବୁ ଥିଲେ ଏହି ଦୃଷ୍ଟିରୁ ଜଣେ ସ୍କଲାର । ନନ୍ଦ ତାଙ୍କରି କଥା ଭାବି ଭାବି ସାଇକେଲଟି ଧୀରେ ଧୀରେ ଚଳାଉ ଥାଏ ।

ସଂପ୍ରତି ମୂଳ ସ୍କୁଲ ଶବ୍ଦଟିର ଅର୍ଥରେ ବିପୁଳ ପରିବର୍ତ୍ତନ ଘଟିଛି । ଆମେ ଏହାକୁ କହୁ - ବିଦ୍ୟାଳୟ । ପ୍ରଭୁପାଦ ତାଙ୍କ ସ୍କୁଲଟିର ନାମ ଦେଇଛନ୍ତି-'ପଲ୍ଲୀଶ୍ରୀ ବିଦ୍ୟାନିକେତନ । ଯେତେ ବେଳେ ଆସନ୍ତି ଶିକ୍ଷକମାନଙ୍କ କମନ୍ ରୁମ୍‌ରେ ବସନ୍ତି । ପ୍ରାୟ ପ୍ରତିଥର ସ୍କୁଲ ଲାଇବ୍ରେରୀ ପାଇଁ, କିଛି କିଛି ବହି ଆଣି ଥାଆନ୍ତି । ସେଭିତରୁ କେତେ ଖଣ୍ଡ ଥାଏ ଶିକ୍ଷକମାନଙ୍କ ପାଇଁ । ସେଗୁଡ଼ିକ ସେ ନିଜେ ପଢ଼ି ଥାଆନ୍ତି ଓ ସ୍ଥାନେ ସ୍ଥାନେ ପେନ୍‌ସିଲ୍‌ରେ ଚିହ୍ନ ଦେଇ ଥାଆନ୍ତି । ପରେ ସେ ବିଷୟରେ ଶିକ୍ଷକମାନଙ୍କ ସହିତ କମନ-ରୁମ୍‌ରେ ବସି ଆଲୋଚନା କରନ୍ତି ।

ସେ ଦିନେ ଆସିଥିଲେ । କଥା ପ୍ରସଙ୍ଗରେ କହିଲେ - 'ସିଲାବସ୍ ଅନୁସାରେ ପାଠ୍ୟ ପୁସ୍ତକଧରି ପିଲାଙ୍କୁ ପରୀକ୍ଷା ପାଇଁ ପ୍ରସ୍ତୁତ କରିବା ଆମର ଅବଶ୍ୟ ଗୋଟିଏ ଉଦ୍ଦେଶ୍ୟ । ମାତ୍ର, ତାହା ଏକମାତ୍ର ଉଦ୍ଦେଶ୍ୟ ନୁହେଁ । ପୁଣି ମୂଳ ଉଦ୍ଦେଶ୍ୟ ମଧ୍ୟ ନୁହେଁ । କାରଣ, ଏଇ ପିଲାଏ ହେଲେ ଆମ ଅଞ୍ଚଳର, ଆମ ଗାଁ ଗଣ୍ଡାର ଶୋଭା ଓ ସମ୍ପଦ । ସେମାନଙ୍କ ଆଚରଣ ସେମାନଙ୍କର ଦୃଷ୍ଟିକୋଣ ଓ ସାମର୍ଥ୍ୟକୁ ଠିକ୍ ବାଟରେ ପକାଇବା ଶିକ୍ଷକମାନଙ୍କର ବଡ଼ ଦାୟିତ୍ୱ ।'

'ପ୍ରତ୍ୟକ ସମୟର ଗୋଟାଏ ସ୍ୱତନ୍ତ୍ର ପ୍ରକାରର ଆବଶ୍ୟକତା ଥାଏ । ଆହ୍ୱାନ ଥାଏ । ଶିକ୍ଷିତ ଲୋକେ ତାହା ବୁଝିବା ଦରକାର । ସେହି ଅନୁସାରେ ଆମ ପିଲାମାନଙ୍କୁ ପ୍ରସ୍ତୁତ କରାଇବାକୁ ହେବ, ଯେପରି କି ସେମାନେ ସମୟର ଆହ୍ୱାନକୁ ବୁଝିବେ ଓ ତାର ମୁକାବିଲା କରିପାରିବେ ।' ସେଦିନ, ସ୍କୁଲର ଟିଚରସ୍-କମନ-ରୁମ୍‌ରେ ବସିଥିବା ଆଲୋଚନା ଆସରଟି ନନ୍ଦର ସ୍ମୃତିରେ ଛାପି ହୋଇ ରହି ଯାଇଛି । ପ୍ରଭୁପାଦ ବାବୁ ଦୃଷ୍ଟାନ୍ତ ଦେଇ କହିଥିଲେ- 'ଇତିହାସ ପଢ଼ାଇବାର ଉଦ୍ଦେଶ୍ୟ ନୁହେଁ ନିର୍ଦ୍ଦିଷ୍ଟ ଇତିହାସ ବହିଟିଏ ଧରି ପୃଷ୍ଠା ପୃଷ୍ଠା କରି ପଢ଼ାଇ ଯିବା । ବିଷୟଟି ପଢ଼ାଇବା ବେଳେ ସେହି ବିଷୟଟି ପିଲାଏ କିପରି ଭଲ ଭାବରେ ବୁଝି ହୃଦୟଙ୍ଗମ କରି ତାକୁ ନିଜ ନିଜର ବୁଦ୍ଧି, ଜ୍ଞାନ ଓ ବିଚାରର ଅଙ୍ଗିଭୂତ କରି

ପାରିବେ ସେହି ଲକ୍ଷ୍ୟ ଧରି ପଢ଼ାଇବା ଉଚିତ୍ । ସେହି ବିଷୟଟି ପ୍ରତି ସେମାନଙ୍କର ଆଗ୍ରହ ଓ ସେ ଦିଗରେ ଅଧିକ ଜାଣିବାର ପ୍ରେରଣା ଦେବାକୁ ହେବ ।'

ଜଣେ ଶିକ୍ଷକ ଟୟନ୍‌ବିଙ୍କ 'ଷ୍ଟଡ଼ି ଅଫ ହିଷ୍ଟ୍ରି' ବହି କଥା ଉଠାଉ ଉଠାଉ, ଭାରି ଖୁସି ହୋଇ ପ୍ରଭୁପାଦ ବାବୁ କହିଲେ 'ବେଶ୍ ବେଶ୍ ମୁଁ ସେଇ କଥା କହିବାକୁ ଚାହୁଁଥିଲି । ମୋତେ ଭାରି ଉତ୍ସାହ ମିଳୁଛି ଯେ, ଆପଣମାନେ ଲାଇବ୍ରେରୀକୁ ଆସୁଥିବା ବହି ଗୁଡ଼ିକ ପଢୁଛନ୍ତି । ଆର୍‌ନୋଲଡ୍ ଟୟନ୍‌ବିଙ୍କର ଏଇ ବହି ସେଟ୍‌ଟି ପ୍ରତ୍ୟେକ ଶିକ୍ଷକ ପଢ଼ିବା କଥା । ସେ ଯେଉଁ ଚାଲେଞ୍ଜ ଓ ରେସ୍‌ପନ୍‌ସ୍ ବା ସଭ୍ୟତାର ଆହ୍ୱାନ ଓ ତାକୁ ମୁକାବିଲା କରିବାର ପ୍ରସଙ୍ଗଟି ସମୀକ୍ଷା କରିଛନ୍ତି, ତାହା ସଭ୍ୟତା କ୍ଷେତ୍ରରେ ଯେପରି ଘଟେ, ପରିବାର ବଂଶ ବା ମଣିଷର ବ୍ୟକ୍ତିଗତ ଜୀବନ କ୍ଷେତ୍ରରେ ମଧ ସେହିପରି ଘଟି ପାରେ । ଜୀବନରେ ନାନାଦି ଆହ୍ୱାନର ସମ୍ମୁଖୀନ ହେବାକୁ ପଡ଼ିବ । ଢେଉ ଭାଙ୍ଗି ଭାଙ୍ଗି ପହଁରିବା ଭଳି ସମୟର ସୁଅରେ ଯଦି କିଛି ପ୍ରତିକୂଳତା ଆସେ, ତାକୁ ଅତିକ୍ରମ କରିବାକୁ ହେବ । ଆଗେଇବାକୁ ପଡ଼ିବ । ପାଣ୍ଡବମାନେ କଅଣ କରିଥିଲେ ? ରାମାୟଣ କଣ ଦେଖାଇଛି ? ରାମ ଏବଂ କୃଷ୍ଣଙ୍କୁ ଗୋଟିଏ ଗୋଟିଏ ଚରିତ୍ର ଭାବରେ ବିଚାର କଲେ କଣ ଜଣା ପଡ଼େ ?'

ଜଣେ ଜଣେ ଲୋକଙ୍କୁ ତାଙ୍କ ନିଜ କ୍ଷେତ୍ରରେ ଯେପରି ଚିହ୍ନି ହୁଏ, ବାହାରେ ଦେଖି ସେପରି ଜାଣି ହୁଏ ନାହିଁ । ପ୍ରଭୁପାଦଙ୍କ ସହିତ ଏଠାରେ ମିଶିବା ପରେ ନନ୍ଦର ଏହି ଧାରଣା ହୋଇଛି ।

ସେତେବେଳକୁ ନନ୍ଦ ଏଠାରେ ଚାକିରୀ କରିବା ମାସେ ବା ଦେଢ଼ ମାସ ହୋଇଥାଏ । ପ୍ରଭୁପାଦ ଆସିଥିଲେ ସ୍କୁଲକୁ । ସେ ଅଷ୍ଟମ ଶ୍ରେଣୀରେ ଇଂରାଜୀ ପଢ଼ାଉଥାଏ । କ୍ଲାସ ନେଇ ଫେରିବା ବେଳକୁ ଦେଖିଲେ ପ୍ରଭୁପାଦ ଲାଇବ୍ରେରୀରେ ବସିଛନ୍ତି । ତାକୁ ଦେଖି ବଡ଼ ମଧୁର ସ୍ୱରରେ ପଚାରିଲେ - 'ଏଠି କେମିତି ଲାଗୁଛି ? କିଛି ଅସୁବିଧା ହେଉନି ତ ?'

ନନ୍ଦ କୃତକୃତ୍ୟ ହେଲା ତାଙ୍କ ବ୍ୟବହାରରେ, କହିଲା 'ଖୁବ୍ ଭଲ ଅଛି । ଏଠି ଭାରି ଖୁସି ଲାଗୁଛି ।'

ପ୍ରଭୁପାଦ ମୃଦୁ ହସ ହସି କହିଲେ - 'ଏଇ ଖୁବ୍ ଏବଂ ଖୁସି ପର୍ସିଆନ୍ ଶବ୍ଦ । ଆମ ସଂସ୍କୃତି ଯେମିତି ବହୁ ଆଦାନ ପ୍ରଦାନ, ସଂପର୍କ ସମନ୍ୱୟରେ ପୁଷ୍ଟ, ଆମ ଭାଷା ମଧ ସେହି

ପରି ବାହାର ଜଗତର ବହୁ ଉପାଦାନରେ ସମୃଦ୍ଧ । ଅଭିଧାନମାନଙ୍କରେ ସଂସ୍କୃତ ତତ୍ସମ ତଦ୍ଭବ ସହିତ ବହୁ ଯାବନିକ, ବୈଦେଶି, ଦେଶଜ ଶବ୍ଦ ଦେଖିବେ । ପିଲାମାନଙ୍କୁ ଡ଼ିକ୍‌ସିନାରୀ ବ୍ୟବହାର କରିବା ଶିଖାଉଛନ୍ତି ? ଶିଖାଇବେ, ଇଂରାଜୀ ଏବଂ ଓଡ଼ିଆ ଅଭିଧାନମାନ ଦେଖାଇ, ଅଭିଧାନ ଦେଖିବା ପ୍ରତି ସେମାନଙ୍କର ଆଗ୍ରହ ଓ ଅନୁରାଗ ସୃଷ୍ଟି କରିବେ । ଇଂରାଜୀରେ ଅନେକ ଛାତ୍ରୋପଯୋଗୀ ଅଭିଧାନ ବା Learners dictionary ଅଛି । ଏହା ପୁଣି ବିଭିନ୍ନ ସ୍ତରର ଛାତ୍ରଙ୍କ ପାଇଁ ସ୍ୱତନ୍ତ୍ର ଭାବରେ ପ୍ରସ୍ତୁତ କରାଯାଇଛି । ଓଡ଼ିଆରେ, ମୁଁ ଜାଣିବାରେ ସେପରି ଉଦ୍ୟମ ହୋଇ ନାହିଁ । ମନ କଲେ ଆପଣମାନେ କେତେଜଣ ଶିକ୍ଷକ ମିଶି, ସେପରି ଗୋଟିଏ ଅଭିଧାନ ପ୍ରସ୍ତୁତ କରିପାରିବେ ।' ନନ୍ଦ ସେତେବେଳେ ବି.ଏ. ପରୀକ୍ଷା ପାଇଁ ପ୍ରସ୍ତୁ ହେଉଥିଲା । ସେଦିନ ପ୍ରଭୁପାଦବାବୁ ଖୁସି ହୋଇ ତାଙ୍କୁ କେତେ କଥା କହୁଥାନ୍ତି ।

ନନ୍ଦ କେବଳ ଶୁଣୁଥାଏ । ସେ ନନ୍ଦକୁ ତା ପରୀକ୍ଷା ବିଷୟରେ ପଚରାଉଚରା କଲେ । ବୁଝିଲେ । କେତୋଟି ବହି ବଢ଼ାଇ ଦେଇ କହିଲେ - 'ଆଉ ଯଦି କିଛି ବହି ଦରକାର, ମୋତେ ଜଣାଇବେ । ଆମ ଲାଇବ୍ରେରୀରେ ଆପଣଙ୍କର କାମରେ ଲାଗିବା ଭଳି କିଛି ବହି ମଧ୍ୟ ଅଛି । ଆପଣଙ୍କ ସିନିୟର ଶିକ୍ଷକ ବନ୍ଧୁମାନେ ମଧ୍ୟ ସାହାଯ୍ୟ କରିବେ । ମୁଁ ସେମାନଙ୍କୁ ଏଥିପାଇଁ ଅନୁରୋଧ କରିଛି ।'

'ଅନୁରୋଧ ?' ନନ୍ଦ ଚମକି ପଡ଼ିଲା । ପ୍ରଭୁପାଦ ବାବୁଙ୍କ ଇଙ୍ଗିତ ହିଁ ଏଠାରେ ଆଦେଶ ଭଳି ପାଳିତ ହୁଏ । ସେ ପୁଣି ଏଠି ଅନୁରୋଧ କରିବେ କାହାକୁ ? କିନ୍ତୁ ତାହା ହିଁ ଥିଲା ତାଙ୍କର କାମ କରାଇ ନେବାର ଢ଼ଙ୍ଗ । ସେଦିନର ସେଇ ବ୍ୟବହାର ବି.ଏ. ପାଶ୍ କରିବା ଦିନ ତାଙ୍କର ଆନନ୍ଦ, ତା ପରେ ଓ.ଏ.ଏସ୍. ପରୀକ୍ଷା ଦେବାର ଇଚ୍ଛା ପ୍ରକାଶ କଲାବେଳେ ଉତ୍ସାହ ବାଣୀ, ଜୀବନରେ ପାସୋରି ହେବାର ନୁହେଁ ।

ନନ୍ଦ ଆପଣା ସ୍ମୃତିରେ ବିଭୋର ହୋଇ କେବେ ଧୀରେ ଧୀରେ, କେବେ ପୁଣି ଦ୍ରୁତ ଗତିରେ ସାଇକେଲ ଚଳାଇଥାଏ । ଗୋଟି ଗୋଟି ହୋଇ ତାର ମନେ ପଡ଼ିଯାଉଥାଏ । ତା ଜୀବନର ପ୍ରସ୍ତୁତି ପର୍ବର ଘଟଣାବଳୀ । ଏଉଠୁ ତା ଜୀବନ ନେବାକୁ ଯାଉଛି ଏକ ନୂଆ ମୋଡ଼ । ଆଗରେ ତାର ନୂଆ କର୍ମକ୍ଷେତ୍ରର ଅହ୍ୱାନ ।

## ॥ ୧୬ ॥

ମାକଲେ ସାହେବଙ୍କୁ କଣ ଚିହ୍ନାଇଦେବା ଦରକାର ? ତାଙ୍କ ପୂରା ନାଁ - ଥମାସ ବାବିଙ୍ଗ୍‌ଟନ୍ ମାକଲେ । ସେ ୧୮୩୫ ମସିହାରେ ତାଙ୍କର ଶିକ୍ଷା ଖସଡ଼ା ଦେଇଥିଲେ । ସେହି ଅନୁସାରେ ତାର ପାଞ୍ଚ ବର୍ଷ ବାଦେ ଜିଲ୍ଲା ସଦର ମହକୁମାମାନଙ୍କରେ ହାଇସ୍କୁଲ ବସିଲା । ସେତେବେଳକୁ ଭାରତୀୟ ସମାଜରେମୁରବୀ ସ୍ତରର ଲୋକେ ବୁଝୁଥିଲେ ଯେ, ସେମାନଙ୍କର ତଥା ସେମାନଙ୍କ ପିଲାମାନଙ୍କର ଇଂରାଜୀ ଶିଖିବା ଦରକାର । ନୂଆ ନୂଆ ପାଠମାନ ପଢ଼ିବାକୁ ହେଲେ, ଶାସନ ସହିତ ଯୋଗାଯୋଗ ରଖିବାକୁ ହେଲେ, ଏହି ଭାଷାଟି ଜାଣିବା ଜରୁରୀ । କ୍ରମେ କଲେଜ ଓ ବିଶ୍ୱ ବିଦ୍ୟାଳୟ ଖୋଲିଲା ।

ପ୍ରଥମ ଦଫାରେ କଲିକତା, ମାଡ୍ରାସ ଓ ବମ୍ବେରେ ବିଶ୍ୱବିଦ୍ୟାଳୟମାନ ଖୋଲାଗଲା । ଏଗୁଡ଼ିକ ଲଣ୍ଡନ ବିଶ୍ୱବିଦ୍ୟାଳୟ ଅନୁସରଣରେ ଗଢ଼ାଗଲା । ତାହା ୧୮୫୭ ମସିହାର ଘଟଣା । ଭାରତରେ ବିଜ୍ଞାନ, ବୈଷୟିକ ବିଦ୍ୟାର ପ୍ରସାର ପାଇଁ ଏହି ବିଶ୍ୱବିଦ୍ୟାଳୟଗୁଡ଼ିକର ଅବଦାନ ପାସୋରି ହେବ ନାହିଁ । ଯେମିତି ସଂସ୍କୃତ ଭାଷା ଆମକୁ ଆମ ପରମ୍ପରା ସହିତ ପରିଚିତ କରାଇଛି, ସେହିପରି ଇଂରାଜୀ ଭାଷା ଆମକୁ ଆଧୁନିକ ଜ୍ଞାନ, ବିଜ୍ଞାନ ଓ ବୈଷୟିକ କୌଶଳ ସହିତ ପରଚିତ କରାଇଛି । ଏକଥା ସେତେବେଳର ବୁଦ୍ଧିଜୀବି ଗୋଷ୍ଠୀ ବୁଝିଥିଲେ । ତେଣୁ ସେମାନଙ୍କର ଉତ୍ସାହ, ଉଦ୍ୟମରେ ସ୍କୁଲ କଲେଜମାନ ଖୋଲି ଥିଲା । ଏଥିପାଇଁ ସରକାରୀ ପୃଷ୍ଠପୋଷକତା ମଧ୍ୟ ମିଳିଥିଲା । ଏହା ବ୍ରିଟିଶ ଶାସନ ଅମଳର ଘଟଣା ।

ଭାରତ ସ୍ୱାଧୀନ ହେଲା । ସ୍ୱାଧୀନତା ପରେ ଶିକ୍ଷା ସଂସ୍କାର ପାଇଁ ବହୁ କମିଶନ୍ ବସିଛି । ରିପୋର୍ଟ ବାହାରିଛି । ଶିକ୍ଷା ବ୍ୟବସ୍ଥାର ମୂଳ ଢ଼ାଞ୍ଚାରେ ବହୁ ପରିବର୍ତ୍ତନ ଘଟିଛି । ଆଧୁନିକ ଯୁଗର ଆବଶ୍ୟକତାକୁ ଚାହିଁ ଶିକ୍ଷା ବିଧି, ପାଠ୍ୟ ପୁସ୍ତକ ବଦଳି ବଦଳି ଚାଲିଛି । କିନ୍ତୁ ଅସଲ କଥାଟି ହେଲା- ଭଲ ଶିକ୍ଷକ ବାହାରି ନ ପାରିଲେ କଅଣ ହେବ ?

ନନ୍ଦ ଭାବେ, ଯେମିତି ଭାରତକୁ ସ୍ୱାଧୀନ କରିବା ଲାଗି ଦଳ ଦଳ ହୋଇ ତ୍ୟାଗୀ ପୁରୁଷ ବାହାରି ଆସିଥିଲେ, ସେହିପରି ଆମର ବଂଶଧରମାନଙ୍କୁ ପାଠ ପଢ଼ାଇବା ସଙ୍ଗେ

ସଙ୍ଗେ ଭଲ ମଣିଷ କରି ଗଢ଼ିବା ପାଇଁ ଶିକ୍ଷକତା କରିବାକୁ ଯୁବକମାନେ ବାହାରି ଆସିବା ଉଚିତ । ସଭାପତି ପ୍ରଭୁପାଦ ବାବୁ ତା ମନରେ ଏଭଳି ଭାବନା ସଂଚାର କରାଇଥିଲେ । କିନ୍ତୁ ସେ କଣ କରିବ ?

ପ୍ରଭୁ ପାଦ ବାବୁ ତାଙ୍କର ମତ ଦେଇ ଦେଉଛନ୍ତି ସତ । କିନ୍ତୁ ସେ ଯଦି ପ୍ରଶାସନିକ ସେବାରେ ଯୋଗ ନଦେଇ ଶିକ୍ଷକତାକୁ ବ୍ରତ ଭାବରେ ଗ୍ରହଣ କରିନେବ, ସେ ବୋଧହୁଏ ଅଧିକ ଖୁସି ହେବେ ।

ପ୍ରଧାନ ଶିକ୍ଷକ ଗୋକୁଳି ବାବୁ ଆସିଲେ । ବଡ଼ ଧୀର ଗମ୍ଭୀର ଲୋକ । ନନ୍ଦ ହାତକୁ ଟେଲିଗ୍ରାମ୍‌ଟିଏ ବଢ଼ାଇ ଦେଇ କହିଲେ- 'ଏଇଟି ଏଠାରେ ପହଞ୍ଚିବା ବେଳକୁ ଆପଣ ନଥିଲେ । '

ନନ୍ଦ ଭାବୁଥିଲା, ଟ୍ରେନିଙ୍ଗ୍‌ରେ ଜଏନ୍ କରିବାକୁ ବୋଧହୁଏ ଟେଲିଗ୍ରାମ ଆସିଗଲା । କିନ୍ତୁ ଟେଲିଗ୍ରାମରେ ବାର୍ତ୍ତା ଥିଲା ଅଲଗା ।

ଗୋସେଇଁ ମାର ପାନଖିଆ ପାଟିର ଟହ ଟହ ହସ, ମନ ଖୁସି କଲା ଭଳି ମଜା ମଜା କଥା ମନେ ପଡ଼ିଗଲା । ଯହୁଁ ଯହୁଁ ମନେ ପଡୁଥାଏ ନନ୍ଦର ଛାତି ଭିତରଟା ଆଉଟି ପାଉଟି ହୋଇ ଯାଉଥାଏ । ହାତରେ ଥାଏ ସେଇ ଟେଲିଗ୍ରାମଟି । ଆଖିରୁ ଝରି ଯାଉଥାଏ ଧାର ଧାର ଲୁହ ।

ଗୋକୁଳି ବାବୁ ନନ୍ଦ ପାଖକୁ ଲାଗି ଆସି ତା କାନ୍ଧରେ ହାତ ରଖିଲେ । କହିଲେ - 'ତାଙ୍କ ଲୀଳା ଖେଳା ସରିଲା । ସେ ତାଙ୍କର ମୂଳ ସ୍ଥାନକୁ ଚାଲିଗଲେ । ଆପଣ ମନ ଦମ୍ଭ କରନ୍ତୁ । ଏଇନା ଆପଣଙ୍କ ବାପା ଆପଣଙ୍କୁ ପାଖରେ ଚାହୁଥିବେ । ଦୁଃଖର ଅଥଳ ଦରିଆରେ ଅଣ୍ଡାଳି ହେଉଥିବେ । ତାଙ୍କ ପାଖରେ ଆପଣଙ୍କର ତୁରନ୍ତ ଉପସ୍ଥିତି ଆବଶ୍ୟକ । ସେଠି ପହଞ୍ଚି ତାଙ୍କୁ ଦମ୍ଭ ଦେବାକୁ ହେବ । ଆପଣ କିଛି ଟଙ୍କା ଧରି ଆଜି ଗାଆଁକୁ ଚାଲି ଯାଆନ୍ତୁ । ମୁଁ ସଭାପତିଙ୍କ ପାଖକୁ ଲୋକ ପଠାଇଛି । ସେ କଟକ ନ ଯାଇଥିଲେ ଖବର ପାଇ ଯାଇଥିବେ ।

ପ୍ରଧାନ ଶିକ୍ଷକ ପାଞ୍ଚଶହ ଟଙ୍କା ଦେଇ କହିଲେ, 'ଟିକିଏ ଅପେକ୍ଷା କରନ୍ତୁ ।

ସଭାପତିଙ୍କ କତିରୁ ଲୋକ ଫେରିବା ପରେ ଯାହା ବ୍ୟବସ୍ଥା କରିବା । ସେ ନ ଯାଇଥିଲେ, ତାଙ୍କରି ସାଙ୍ଗରେ କଟକଯାଏ ଚାଲିଯିବେ ।'

ନନ୍ଦକୁ ମିନିଟ୍‌କ ଘଣ୍ଟାଏ ପରି ଲାଗୁଥାଏ । କେତେ ବେଳେ ସଭାପତିଙ୍କ ପାଖୁ ଲୋକ ଫେରିବ, କେତେବେଳେ ବଲାଙ୍ଗୀର ବସ୍ ଧରିବ, ଏଇ ଚିନ୍ତା ଅଥୟ କରୁଥାଏ ।

ପ୍ରଭୁ ପାଦ ବାବୁ ଖବରଟି ପାଇ ବ୍ୟସ୍ତ ହୋଇ ପଡ଼ିଲେ । ତାଙ୍କ ନିଜ ଗୋସେଇଁମାଙ୍କ ଚେହେରା ମନେ ପଡ଼ିଗଲା । ନାତି ନାତୁଣୀଙ୍କ ପାଖରେ ଆଈ, ଅଜା, ଗୋସେଇଁମା, କେତେ ଅନ୍ତରଙ୍ଗ, ସେ ତାହା ଅନୁଭବ କରିଛନ୍ତି । ଏବେ ବି ବୁଢ଼ୀଟିଏ ଦେଖିଲେ, ସେ ତା ଭିତରେ ତାଙ୍କ ନିଜ ଗୋସେଇଁ ମାଆର ଆଖି ଆଉ ଓଠ ଦିଶିଗଲା ଭଳି ଅନୁଭବ କରନ୍ତି । ତା' କଥା ଶୁଣିବାକୁ ଆଗ୍ରହୀ ହୁଅନ୍ତି । ତାଙ୍କର କୋମଳ ହୃଦୟ ନନ୍ଦ ପ୍ରତି ସମବେଦନା ଶୀଳ ହୋଇପଡ଼ିଲା ।

ନନ୍ଦକୁ ପ୍ରକୃତରେ ବେଶୀ ସମୟ ଅପେକ୍ଷା କରିବାକୁ ପଡ଼ିନାହିଁ । ସଭାପତିଙ୍କ ଗାଡ଼ି ଆସି ସ୍କୁଲ ଫାଟକ ପାଖରେ ପହଞ୍ଚିଲା । ନନ୍ଦ ଗାଡ଼ି ପାଖକୁ ଉଦ୍‌ବେଗରସହିତ ମାଡ଼ି ଆସିବା ବେଳକୁ ପ୍ରଭୁପାଦ ବାବୁ ଗାଡ଼ିରୁ ଓହ୍ଲାଇ ଆସି, ତାକୁ କୁଣ୍ଢାଇ ଧରିଲେ । ଦମ୍ଭ ଆଶ୍ୱସାନ ଦେଇ କୁହିଲେ- "ବ୍ୟସ୍ତ ହୁଅନ୍ତୁ ନାହିଁ । ଆପଣ ଏଇ ଗାଡ଼ି ନେଇ ଆପଣଙ୍କ ଘରକୁ ଯିବେ । ଗଲାବେଳେ ମତେ ବାଟରେ କଟକରେ ଛାଡ଼ିଦେଇ ଯିବେ । ଆପଣ ଆଗ ନିଜର ଆବେଗକୁ ଆୟତ୍ତ କରନ୍ତୁ । ସେଠାରେ ପହଞ୍ଚି ଅନ୍ୟମାନଙ୍କୁ ସାନ୍ତ୍ୱନା ଦେବେ । କ୍ରିୟା ଇତ୍ୟାଦିର ବ୍ୟବସ୍ଥା କରିବେ । ଆପେ ସଂବୃତ୍ତ ନ ହେଲେ କିପରି ଆପଣାର ଉପସ୍ଥିତ ଦାୟିତ୍ୱ ସମ୍ଭାଳିବେ ?"

ନନ୍ଦର ବାକ୍‌ସ୍ଫୂର୍ତ୍ତି ହେଲା ନାହିଁ ।

## || ୧୭ ||

କଥାରେ ଅଛି, ଆଜି ମଲେ କାଲିକି ଦୁଇ ଦିନ । ଦଶାହ ପରେ ଲୋକେ କ୍ରମେ ଭୁଲିବାକୁ ଆରମ୍ଭ କରନ୍ତି ।

ଦାଣ୍ଡ ଦୁଆରେ ଓ ବାରି ପଟେ ଛାମୁଣ୍ଡିଆ ବନ୍ଧା ହୋଇଥିଲା । ବିଧି ଅନୁସାରେ ବିଭିନ୍ନଦିନ ଜ୍ଞାତି ଭୋଜନ, ବ୍ରାହ୍ମଣ ଭୋଜନ, ନିକଟ ଓ ଦୂର ସମ୍ପର୍କୀୟ ବନ୍ଧୁ ବାନ୍ଧବ ଓ

ଅତିଥି ଅଭ୍ୟାଗତଙ୍କ ଭୋଜନ ସହିତ ସ୍ୱର୍ଗତ ଆତ୍ମାର ସଦ୍‌ଗତି ପାଇଁ ସଂକୀର୍ତ୍ତନ ହୋଇଥିଲା । ଛାଇ ହେବ ବୋଲି ଛାମୁଣ୍ଡିଆ ଉପରେ ଡ଼ାଳଗୁଡ଼ିଏ ହଣା ହୋଇ ପରାଯାଇଥିଲା । ତାର ପତ୍ର ଗୁଡ଼ିକ ଶୁଖି ଝଡ଼ିବାକୁ ଆରମ୍ଭ କଲେଣି । ପୋତା ହୋଇଥିବା ଖୁଣ୍ଟର କାଠରୁ ବି ପଳଖା ଛାଡ଼ିବ ।

ଘରର ପୁରୁଣା କୋଠିଆ ସପନା ପଚାରୁଛି- 'ଛାମୁଣ୍ଡିଆ ଖୋଲିବ କି ନାହିଁ ।' ନନ୍ଦ ନିଜର ନଣ୍ଡା ମୁଣ୍ଡରେ ହାତ ପାପୁଲି ବୁଲାଉ ଥାଏ । ସପନା ସ୍ୱର ତା କାନରେ ବାଜିଲେ ବି ମସ୍ତିଷ୍କ ଧରି ପାରି ନାହିଁ । କିନ୍ତୁ ତାହା ବାଜିଲା ତା ବାପାଙ୍କ କାନ ଓ ହୃଦୟରେ । ଆଖି ଛଳ ଛଳ । କଣ୍ଠ କମ୍ପିତ । କହିଲେ- 'ହଁ ରେ ଖେଳତ ସରିଗଲା ।'

ବୋଉ ବୋଧ ଦେଉଥାଏ । ବାପାଙ୍କର ଭାଉଜ ଲେଖାହେବେ ଗୁରୁବାରୀ ବୋଉ ବଡ଼ମା । ସେ କହିଲେ- 'ତମ ବୋଉ ସିନା ଛାଡ଼ିଗଲେ, ନନ୍ଦିଆ ବୋଉ ପରା ଅଛି ।'

ଉହ୍ୟ ରହିଲା.... ଖେଳ ସରି ନାହିଁ ।

ନନ୍ଦ ତା ଗୋସେଇଁ ବାପାଙ୍କୁ ଜେଜେ ବୋଲି କହେ । ସେ ସିନା ତାକୁ ଦେଖିଥିଲେ, ନାଁ ଦେଇଥିଲେ, ହେଲେ ନନ୍ଦ ତାଙ୍କ ମୁହଁକୁ ଚିହ୍ନି ମନେ ରଖିବାର ଶକ୍ତି ପାଇବା ଆଗରୁ ସେ ସଂସାର ଛାଡ଼ି ଚାଲି ଯାଇଥିଲେ । ଏଇ ଗୋସେଇଁ ମା, ଯାହାକୁ ସିଏ ଜେଜେମା ବୋଲି ଡ଼ାକେ, ସିଏ ଛାତିକୁ ପଥର କରି ପରିବାରକୁ ତା ମୁରବୀ ପଣରେ ସମ୍ଭାଳି ଆସିଥିଲା ।......

ଜେଜେଙ୍କର ପ୍ରିୟ ଭଜନ ଥିଲା ଚନ୍ଦନ ହଜୁରୀଙ୍କର ଜଣାଣ-

ଚକା ନୟନକୁ ପତିତ କେହି
    ପକାଇ ଖର ନିଶ୍ୱାସ ଚକାଇ
ଡ଼କା ପକାଇ ଗରୁଡ଼ ପଛରେ
    ବକାରୀ ମୋ ଆର୍ତ୍ତ ଶୁଣ ସ୍ୱତ୍ୱରେ ଯେ
        ଡ଼କା ବାଜୁଛି ମହିମାହେ

ଏବଂ ତାର ଆଉ ଗୋଟିଏ ପଦ ଥିଲା -

    ନନ୍ଦ ନନ୍ଦନ ଶ୍ରୀ ଚରଣାର ବିନ୍ଦେ
        ଚନ୍ଦନ ହଜୁରୀ ଭଣେ ଯେ...

ଏହି ବଡ଼ମାଙ୍କ ବର ଗୁରୁବାରୀ ବାପା, ସେଇ ଜଣାଣଟିକୁ ବଡ଼ ପ୍ରାଣ ସ୍ପର୍ଶୀ ସ୍ୱରରେ ଗାଉଥିଲେ । ଢେଢେ ତାଙ୍କୁ ପାଖରେ ବସାଇ ତାଙ୍କରିଠାରୁ ଏ ଜଣାଣଟି ଶୁଣନ୍ତି ଏବଂ ନିଜେ ବି ଗଦଗଦ ହୋଇ ଗାଆନ୍ତି । ସେଇ ଢେଢେ ତା ନାଁ ଦେଇଥିଲେ- ନନ୍ଦ ନନ୍ଦନ । ଡ଼ାକ ନାଁ-ନନ୍ଦ । ଅତି ସ୍ନେହରେ କିଏ କିଏ ଡ଼ାକନ୍ତି - ନନ୍ଦିଆ । ଗୁରୁବାରୀଙ୍କ ଘରର ଅବସ୍ଥା ସ୍ୱଚ୍ଛଳ ନ ହେଲେ ବି, ସେମାନେ କାହା ଦୁଆରେ ହାତ ପତାଇ ନାହାନ୍ତି । ନନ୍ଦଙ୍କ ପରିବାର ସହିତ ସେମାନଙ୍କର ମନ ମିଳେ । ଦି ଚାରିଟା ଘର ଛାଡି ତାଙ୍କ ଘର । ସୁଖ ଦୁଃଖରେ ଆସି ଠିଆ ହୁଅନ୍ତି ଗୁରୁବାରୀ ବୋଉ ବଡ଼ମା ।

ସକାଳେ ବୋଉକୁ ସଙ୍ଖୋଳିବାକୁ ଆସି ଗୁରୁବାରୀ ଓ ତା ବୋଉ ଅନେକ ସମୟ ରହିଗଲେ । ତାଙ୍କରି ଆଗରେ ନିଜର ମନକଥା କହି କହିକା ବୋଉ କାନ୍ଦୁଥିଲା - "ଶାଶୁବୋଲି ଆକଟ କରିଛନ୍ତି ସିନା, ଦିନୁଟିଏ ହେଲେ ମୁରବୀପଣ ଦେଖାଇ ଟାଣ କଥା କହି ନାହାନ୍ତି । ନନ୍ଦଟିକୁ ମୁଁ ଗର୍ଭରେ ଧରିଥିଲି ସତ, କିନ୍ତୁ କୋଳରେ ଧରି ବଢ଼ାଇଥିଲେ ମୋର ଏଇ ଦେବୀ ଭଳିଆ ଶାଶୁ ! ଆଖି ବୁଜିବା ଯାଏ ଏଙ୍କ ହାତଟିକୁ ଧରି ଥାଆନ୍ତି, ନନ୍ଦକୁ ଖୋଜୁଥାଆନ୍ତି.......।"

ବାପାଙ୍କ ଭଳି ବଳିଷ୍ଠ, ଦମ୍ଭ ମଣିଷ ଦବି ଯାଇଛନ୍ତି । କାନ ପାଖକୁ ଓ ମୁଣ୍ଡ ଆଡ଼କୁ ଯେଉଁ ବାଳ କେରାକ ଥିଲା, ସେତକ ଏବଂ ତା ସହିତ ତାଙ୍କ ଦମ୍ଭ ଓ ପୌରୁଷର ପ୍ରତୀକ ନିଶ ଦିପଟ ତୁଠରେ ପକାଇ ଦେଇଛନ୍ତି । ପୁତ୍ର କ୍ରିୟାଧିକାରୀ । ସେତିକି ଛଡ଼ା କଣ ଅଧିକ ବା ସେ କରିପାରିବ, ତାର ଦିବଂଗତ ମାତା ପିତାଙ୍କ ପାଇଁ ?

ନନ୍ଦ, ତା ବୋଉଙ୍କ ପାଖରେ ବସି ପଡ଼ି କହିଲା - 'ବୋଉ ମ, ମୋର ପୋଷ୍ଟିଂ ହେଲା ପରେ ତୁମେ ଦୁହେଁ ମୋ ପାଖରେ ରହିବ । ଆମେ ଚାଲିଯିବା ସେଠିକି ।' ବାପାଙ୍କ କାନରେ ତା- କଥା ପଡ଼ିଲା । ଶୁଣିଲେ । ଅନାଇଲେ । ପଚାରିଲେ - 'ଘର ?'

ଘର ଚାବି ପଡ଼ିବ । ଜଗୁଆଳି ଜଗିବ । ବିଲ ଧୂଳି ଭାଗ ଲାଗିବ । ଯେଉଁମାନଙ୍କ ଘରେ ସମସ୍ତେ ବିଦେଶରେ ଅଛନ୍ତି, ସେଇଆ ହୋଇଛି । ନନ୍ଦର ବାପା ଯେ ଏକଥା ଜାଣି ନାହାନ୍ତି, ତା ନୁହେଁ । ଯେଉଁ ଘର ତାଙ୍କୁ ପୁରୁଷ ପୁରୁଷ ଧରି ଆଶ୍ରା ଦେଇ ଆସିଲା । ପରିଚୟ ଦେଲା, ସେଇ ଘରକୁ ଛାଡ଼ି ବିଦେଶରେ ପୁଅ ପାଖରେ ରହିବା ଥିଲା ତାଙ୍କ ପାଇଁ କଳ୍ପନାତୀତ । ଅଥଚ ଏଇ ବାପା ପୂର୍ବରୁ ବେଳେ ବେଳେ ବୋଲୁଥିଲେ-

ଘର ବୋଲି ଅର୍ଜିଛୁ ଯେତେ ପଦାର୍ଥ
ଘଟ ଛୁଟିରେ ତୋତେ ବୋଲିବେ ଭୂତ...... ରେ

ନନ୍ଦ ଭାବୁଥାଏ-ମାୟାର ବଳ କେତେ, କିଏ କଳନ ଂ ? ସତେ, ଏଇ ମାୟା, ହିଁ ଯେପରି ପାର୍ଥିବ ଜଗତ ସହିତ ମଣିଷକୁ ବାନ୍ଧି ଧରିଛି ! ମଣିଷକୁ ଖେଳାଉଛି ।

## ॥ ୧୮ ॥

ରାତିରେ ବେଶ୍ ଅସରାଏ ବର୍ଷା ହୋଇଗଲା । ନନ୍ଦ ଶୋଇଥିଲା । ନିଦ ଭାଙ୍ଗିବା ବେଳକୁ ବାହାରଟା ଫର୍ଚ୍ଚା ଦିଶୁଥାଏ । ନିଜ ଦେହର ଆବରଣକୁ ନିରେଖିଲା । କେତେବେଳେ ବେଡ୍ ସିଟ୍‌ଟା ଘୋଡ଼େଇ ହୋଇ ପଡ଼ିଛି । ହସ ମାଡ଼ିଲା । ସେଇଟା ଦେହ ଉପରୁ ଧୀରେ କାଢ଼ି ଦେଇ ଖଟର ଗୋଟିଏ କରକୁ ଆଡ଼େଇ ଦେଲା । ଉଠିଗଲା ବାଥ୍‌ରୁମ୍‌କୁ । ଗୀତ ପଦିଏ ଗୁଣୁ ଗୁଣୁ କରୁଥିବା ବେଳେ ମନେ ପଡ଼ି ଯାଉଥାଏ ଛାଡ଼ିଆସିଥିବା କର୍ମକ୍ଷେତ୍ର ଓ ପିଛିଲା ଦିନର ସ୍ମୃତି । କଷ୍ଟରେ କଟିଥିବା ଦିନଗୁଡ଼ିକ ସହିତ ପଲ୍ଲୀଶ୍ରୀ ଶିକ୍ଷା ନିକେତନରେ ବର୍ତ୍ତମାନ ଜୀବନର ପ୍ରସ୍ତୁତି ପର୍ବର ଅନୁଭୂତି ମିଶି ଯିବାରୁ ମାନସ ପଟରେ ଇନ୍ଦ୍ରଧନୁର ଶୋଭା ସଂଚରି ଆସୁଥାଏ ।

ନନ୍ଦ ବାହାରକୁ ଅସିଲା । ବସିଲା ଡ଼ାକ ବଙ୍ଗଳାର ଲନ୍‌ରେ । ଚାରିପଟେ ସୁନ୍ଦର ସୁନ୍ଦର ନାନା ରଙ୍ଗର ଫୁଲ ବୁଦା । ରାତିକ ଭିତରେ ପାହାଡ଼ ଓ ପୃଥିବୀ ଗାଧୋଇ ପଡ଼ିଛନ୍ତି । ସକାଳକୁ ଦିଶୁଛନ୍ତି ବେଶ୍ ପ୍ରଫୁଲ୍ଲ, ସତେଜ ।

ଏ ପଟେ ଉଚ୍ଚ ଉଚ୍ଚ କୋଠାଘର । ସାମ୍ନାରେ ତାର ଧାଡ଼ିଏ ଧାଡ଼ିଏ ଦେବଦାରୁ ଗଛ । ଘରଗୁଡ଼ାକ ଡ଼ାକ ବଙ୍ଗଳାର ପାଖା ପାଖି । ଏପଟୁ ସୂର୍ଯ୍ୟ ଉଦୟଟା ଉପଭୋଗ କରିହେବ ନାହିଁ । ନନ୍ଦ ଚଉକି ସହିତ ମୁହଁ ବୁଲାଇ ନେଲା ଅନ୍ୟ ଦିଗକୁ ।

ପାହାଡ଼ଟା ଦିଶୁଛି ହାତୀଟାଏ ଗୋଡ଼ଭାଙ୍ଗି ବସିଲା ପରି । ତା ପାଖକୁ ବେଶ୍ କିଛି ବ୍ୟବଧାନରେ ଆଉ ଗୋଟିଏ ପାହାଡ଼ । ଦୁଇ ପାହାଡ଼ ମଝିରେ ଉଠାଣି ଗଡ଼ାଣି ଥିବା ରାସ୍ତାଟିଏ ପଡ଼ିଛି । ଆର ପଟେ ପୁରୁଣା ସହର । ଲୋକେ କହନ୍ତି-ଗଡ଼ । ଏପଟକୁ ସରକାରୀ ଅଫିସ । ଅମଲା ଓ ଅଫିସରମାନଙ୍କ ଘର । ଡ଼ାକ୍ତର ଖାନା, ସ୍କୁଲ, ଥାନା, ଦୋକାନ ବଜାର ସବୁ ଏଇ ପଟେ । ଏ ପାଖରେ ପାର୍କଟିଏ ବି ଅଛି । ସାମ୍ନାରେ ତାର ସ୍କୁଲ କୋଠା ।

ନନ୍ଦ କାଲି ସେଇ ରାସ୍ତାରେ ପୁରଣା ଗଡ଼ ପଟୁ ଏଠାକୁ ଆସିଥିଲା । ପାର୍କ ପାଖରେ ଗାଡ଼ିଟି ଅଟକାଇ ଓହ୍ଲାଇ ଥିଲା କିଛି ସମୟ ପାଇଁ । ଡ୍ରାଇଭରକୁ ପଠାଇଥିଲା କେତୋଟି ଦରକାରୀ ଜିନିଷ କିଣି ଆଣିବା ଲାଗି ।

ସ୍କୁଲ ହତାଟି ପ୍ରଶସ୍ତ । ଉଚ୍ଚା ଓ ବଡ଼ ବଡ଼ ଘର । ରଜାଙ୍କ ଅମଳର କୋଠା । ଶେଷ ରଜାଙ୍କ ପ୍ରଥମ ସନ୍ତାନର ନାମରେ ନାମିତ । ନନ୍ଦକୁ ଖୁସି ଲାଗିଲା । ଯାହା ହେଉ ପୁଅ ନାଁରେ ବାପ ସ୍କୁଲଟିଏ ବସାଇଛି । କି ବାତ୍ସଲ୍ୟ ! କିନ୍ତୁ ପରେ ଯାହା ଶୁଣିଲା, ସେଥିରେ ତା ମନ ବିରସ ହୋଇଗଲା । ବାପ ପୁଅଙ୍କର ପଡ଼ୁ ନାହିଁ । ରାଜା ରାଣୀଙ୍କ ଭିତରେ ଅପଡ଼ । ମକଦ୍ଦମା ଚାଲିଛି କୋର୍ଟରେ ।

"ମାଳି, ଏଇ ପାହାଡ଼ରେ ଝରଣା ଥିବ ତ ?" ନନ୍ଦ ପଚାରିଲା"

'ଆଜ୍ଞା ହଜୁର' - ନନ୍ଦର ଆଗ୍ରହ ମୁତାବକ ଉତ୍ତର ଦେଲା ଲୋକଟି ।

ସେଇ ଜଣେ ଲୋକ ଡ଼ାକ ବଙ୍ଗଳାର ମାଳି ଓ ଚଉକିଦାର ଦାୟିତ୍ୱ ତୁଲାଏ । ପୁଝାରୀ ଆସି ନଥିଲେ ଚା, ବ୍ରେକ୍ ଫାଷ୍ଟ ବି ତିଆରି କରି ପାରେ । ବାବୁଙ୍କ ସ୍ୱଭାବ ତା ମନକୁ ବେଶ୍ ପାଇଛି ।

ନନ୍ଦ କଣ ଗୋଟାଏ କହିବ ବୋଲି ଭାବୁଥିଲା । କହିଲା ନାହିଁ । କେବଳ ଚାହିଁ ରହିଥିଲା ପାହାଡ଼ ଓ ଆକାଶକୁ ।

ସକାଳର ଅନ୍ୟ ନାମ- ବାସର ମୁଖ । ତାହା ଦିଶୁଥିଲା ପ୍ରସନ୍ନ ଓ ପରିଛନ୍ନ । ସେ ତାକୁ ଉପଭୋଗ କରୁଥାଏ ।

"-ଚା ଆଣିବି ? ଲୋକଟି ପଚାରିଲା ।

ନନ୍ଦ ମୁହଁରୁ ବାହାରି ଆସିଲା ଅସ୍ତିବାଚକ ଉଚ୍ଚାରଣ । ଲୋକଟି ପ୍ରଶ୍ନ ପଚାରିବା ଆଗରୁ ଉତ୍ତରଟି ଅନୁମାନ କରି ନେଇଥିଲା । ସେଇ ଅନୁସାରେ ରୋଷେଇ ଘରେ ସବୁ ପ୍ରସ୍ତୁତ ଅଛି ।

ସାମ୍ନାରେ ଟି' ପଏଟି ପୋଛି ପାଛି ଥୋଇ ଦେଇ ଯିବା ବେଳେ ସିନା ନନ୍ଦ ନଜର କରି ନଥିଲା, କିନ୍ତୁ ଟ୍ରେ ରଖାଯିବା ବେଳେ ଲୋକଟିର ଯତ୍ନ ଓ ତତ୍ପରତା ଲକ୍ଷ୍ୟ କଲା । ପଟ୍‌ରେ ଚିନି, କ୍ଷୀର ଓ କେଟିଲ୍‌ରେ ଚା ଲିକର, କପ ସସର୍ ଗୋଟିଏ କରକୁ ରଖିଛି । କ୍ଷୀର

ଉଷୁମ ଅଛି । କିନ୍ତୁ ଛୋଟ ଶଙ୍ଖ କେଟିଲ୍‌ରୁ ବାମ୍ପ ବାହାରୁଛି । ଗରମ ଥିବ । ଭଲ ।

ଲୋକଟି କିଛି ଆବଶ୍ୟକତା ଅନୁମାନ କରି ଦେଇ, ଧାଇଁ ଯାଇ ଆଉ ଗୋଟିଏ ଟି' ପଏ ନେଇ ଆସିଲା ।

ଚା'ନେଉ ନେଉ ନନ୍ଦ ପଚାରିଲା- 'ଏଇ ପାହାଡ଼ ଉପରକୁ ଯିବା ଲାଗି ପାହାଚ ଅଛି ?'

'ହଜୁର୍ ଯିବେ ?'

'ଭାବୁଛି ।'

ନନ୍ଦର ଆଗ୍ରହ ଜାଣି, ଚଉକିଦାର କହିଲା- 'ଏବେ ଗଲେ ଆସିବା ବେଳକୁ ଖରା ଟାଣ ହୋଇଯିବ । ଖାଇବା ବେଳ ଉବେଳ ହେବ । ଯଦି ଯିବେ, ଉପର ଓଳି, ଖରାଟା ଟିକିଏ ମନ୍ତୁରି ଆସିବା ବେଳକୁ ବାହାରି ପଡ଼ିବେ । ସୁବିଧା ହେବ । କହିବେ ଯଦି ସାଙ୍ଗର ଜଣେ ଦି ଜଣ ଯିବୁ ।'

ନନ୍ଦ ନୀରବରେ କିଛି ଭାବୁଥିଲା । ଚଉକିଦାର ସନ୍ତର୍ପଣରେ କହିଲା - 'ଭୋର ସମୟରୁ ମାଡ଼ାମ୍ ଓ ତାଙ୍କ ଭଉଣୀ ପାହାଡ଼ ଉପରକୁ ଯାଇଛନ୍ତି ।'

'କିଏ ?' ନନ୍ଦର ସ୍ୱରରେ ଥିଲା ଅନ୍ୟ ମନସ୍କତା ।

'ଏଇ ହଜୁର ଏଠା କଲେଜକୁ ଜଣେ ମାଡ଼ାମ୍ ଆସିଛନ୍ତି । ତାଙ୍କର ଏଇଠି ଗୋଟିଏ ସୁଟ୍ ରିଜର୍ଭ ହୋଇଛି । ସାଙ୍ଗରେ ତାଙ୍କ ସାନ ଭଉଣୀ ଆସିଛନ୍ତି । ବାହାରେ ଭଡ଼ାଘର ଠିକଣା କରାହୋଇଛି ଯେ, ଧଉଳା ଧଉଳି ଚାଲିଛି । ସରିଗଲେ, ଦୁଇଦିନ ବାଦେ ଯିବେ '- ଚଉକିଦାର ବର୍ଣ୍ଣନା କଲା ।

ନନ୍ଦ ଏତେ ବର୍ଣ୍ଣନା ଶୁଣିବାକୁ ଚାହୁଁ ନଥିଲା । କିନ୍ତୁ ବଙ୍ଗଳାର ଆଉ ଗୋଟିଏ ସୁଟ୍‌ରେ ଯେ କିଏ ସବୁ ଅଛନ୍ତି, ତାହା ସେ ଅନୁମାନ କରିଥିଲା । ମାତ୍ର ସେମାନଙ୍କୁ ଭଲ ଭାବରେ ଦେଖି ନଥିଲା । କିଛି ଜାଣି ବି ନଥିଲା ସେମାନଙ୍କ ସମ୍ପର୍କରେ ।

ଜଣେ କୃଷ୍ଣ ଓ ଖର୍ବକାୟ ଲୋକ ପହଞ୍ଚିଲା । ନନ୍ଦକୁ ଦେଖି ସଲାମ୍ କଲା । ଚଉକିଦାରକୁ କଣ ସବୁ ଫୁସ୍‌ଫୁସ୍ ସ୍ୱରରେ ପଚାରିଲା । କିନ୍ତୁ ଚଉକିଦାର ବଡ଼ ପାଟିରେ ଉତ୍ତର ଦେଲା- 'ସେମାନେ ବଡ଼ି ଭୋଅରୁ ପାହାଡ଼ ଉପର ଝରଣାକୁ ଗଲେଣି କି କଣ ?'

ନନ୍ଦ ପଚାରିଲା- 'କଣ ହେଲା ?'

ଆଗନ୍ତୁକ ଲୋକଟା କହିଲା- 'ନାଇଁ ସାର୍, ଡ଼ି.ଏଫ.ଓ. ସାହେବଙ୍କ ବନ୍ଧୁ ଲୋକ ଏଠି ଅଛନ୍ତି । ସେମାନେ ସକାଳେ ପାହାଡ଼ ଆଡ଼େ ବୁଲି ଯିବାକୁ ମନ କରିଥିଲେ । ସାହେବ ମୋତେ ପଠାଇଥିଲେ, ସେମାନଙ୍କୁ ବୁଲାଇ ଆଣିବାକୁ । ଆଜି ଛୁଟି ତ, ସାହେବଙ୍କ ଘରେ ସେମାନଙ୍କର ଖିଆପିଆ ଲାଗି ଡ଼ାକରା ଅଛି ।'

ଚଉକିଦାର କହିଲା-'ସାର୍ ଇଏ ଉପରକୁ ଯିବ । ଆପଣ ଯଦି ଯିବେ, ଇଆ ସାଙ୍ଗରେ ଯାଆନ୍ତୁ । ବୁଲାଇ ଆଣିବ । ଇଏ ଆମ ନିଜର ଲୋକ, ହଜୁର ।'

ନନ୍ଦ ସେଇ ଲୋକଟିକୁ ଅନାଇଲା । ଆଦିବାସୀ ହେବ ବୋଧହୁଏ । ବଡ଼ ଭଦ୍ର ଓ ତତ୍ପର ସ୍ୱଭାବର ମଣିଷ । ସେ ନନ୍ଦକୁ କହିଲା 'ସାର୍, ପାଗ ଭଲ ଅଛି । ଯିବେ ତ ଆସନ୍ତୁ ।'

ନନ୍ଦ ପଚାରିଲା 'ସେଠି କିଛି ମନ୍ଦିର ଇତ୍ୟାଦି ଅଛି ?' ସେ କାହିଁକି ଏମିତି ପଚାରିଲା କେଜାଣି ।

ଦୁଇଜଣଯାକ ଉତ୍ତର ଦେଲେ - 'ହଁ ଆଜ୍ଞା ।' କିନ୍ତୁ ଚଉକିଦାର ଆବୁଡ଼ା ପଡ଼ି କହିଲା- 'ବଡ଼ ପ୍ରତ୍ୟକ୍ଷ ଠାକୁରାଣୀ । ହଜୁର ନିଶ୍ଚେ ଦର୍ଶନ କରିବେ । ପୂଜକ ଥାଉ ନଥାଉ ପରୁଆ ନାହିଁ । ନିଜେ ପୂଜା କରିଦେବେ ।'

ନନ୍ଦ ଗାଧୋଇ ନଥିଲା । ତେଣୁ ଟିକିଏ ଇତଃସ୍ତତଃ ହେଲା । ଚଉକିଦାର ବୁଝିଗଲା । କହିଲା- 'ହଜୁର, ଆଉ ସବୁ ନିତ୍ୟକର୍ମ ସାରି ଦିଅନ୍ତୁ । ସେଇଠି ଖାଲି ଗାଧୋଇବେ । ସବୁ ସୁବିଧା ଅଛି । ତଉଲିଆଟାଏ, ଲୁଙ୍ଗିଖଣ୍ଡେ ନେଇଗଲେ ଯଥେଷ୍ଟ । ଇଏ ଆଜ୍ଞା ଧରିନେବ, ଓଦା ଲୁଗା ବି ନେଇ ଆସିବ ।'

ସେ ଲୋକଟି ଟିକିଏ ଛେପ ଢ଼ୋକି ହଁ କଲା । ନନ୍ଦ ତାହା ଲକ୍ଷ୍ୟ କରି ନଥିଲା ।

ବଣ ପହାଡ଼ର ଶୋଭା ବଡ଼ ମନୋରମ । ନନ୍ଦ ସେହି ନିସର୍ଗ ଶୋଭା ଦେଖି ଦେଖି ପାହାଡ଼ ଚଢୁଥାଏ । ପାହାଡ଼ର ମଝା ମଝି ଗାଧୁଆ କୁଣ୍ଡ । କୁଣ୍ଡ ସିନା ନାଁ, ଛୋଟ ପୋଖରୀଟିଏ । ଝରଣାରୁ ପାଣି ଆସି ସେଥିରେ ପଡୁଛି । ତା ଉପରେ ଆଉ ଗୋଟିଏ କୁଣ୍ଡ ଅଛି । ସେଇଟି ସାନ । ସେଠିକି ପୂଜକ ଛଡ଼ା ଆଉ କେହି - ଯାଆନ୍ତି ନାହିଁ । ତା ପାଣି ଠାକୁରାଣୀଙ୍କ ମାଜଣା, ଭୋଗ ରାଗରେ ଲାଗେ ।

ନନ୍ଦ ସହିତ ସେହି ଖର୍ବକାୟ ଲୋକଟି ଥାଏ । ସେ ସେହି ପାହାଡ଼ର ଗାଧୁଆ କୁଣ୍ଡର ବର୍ଣ୍ଣନା ଓ ଠାକୁରାଣୀଙ୍କ ମହିମା କଥା କହି କହି ଚଢୁଥାଏ ଉପରକୁ ଉପରକୁ । ଗୋଟିଏ ଜାଗାରେ ଦି ଚାରୋଟି ସୁନାରୀ ଓ ଗୋଟିଏ ବଡ଼ ପଳାସ ଗଛ ପଡ଼ିଲା । ସେଇ ଅରାକ ସମତଳ । ଦି ଖଣ୍ଡ ପଥର ଆବଖାବୁଆ ହୋଇ ଲମ୍ବିଯାଇଛି, ଗଛ ଗୁଡ଼ିକର ମୂଳେ ମୂଳେ । ପାଖରେ କୋଚିଲା କି ଧଳାଙ୍ଖୁ ଗଛ କୋଟୋଟି । ସେପଟ କଡ଼କୁ ବଡ଼ ଯାମୁ ଗଛଟାଏ । କଳା ମୁଚୁ ମୁଚୁ ପାଚିଲା କୋଳି ଖୁନ୍ଦି ହୋଇ ଯାଇଛି । ଡ଼ାଳରେ ଭଦଭଦଳିଆ ଚଢ଼େଇଟିଏ ବସିଥିଲା । କୁଆଡୁ ଆଉ ଗୋଟିଏ ସୁନ୍ଦର ଚଢ଼େଇ ତା ସାମ୍ନାରେ ଉଡ଼ିଗଲା । ନନ୍ଦଟିକିଏ ଛିଡ଼ା ହୋଇଗଲା, ଭଦଭଦଳିଆଟି ବି ତା ଆଡ଼କୁ ଅନାଇ ଦେଇ ଉଡ଼ିଗଲା ।

ନନ୍ଦ ସେଇଠି ଗୋଟିଏ ପଥର ଉପରେ ବସି ପଡ଼ିଲା । ଜଗ ମୋହନ ରାମାୟଣରେ ବର୍ଣ୍ଣନା ଅଛି, ହନୁମାନ ବ୍ରାହ୍ମଣ ରୂପ ଧରି ରାମଙ୍କୁ ଭେଟିବାକୁ ଆସି ଦେଖିଲେ ଯେ, ଦୁଇ ଭାଇ ରାମ ଓ ଲକ୍ଷ୍ମଣ  ଗୋଟିଏ ଜାମୁଗଛ ମୂଳେ ବସିଛନ୍ତି । କିନ୍ତୁ ନନ୍ଦ ବସିଥିଲା ଗୋଟିଏ ସୁନାରୀ ଗଛ ପାଖରେ, ସାଙ୍ଗରେ ଆସିଥିବା, ସେଇ କୃଷ୍ଣବର୍ଣ୍ଣର ଖର୍ବକାୟ ଲୋକଟି, ତା ମନକୁ ମନ ଜାମୁ ଗଛରେ ଚଢ଼ି କିଛି କୋଳି ତୋଳିଲା । ସେତକ ଗୋଟିଏ ପତ୍ର ଦନାରେ ଆଣି ନନ୍ଦକୁ ଦେଲା । କହିଲା - 'ଆଜ୍ଞା ଏଇ ଗଛର ଜାମୁକୋଳି ଭାରି ସୁଆଦିଆ' । ନନ୍ଦ ମୃଦୁ ହସରେ ସନ୍ତୋଷ ପ୍ରକାଶ କଲା । ଲୋକଟି କଣ କିଛି କହିବ କହିବ ଲାଗୁଥିଲା ।

ନନ୍ଦ ପଚାରିଲା-'କଣ କହୁଛ ?'

'ସାର୍ ଆପଣ ଏଇଠି ବସି ଥାଆନ୍ତୁ କି, ମୁଁ ଟିକିଏ-ମାଆମାନେ କୁଆଡ଼େ ଗଲେ ତଲାସି ଦେଇ ଆସେଁ ।' ଲୋକଟି ଗମନୋଦ୍ୟତ, ଅଥଚ ଅନୁମତି ମାଗୁଥାଏ !

ନନ୍ଦ  'ଏକାନ୍ତ' ଚାହୁଁଥିଲା । ଆସିବା ବେଳେ ତ ବାଟ ଦେଖି ନେଇଛି । ଇଆର ଆବଶ୍ୟକତା ବା କଣ ? କହିଲା- 'ହଉ, ତମେ ଯାଅ । ମୁଁ ଏକା ଏକା ଫେରିବି । କିଛି ସମୟ ବୁଲା ବୁଲି କରିବାକୁ ମନ ହେଉଛି । ମୋ ପାଇଁ ବ୍ୟସ୍ତ ହେବ ନାହିଁ । ମୁଁ ବି ବଣ ପାହାଡ଼ ଅଞ୍ଚଳରେ ବଢ଼ିଛି । ଆରାମରେ ଏକା ଏକା ଫେରି ପାରିବି ।' ଲୋକଟି ନମସ୍କାର କରି ବାହୁଡ଼ି ଗଲା ।

ନନ୍ଦ ଗୋଟାଏ ବଡ଼ ପଥର ଖଣ୍ଡ ଉପରେ ବସି ଗୁଣୁ ଗୁଣୁ ହୋଇ କଣ ସବୁ ଗାଉଥାଏ...........

କିଛି ସମୟ ଅନ୍ତେ ଲୋକଟି ଫେରି ଆସିଲା । କହିଲା- 'ସାର୍ ସେମାନେ ବି ପରେ ଯିବେ ବୋଲି କହି ମତେ ବିଦା କରିଦେଲେ । ତେଣେ ସାହେବ ଡକେଇଥିବେ । ଗାଡ଼ି ଆସି ସେମାନଙ୍କୁ କୋଠିକି ନେବ ।' ସେ ଏତକ କହି ନମସ୍କାର କରି ଯେଉଁ ବାଟେ ବାଟେ ଆସିଥିଲା, ସେଇବାଟେ ବାଟେ ଧୀରେ ଧୀରେ ପାଦ ଚିପି ଚିପି ଓହ୍ଲାଇଗଲା ।

'ଇଏ କୁଆଡ଼େ ମୋ ଗାଧୁଆ ସରିବା ଯାଏ ଅପେକ୍ଷା କରି, ପୁଣି ମୋ ଓଦା ଲୁଗା ଧରି ପଛେ ପଛେ ଚାଲି ଥାଆନ୍ତା ! କି ବୁଦ୍ଧି ଓ ଅନୁମାନ ସେ ଚଉକିଦାରର !' ଭାବୁ ଭାବୁ ହସିଦେଲା ନନ୍ଦ । ଯାଉ ପଛେ ସିଏ, ବହୁଦିନ ପରେ ଟିକିଏ ମୁକ୍ତ ପରିବେଶ ଓ ଖୋଲାମନ ପାଇଛି ।

କୋଉଠୁ ଗୋଟିଏ ବଣୁଆ ଫୁଲର ସୁନ୍ଦର ବାସ୍ନା ଆସୁଥାଏ । କଣ୍ଟା ଫିରିକି ହେବ କି କଣ । ଗଛ ଲତା ଗୁଳ୍ମଗୁଡ଼ିକର ଫୁଲ, ପତ୍ର କାହାରି କାହାରି ଫଳର ରଙ୍ଗ ମନକୁ ରଙ୍ଗିନ୍ କରିଦେଉଥାଏ । ପାଗଟା ବଡ଼ ମୁଲାୟମ୍ ଥାଏ । ମନ ଭିତରେ ଖେଳୁଥାଏ ଅପୂର୍ବ ଫୂର୍ତ୍ତି ।

ତଳେ ରାଜବାଟିର ଘରଦ୍ୱାରସବୁ ଛୋଟ ଛୋଟ ଦିଶୁଥାଏ । ନନ୍ଦ ଅର୍ଦ୍ଧ ଭଗ୍ନ ରାଜବାଟି ଆଡ଼କୁ ଅନାଇଲା । ସତେ ଯେପରି କି ସମୟ ତାର ଦର୍ପକୁ ଯାକିଯୁକି ଛୋଟ କରି ଦେଇଛି । ଆପଣା ଦୁଃଖରେ ବତୁରି ବତୁରି ମିଳେଇ ଯାଉଛି, ତାର ଅବଶିଷ୍ଟ ସ୍ଥିତି । ଦିନେ କେତେ ରଜା, ରାଣୀ, ରାଜବାଳାଙ୍କର ମନ ଉଛୁଳା ହସ ଓ ଲୀଳା ଖେଳାରେ ମୁଖରିତ ହେଉଥିବ ଏଇ ରାଜବାଟି । କେତେ ରାଜକୁମାର, ରାଜ ପୁରୁଷ ଓ ସାମନ୍ତମାନଙ୍କର ଗତି ଦୁର୍ଗତି ଦେଖିଥିବ ଏଇ ରାଜବାଟି । ଆଜି ବି ହୁଏତ ଏହାର କୌଣସି ଅରମା ଅଂଶରେ ଥିବେ ବୁଢ଼ୀ, ଦରବୁଢ଼ୀ ଦାସୀ ପରିବାରି, ଯେଉଁମାନେ କି ଏକଦା ରାଣୀଙ୍କର ପରିଚର୍ଯ୍ୟା ଓ ରାଜାଙ୍କର ମନୋରଞ୍ଜନ କରୁଥିବେ ନିଜ ରୂପ ଲାବଣ୍ୟ ଘେନି । ଏବେ ହୁଏତ ବୁଢ଼ା ରାଜା, ତାଙ୍କର ଅଳ୍ପ ଅନୁଗତଙ୍କୁ ଧରି ଦୁଃଖରେ କାଳ କାଟୁଥିବେ । ରହୁଥିବେ ଏହାର କୌଣସି ଏକ କୋଠରୀରେ । ସ୍ତ୍ରୀ ଓ ପୁଅଙ୍କ ମନୋଭାବ ତାଙ୍କୁ କେବେ କେବେ ଅବସନ୍ନ ଅଥବା ଉତ୍କ୍ଷିପ୍ତ କରୁଥିବ । ବିତିଲା ଦିନର କଥା ମନେ ପକାଇ ପଲଙ୍କ ବାଡ଼କୁ ଆଉଜି ପଡୁଥିବେ ।

ନନ୍ଦର ଗୀତ ବୋଲିବାକୁ ମନ ହେଲା । ତାର ଗୁଣୁ ଗୁଣୁ ସ୍ୱର କ୍ରମେ ସ୍ପଷ୍ଟ ଓ ମଧୁର ହେଲା ।

ଶ୍ରଦ୍ଧା ଓ ଶ୍ରୁତି ଗାଧୁଆ କୁଣ୍ଡରେ ମନବୋଧ କରି ଗାଧୋଉଥିଲେ । ପବନରେ

ଭାସି ଆସୁଥିବା ଗୀତର ସ୍ୱର ସ୍ପଷ୍ଟତର ହେଲା । ସେମାନଙ୍କ କାନରେ ବାଜିଲା । ଦୁହେଁ ସଂଯତ ଓ ସତର୍କ ହୋଇଗଲେ । ଗାଧୁଆ ସାରିବାକୁ ତରବର ହେଲେ ।

ନନ୍ଦ କିଛି ଦୂରରୁ ଦେଖିଲା, ଗାଧୁଆ କୁଣ୍ଡ ଭିତରୁ ଝିଅଟିଏ ଉଠି ଆସୁଛି ତୁଠ ଉପରକୁ । ଦେହରେ ଓଦା ସରସର ଲୁଗା । ଭାବିଲା ଝିଅଟି ବୋଧହୁଏ ତାକୁ ଦେଖିପାରିବ ନାହିଁ । ସେ ଗୀତର ସ୍ୱରକୁ ଯଥା ସମ୍ଭବ କମାଇ କମାଇ ବାଟ ଭାଙ୍ଗି ପାହାଡ଼ ଉପରକୁ ଉଠିଗଲା ।

ଶ୍ରଦ୍ଧା ଲକ୍ଷ୍ୟ କରୁଥିଲା, ନନ୍ଦ ଧୀରେ ଧୀରେ ପାହାଡ଼ର ଉପରକୁ ଉପରକୁ ଚଢ଼ି ଚଢ଼ି ଯାଉଛି । ସେ କାନ ଡ଼େରିଲା । ପଦ ଅସ୍ପଷ୍ଟ ହେଉଥାଏ ଦୂରେଇ ଦୂରେଇ ଯାଉଥିବା ଧ୍ୱନି ସହିତ..........

## ।। ୧୯ ।।

ଚାହୁଁ ଚାହୁଁ ଚାରିବର୍ଷ ଗଡ଼ି ଗଲାଣି । ନନ୍ଦର ବାପା ଓ ବୋଉ ଦୁହେଁ  ବସିଗଲେ, ବୁଢ଼ୀଙ୍କ ଅପାସୋର ସ୍ନେହ ମମତା ଓ ଘରକରଣା କଥା ପକାନ୍ତି । ପୁଣି ନନ୍ଦର ବାହାଘର କଥା ପକାଇ, ମନ ମାରି ବସି ଯାଆନ୍ତି କିଛି ସମୟ । ମା ଗତ ହେବାର ବର୍ଷକ ଯାଏ ସିନା ଘରେ ଶୁଭ କର୍ମ ମନା ଥିଲା, ଏଇନା ତ ଆଉ ସେ କଥା କହିହେବ ନାହିଁ । ସୁବଳ ବାବୁ ପଚାରି ପଠେଇଲେ କଣ ଜବାବ ଦେବେ ?

'ଏଇଠି ତିରିଶ ପୂରି, ଏକ ତିରିଶ ଚାଲିବ । ଏଥର ଆଉ ଗଡ଼େଇବାନି, ଜବାବ ଦେଇ ଦେବା । ଦୁହିଁଙ୍କ ଜନ୍ମ ନକ୍ଷତ୍ର ମିଶାଇ ତିଥି ଠିକ୍ କରିହେବ । ଆଉ ତା କଥା ଶୁଣିବାନି ।' - ନନ୍ଦର ବୋଉ ଜୋର ଦେଇ କହିଲେ ।

ନନ୍ଦର ବାପା ତୁନୀ ହୋଇ ବସି ଥାଆନ୍ତି । ଭାବୁ ଥାନ୍ତି, କଣ କହିବେ କାହାକୁ ? ସୁବଳ ବାବୁଙ୍କ ଆଡୁ କିଛି ତ ଖବର ଆସିଲାନି ! ହଁ ତାଙ୍କର ବା କଣ ଦୋଷ ? ବିଚାରି ଥର ବୁଝିଲେ । ଏପଟୁ କିଛି ନିଶ୍ଚିତ ଜବାବ ଦେଇ ହେଲାନି । ଝିଅ ପକ୍ଷ, କେତେ ଦିନ ଆଉ ତକେଇ ଥାଆନ୍ତେ ? ହଉ ହେଲା, ସେ ଝିଅଟିର ରୂପ ଗୁଣ ସବୁଥିଲେ ବି ପାଠରେ ଟିକିଏ ଊଣା, ଆଉ କେତେ ଜାଗାରୁ ତ ଭଲ ଭଲ ପ୍ରସ୍ତାବମାନ ଆସୁଥିଲା । ନନ୍ଦଟା ସବୁ ପ୍ରସ୍ତାବ ବେଳେ ଗୋଟାଏ ଗୋଟାଏ ଆଳ କାଢ଼ି କଥାଟାକୁ ଟାଳ ଟୁଳ କଲା । ନାଃ, ଏଇଟା କିଛି ଭଲ

ଲକ୍ଷଣ ନୁହେଁ । ତାରି କହିବା ଅନୁସାରେ, ଆଉ ତ କିଛି ଅଭାବ ରହିଲା ନାହିଁ । ଘର ମରାମତି, ଯୋଉଠି ଯେମିତି ଭାଙ୍ଗିରୁଜି ନୂଆ ଢ଼ଙ୍ଗରେ ତୋଳାଇବା କାମ ସରିଗଲା । ଧାର ଉଧାର ଯାହା ଯେଉଁଠି ହୋଇ ଯାଇଥିଲା, ଶୁଝା ହୋଇଗଲାଣି । ଜମି ଖଣ୍ଡେ ବନ୍ଧା ପଡ଼ିଥିଲା, ସେ ଖଣ୍ଡକ ବି ମୁକୁଳା ହୋଇଗଲାଣି । ଚଳିବାରେ ତ ଆଉ ଏବେ କିଛି ଅସୁବିଧା ନାହିଁ । ପୁଣି ଆଗଠାରୁ ବି ସ୍ୱଚ୍ଛଳ ସମୟ ଆସିଗଲାଣି । ଆଉ ପୁଣି କଣ ? ନା ନା ଆଉ ତା କଥା ଶୁଣିବିନି ।'

ଚୁପ୍ ଚାପ୍ ବସି ବସି ଏକ ତରଫା ନିଷ୍ପତ୍ତି ନେଇଯିବାକୁ ଭାବୁ ଥାଆନ୍ତି ନନ୍ଦର ବାପା ।

ଏକମାତ୍ର ନାତି ପାଖରେ ନାତୁଣି ବୋହୂ ଟିଏ ଦେଖିବା ପାଇଁ ଗୋସେଇଁ ମାଆଙ୍କର ବହୁତ ମନ ଥିଲା ! କହୁଥିଲେ- "ନନ୍ଦଟିତ ମାଷ୍ଟର ହେଲାଣି, ଦିଅ ବାହା କରେଇ ଦିଅ । ତାକୁ ଦୋଳ ମୁକୁଟ ହେବାର ଦେଖିଲେ, ମୁଁ ଟିକିଏ ଶାନ୍ତିରେ ଆଖି ବୁଜିବି । ନନ୍ଦ ସେତେ ବେଳେ କହୁଥିଲା ବି.ଏ ପରୀକ୍ଷା ଦେଇଛି । ପାଶ୍ କରୁକି, ତା ପରେ ଯାହା ହେବ । ସେତକ ସରିବା ପରେ କହିଲା-ଓ.ଏ.ଏସ୍. ଦେଉଛି ପରା, ଏଇନା କେମିତି ହେବ ? ପୁଅ କଥା ମନେ ପକାଇ, ନନ୍ଦର ବାପା ମନେ ମନେ ବହେ ବିଗିଡ଼ି ଯାଉଥାନ୍ତି । ତାଙ୍କ ମୁହଁରେ ମନର ଭାବ ଉକୁଟି ଉଠୁଥାଏ ।

ବୋଉ କହିଲେ- "ଆମ ଭାଗ୍ୟରେ କଣ ଏଇଆ ଥିଲା ? ନାତି କି ନାତୁଣିଟିଏ ଦେଖିବା ନାହିଁ ? ପୁଅଟାକୁ ମଗାଇ ହାତକୁ ଦିହାତ କରାଇ ପାରିବା ନାହିଁ ?"

ବାପା ଏଥର କହିଲେ- 'କିଏ ମନା କଲା, ମଗାଉ ନ ତମ ପୁଅକୁ !'

'ଚିଠି ଦେଇଛି ପରା, କୋଉଠିକି ବଦଳି ହୋଇଛି । ନୂଆ ଜାଗାକୁ ଯିବା ଆଗରୁ, ନୋହିଲେ ଯୋଗ ଦେଲାପରେ ଆସିବ । ସେତେବେଳେ ତମେ ଦିପଦ ଟାଣ କରି କହିଲେ ହେବନି ? ମୋ କଥାକୁ ସିନା ଫାଙ୍କି ଦେଉଛି, ତମ କଥାଟା କଣ ତଳେ ପକାଇ ଦେବ ? - ମା'ର ମନତ, ସେ ନିଜ ପ୍ରାଣର ବ୍ୟାକୁଳତା କେବଳ ପ୍ରକାଶ କରୁଥାନ୍ତି ସ୍ୱାମୀଙ୍କ ଆଗରେ ।

"ଆସିଲେ କଣ ହେବ ? କହିବ - 'ଚାଲ ମୋ ସାଙ୍ଗରେ । ମୁଁ ଏକୁଟିଆ ରହୁଛି ।

ତମେ ଦୁହେଁ ସଦାବେଳେ ମନେ ପଡୁଛ । କିଛି ଭଲ ଲାଗୁନି । ଜମି ଭାଗ ଲଗେଇ ଦେବା । ଘରେ ଲୋକଟାଏ ଜଗୁଆଳି ପଦରେ ରଖିଦେବା । ପରୁଆ ନାହିଁ । ତମେ କିଆଁ ଚିନ୍ତା କରୁଛ ? ମୁଁ ତ ଦରମା ଦେବି' । ଏମିତି ଲମ୍ବା ଚଉଡ଼ା କଥାଟା ମାନ କହିବ । ବାହାଘର କଥା ଉଠାଇଲେ ଚୁପ୍ ହୋଇ ବସି ପଡ଼ିବ । ତୋଟା ଆଡ଼େ ବୁଲି ପଳାଇବ । କ'ଣ କହିବ ଏଙ୍କୁ ?" - ନନ୍ଦର ବାପା ବିରକ୍ତି ଭିତରେ ନିଜର ଆଶଙ୍କା, ସମ୍ଭାବନା ଓ ମନୋବେଦନା ପ୍ରକାଶ କରୁଥାନ୍ତି ।

ନନ୍ଦରବୋଉ ସକାଳୁ ଗାଧୁଆ ସାରି ଚଉରାରେ ପାଣି ଦେଲା ବେଳେ,ସଞ୍ଜବେଳେ ଦୀପ ବସାଇବା ବେଳେ ପୁଅର ବାହାଘର କଥା ଜଣାଣ କରୁଥାନ୍ତି । ବାପା ବି ଠାକୁରଙ୍କୁ ଡ଼ାକୁ ଥାନ୍ତି ଯୋଉଠି ହେଉପଛେ ଭଲ କୁଳର ଭଲ ଝିଅଟିଏ ବେଗାବେଗି ତାଙ୍କ ଘରକୁ ବୋହୂ ହୋଇ ଆସୁ, ପୁଅ ଯୋଉଠି ପ୍ରସ୍ତାବ ଦେବ, ସେଠି ବାହାଘର କରିବାକୁ ସେମାନେ ରାଜି । ଖାଲି ପୁଅ ହଁ କରୁ । ଠାକୁରଙ୍କଠାରେ ଏଇ ଗୋଟିଏ ମାଗୁଣି ଥାଏ ଦୁଇ ପ୍ରାଣୀଙ୍କର ।

## ।। ୨୦ ।।

କିଆ ବୁଦା ଗୁଡ଼ିଏ ରାସ୍ତାର ଦୁଇ କରରେ । ଫୁଲ ଫୁଟିଛି । ବାସ ଚହଟୁଛି । ନନ୍ଦ ଶୁଣି ଆସିଛି, ଏଭଳି ଥାନମାନଙ୍କରେ ଗାତଥାଏ ଓ ସେଥିରେ ସାପମାନେ ରହନ୍ତି । ସାପ ତ ନିଜେ ଗାତ କରି ଜାଣେ ନାହିଁ, ସେ ଅନ୍ୟର ଗାତକୁ ଅଧିକାର କରି ନିଏ । ହୁସିଆର ହୋଇ ଯିବାକୁ ହେବ । ତଥାପି, କିଆ ଫୁଲର ଶୋଭା ଓ ସୁରଭିର ତ ପୁଣି ଆକର୍ଷଣ ଅଛି । ନନ୍ଦ ଟିକିଏ ମନ୍ଥର ଗତିରେ ଚାଲିଥାଏ, ରାସ୍ତା ଓ ତାର ଦୁଇ ପଟେ ଆଖି ବୁଲାଇ ବୁଲାଇ । ନେଉଳଟିଏ ସାମ୍ନାରେ ଏପଟରୁ ସେପଟକୁ ଚାଲିଗଲା । ଖଣ୍ଡେ ଦୂରରେ ରଜାଙ୍କର ପୁରୁଣା ନଅର । ଏଇଠି ବାଟ ଭାଙ୍ଗିବାକୁ ହେବ । ସେ ଏଇ ବାଟେ ଆସିଥିଲା ।

ରାସ୍ତା ପାଇଁ ଧନ୍ଦି ହେବାର କାରଣ ନାହିଁ । ଗୋଟିଏ ରାସ୍ତା ବୁଲାଣି, ମୋଡ଼, କେଉଁଟା କେଉଁ ଆଡ଼କୁ, ଥରେ ଜାଣି ଗଲେ ଅସୁବିଧା ନାହିଁ । ତଥାପି, ଡ୍ରାଇଭର ଗାଡ଼ି ନେଇ ଚାଲି ଆସିଛି ବାଟ ମୁହଁ ଯାଏ । ନନ୍ଦ ଓଦା ଗାମୁଛା ଥିବା ଝୁଲା ବ୍ୟାଗ୍‌ଟା କାନ୍ଧରୁ କାଢ଼ି ବଢ଼ାଇ ଦେଲା । ଗାଡ଼ିରେ ଡ଼ାକ ବଙ୍ଗଳାକୁ ଫେରିଲା । କୁଣ୍ଡରେ ମନବୋଧ ଗାଧୁଆ, ପହଁରିବାଠାରୁ ମନ୍ଦିର ଦୁଆରେ ମୁଣ୍ଡିଆ ମାରି ଲେଉଟିବା, ପୁଣି ବାଟରେ କିଆ ଫୁଲର

ମହକ ଓ ପଛ କରକୁ ଅନାଇ ଅନାଇ ସେଇ ଆଡ଼କୁ ଧାଇଁ ଧାଇଁ ଯାଉଥିବା ନେଉଳର ଚେହେରା ଏତେ ସଜ ଓ ସରସ ନଥିଲା, ଯେତିକି ଥିଲା ରହି ରହିକା ପାହାଡ଼ ଉପରକୁ ଚଢ଼ି ଚଢ଼ି ଯିବା ବେଳର ପ୍ରୀତି ପ୍ରଦ ଅନୁଭବ ।

ଯିଏ ନାଚୁଥାଏ, ସେ ନାଚିବାର ଆନନ୍ଦ ଯେପରି ଉପଭୋଗ କରେ, ଯିଏ ଦେଖୁଥାଏ, ତାର ଅନୁଭବ ଓ ଉପଭୋଗ ତାଠାରୁ ନିଆରା । ମନ ଭିତରେ ଶ୍ରେୟ ଓ ପ୍ରେୟର ଲୀଳା, ଆଗେଇ ଯିବା ଓ ଅଟକି ଯିବାର ଅଶ୍ୱସ୍ତିକୁ ଅଙ୍ଗେ ନିଭାଇବା ଓ ତାକୁ ଅନ୍ୟଠାରୁ ଅନୁମାନ କରିବା ଆଉ ଏକ ବ୍ୟାପାର । ମୀମାଂସା ସୂତ୍ର କହେ, ଯାହା ମଣିଷକୁ ବିହିତ କର୍ମରେ ପ୍ରଯୋଜିତ କରାଏ, ତାହା ଧର୍ମ । କିନ୍ତୁ ତାରି ଭିତରେ ବିହିତ ଅବିହିତ ସୀମା ପାଖାପାଖି ଥାଇ ସୌନ୍ଦର୍ଯ୍ୟକୁ ଚାକ୍ଷୁଷ କରିବା, ଉପଭୋଗ କରିବା ଓ ତାର ସ୍ମରଣ ତଥା କିଞ୍ଚିତ କିଞ୍ଚିତ ଆସ୍ୱାଦନ ରସବୋଧ, ସାହିତ୍ୟ ଜଗତର କଥା ! ତାହା ଶିଳ୍ପୀ, କଳାକାରର ଧର୍ମ, ଏବଂ ତାହା ହିଁ କଳା ଓ ସାହିତ୍ୟ ସୃଜନର ସରଣୀ ।

ମନ ଓ ଦେହକୁ ଏକ ସରସ ଉପଲବ୍ଧି ଦେଲା ଭଳି ପାଗଟିଏ ଥିଲା । ନନ୍ଦ ଡ଼ାକ ବଙ୍ଗଳା ବାରଣ୍ଡାରେ ପଡ଼ିଥିବା ଆରାମ ଚଉକି ଉପରେ ଆଉଜି ପଡ଼ିଲା । ତାର ମନକୁ ଆବିଷ୍ଟ କରି ରଖିଥାଏ ସେଇ ଯୁବତୀଟିର ରୂପ ଲାବଣ୍ୟ । ମଧୁର ବର୍ଣ୍ଣ, ଲମ୍ବା ବେକ, ସୁଗଠିତ ଚେହେରା, ସୁନ୍ଦର ନାକ ଓ ଦେହରେ ଜଡ଼ି ରହିଥିବା ଓଦା ଲୁଗା ତଳୁ ତଳୁଶ୍ରୀର ଆକର୍ଷଣ; ଚେଷ୍ଟା କଲେ ସୁଦ୍ଧା ମାନସପଟରୁ ତାହା ପୋଛି ଦେବା କଷ୍ଟ ।

ଏକଦା ଶରତର ସାୟାହ୍ନରେ ଜଣେ ପ୍ରବକ୍ତା କରୁଥିଲେ- 'ନାରୀ ହେଉଛି ଶକ୍ତି । ସେ ସମ୍ଭୋଗର ସାମଗ୍ରୀ ନୁହେଁ । ଦେବତାମାନେ ଦୁର୍ଗାଙ୍କୁ ଶକ୍ତି ସ୍ୱରୂପା ଓ ଶକ୍ତିର ଉତ୍ସ ଭାବରେ ଗ୍ରହଣ କରିଗଲେ, ତେଣୁ ବିଜୟଶ୍ରୀ ମିଳିଲା ସେମାନଙ୍କୁ । ମହୀଷାସୁର ତାଙ୍କୁ ଲୋଡ଼ିଲା ଉପଭୋଗର ସାମଗ୍ରୀ ଭାବରେ, ତାର ବିଲୟ ଘଟିଲା । ନନ୍ଦ ପାଖକୁ ଲାଗି ଠିଆ ହୋଇଥିଲେ, ତାର ଜଣେ ସହକର୍ମୀ । ସେ ତାକୁ କାନ୍ଧରେ ଟିକିଏ ଠେଲି ଦେଇ କହିଲେ - 'ଏ ପଣ୍ଡିତେ ବୁଢ଼ା ହୋଇଗଲେଣି ତ, ତେଣୁ ରାଧାକୃଷ୍ଣଙ୍କ କଥାଟା ମନେ ପଡୁନି, ପାର୍ବତୀଙ୍କ ସହିତ ଶିବଙ୍କ ସଂପର୍କ କଥା ସୁଦ୍ଧା ଉଠାଉ ନାହାନ୍ତି ।' ନନ୍ଦ ଠାରି ଦେଲା, କିଛି ଦୂରରେ ଗୋକୁଳି ବାବୁ ଛିଡ଼ା ହୋଇଥିଲେ । ପ୍ରବଚନ ମଧ୍ୟ ସରି

ଆସୁଥିଲା । ନନ୍ଦ ଓ ଗୋକୁଳି ବାବୁ ସାଙ୍ଗ ହୋଇ ଗପି ଗପି ବାହୁଡ଼ିଲେ ।

ଗୋକୁଳି ବାବୁ କହିଲେ- " ନାରୀ ପୁରୁଷର ଇଚ୍ଛାଶକ୍ତି । ସଂଭୋଗର ସପକ୍ଷ ବା ବିପକ୍ଷରେ କିଛି କହୁ ନାହିଁ । କିନ୍ତୁ ରାମଙ୍କ ପରି ଅବତାର ପୁରୁଷ, ଅର୍ଜୁନଙ୍କ ପରି ବୀର ପୁରୁଷଙ୍କ କ୍ଷେତ୍ରରେ କଣ ଦେଖାଯାଏ ? ଚତୁର୍ବର୍ଗ ଭିତରେ - କାମ ମଧ୍ୟ ଗୋଟିଏ । ସେହିପରି ଅର୍ଥ ବି ଚତୁର୍ବର୍ଗର ଅନ୍ତର୍ଗତ । ସମ୍ଭୋଗକୁ ମନା କରିବ କିଏ ? କିନ୍ତୁ କାମ ହେଉ କି ଅର୍ଥ ହେଉ, ଏ ଦୁଇଟି ଧର୍ମ ସହିତ ଯୋଡ଼ି ହୋଇ ରହିବାର କଥା । ସଂସାରରେ ଚଳିବାକୁ ହେଲେ- ଧର୍ମ, ଅର୍ଥ, କାମ, ତିନୋଟି ଯାକର ଗୁରୁତ୍ୱ ଅଛି । ଏଇଠି, ଏ ପ୍ରସଙ୍ଗରେ ମୋକ୍ଷ କଥା ଉଠାଉ ନାହିଁ । କିନ୍ତୁ ଧର୍ମ ସହିତ କାମ ଏବଂ ଧର୍ମ ସହିତ ଅର୍ଥ ରହୁ । ଅନ୍ୟ ପ୍ରକାରେ କହିଲେ - ଅର୍ଥ ଓ କାମକୁ ଧର୍ମ ମାର୍ଗରେ ଅର୍ଜନ ଓ ଉପଭୋଗ କର । ସେଥିରେ ମଙ୍ଗଳ ନିହିତ । ମୋର କହିବାର କଥା- ବିବାହ ଓ ଗୃହସ୍ଥ ଜୀବନର ଗୋଟାଏ ମର୍ଯ୍ୟାଦା ଅଛି । ଆବଶ୍ୟକତା ବି ଅଛି । ଭଲ ସନ୍ତାନ ଉତାରିବାକୁ ହେବ । ଭଲ ମଣିଷ ଉତାରିବାକୁ ହେବ । ଇଆଠୁ ବଳି ବଡ଼ କାମ ଆଉ କଅଣ ଅଛି, କହିଲ ?" କେମିତି କେଜାଣି, ଅକସ୍ମାତ୍ ସେମାନଙ୍କ ଚେହେରା, ପଲ୍ଲୀଶ୍ରୀ ଶିକ୍ଷା ନିକେତନର ପରିବେଶ ଓ ସେଦିନ ଧର୍ମ ସଭାର ସ୍ମୃତି, ନନ୍ଦର ମନ ଭିତରକୁ ବିଜୁଳି ପରି ପଶି ଆସି ଉଭେଇ ଗଲା ।

ନେଉଳ, ସାପ, ଗାତ, କିଆ ବୁଦା କିଛି ନାହିଁ, କିନ୍ତୁ କିଆ ଫୁଲର ମହକ ବାରିଲା ନନ୍ଦ । କିଏ କେଉଁଠି ସେଇ ଫୁଲ ଗୁଡ଼ିଏ ଆଣି ରଖି ଦେଉଛି କି ?

ଜୀପ୍‌ଟିଏ ପଶି ଆସି ଅଟକିଲା ଡ଼ାକ ବଙ୍ଗଳା ହତା ଭିତରେ । ପଛ ପଟ ଡ଼ୋର୍ ଖୋଲି ଖପାଖପ୍ ଡ଼େଇଁ ପଡ଼ିଲେ ଦୁଇ ଭଉଣୀ । ସାନଟି ଜିନ୍ ପ୍ୟାଣ୍ଟ ଓ ପଞ୍ଜାବୀ ପିନ୍ଧିଛି । ବଡ଼ର ପରିଧାନ- ଶାଢ଼ୀ, ଉଭୟଙ୍କର ଗଢ଼ଣ କିଛି କିଛି ମିଶୁଛି । କିନ୍ତୁ ସାନଟି ଗୋରା । ଗହମ ରଙ୍ଗ, ଛୋଟ ଛୋଟ ବାଳ, ବୟ-କଟ୍ କରିଛି । ବଡ଼ଟି ଜୁଡ଼ା ବାନ୍ଧିଛି । ସାନ ଢଣକ ଲନ୍ ପାଖରେ ଅଟକି ଗଲା । ବଡ଼ ପଛରେ ଥିଲା । ମୁହଁ ଟେକି ଇସାରାରେ କିଛି ପଚାରିଲା । ସାନ କହିଲା- 'ଏତେ ଶୀଘ୍ର ରୁମ୍‌କୁ ଯିବାନି । ଏଇଠି ଟିକିଏ ବସିବା ।' ତା ପରେ ସେ ଚଉକିଦାରକୁ ହୁକୁମ୍ ଦେଲା ।

ଚଉକୀ ଦୁଇଟା ଲନ୍‌ରେ ପଡ଼ିଲା । ସାନ, ନଥି କରି ଗୋଟାଏ ଚଉକି ଉପରେ

ବସି ପଡ଼ିଲା । ବଡ଼, ଡ୍ରାଇଭର ହାତକୁ ରୁମ୍‌ର ଚାବି ବଢ଼ାଇ ଦେଇ ହସ ହସ ବଦନରେ ଧୀରେ ଧୀରେ ଆସି ପାଖ ଚଉକୀରେ ବସିଲା । ସାନଟି ହଠାତ୍ ଉଠି ପଡ଼ି ପଚାରିଲା- 'ମୋ ଫୁଲ ?'

'ତୁ ବ୍ୟସ୍ତ କାହିଁକି ହେଉଚୁ, ସେମାନେ ରଖିବେ ନି ।' ଧୀର ଓ ମିଠା ସ୍ୱରରେ ବଡ଼ ଭଉଣୀ କହିଲା । ନନ୍ଦର ସରସ ମନ ସେମାନଙ୍କର ଆଳାପ ଓ ଚଳଣିକୁ ଲକ୍ଷ୍ୟ କରି ଆମୋଦିତ ହେଉଥାଏ ।

ଶ୍ରଦ୍ଧା ଓ ଶ୍ରୁତି ଦୁଇ ଭଉଣୀ । ଶ୍ରଦ୍ଧା ବଡ଼ । ଇଂରାଜୀ ଅଧ୍ୟାପିକା । ଏବେ ଏଇଠି ନିଯୁକ୍ତି ପାଇଛି । ଶ୍ରୁତି ପଢୁଛି ବିଶ୍ୱ ବିଦ୍ୟାଳୟରେ ଆଜି ମନଟା ତାର ବିଗିଡ଼ି ଯାଇଛି । ସେମାନଙ୍କୁ ଆତିଥ୍ୟ ଦେଇଥିବା ଭଦ୍ରଲୋକଙ୍କ ଉପରେ ଗରଗର ହେଉଥାଏ । କହୁଥାଏ - 'ମଉସା ନିତାନ୍ତ ରକ୍ଷଣଶୀଳ ଲୋକ । କହୁଛନ୍ତି ଶୀଳାକୁ ବାହା କରିଦେବେ । ଦିଅନ୍ତୁ । କିନ୍ତୁ ପାଠ ପଢ଼ା ଅଧା ରଖି ବିଭା କରାଇ ଦେବାର ତାତ୍ପର୍ଯ୍ୟ ? ସେ କଣ ସତରେ ବୁଝିପାରୁ ନାହାନ୍ତି, ଏହା ଫଳରେ ଝିଅଟା ତା ସ୍ୱାମୀ ଦେହରେ ନିର୍ମୂଳୀ ଲତା ପରି ଗୁଡ଼େଇ ତୁଡ଼େଇ ହୋଇ ରହିବ ? ସେଇ ପୁରୁଣା, ଅଯୌକ୍ତିକ, ବିରକ୍ତିକର କଥା- କୌମାରେ ରକ୍ଷତି ପିତା, ଭର୍ତ୍ତା ରକ୍ଷତି ଯୌବନେ.......... ତା ପରେ କଣ ତ ......... ହଁ, ବାର୍ଦ୍ଧକ୍ୟେ କିଏ ଗୋଟାଏ ରକ୍ଷତି.......... ଇତ୍ୟାଦି ଇତ୍ୟାଦି । କିନ୍ତୁ କାହିଁକି ? ମାଉସୀ ତ ନିଜେ ପଦେ କହିବା କଥା ! ସେ ଓଲଟି ଯୁକ୍ତିକରି ମଉସାଙ୍କ କଥାକୁ ଠିକ୍ ବୋଲି କହୁଛନ୍ତି ! ସେ ଶୀଳା ବି ଶିଳାଟାଏ ! ସେଇଟାର କିଛି ନିଜସ୍ୱ ମତ ନାହିଁ । କି ବିଚିତ୍ର ଲୋକ ଏମାନେ !

'ସେଇଟା ତାଙ୍କ ପାରିବାରିକ ବ୍ୟାପାର । ତୁ କାଇଁକି ଏମିତି ଉତ୍‌କ୍ଷିପ୍ତ ହଉଛୁ ?' ଶ୍ରଦ୍ଧା ବୁଝାଉ ଥାଏ ଶ୍ରୁତିକୁ ।

ଶ୍ରୁତି ବୁଝିଯିବାକୁ ପ୍ରସ୍ତୁତ ନୁହେ । ସେ ଅଧିକ ବିରକ୍ତ ହୋଇ କହୁଥାଏ- 'ପାରିବାରିକ ? କି ପାରିବାରିକ ଏଇଟା ? ଇଏ ସାମାଜିକ ସମସ୍ୟା, ଏଇଟା ଖାଲି ନାରୀ ସ୍ୱାବଲମ୍ବନଶୀଳତା ଓ ମର୍ଯ୍ୟାଦାର କଥା ନୁହେଁ, ସମଗ୍ର ସମାଜର ସମସ୍ୟା । ତୁମେ ତୁମ ଖିଆଲ୍‌ରେ ସମାଜର ଗୋଟାଏ ଅଙ୍ଗକୁ ଅପାରଗ, ଦୟନୀୟ ଅବସ୍ଥାରେ ରଖିବ ?'

ଶ୍ରଦ୍ଧା ବଡ଼ ସହଜ ଭାବରେ କହୁଥାଏ- 'ତୁ ଆଗ ଭାବିବୁଟି, ଇକୋନମିକ୍‌ସ୍ କଥାଟା

କଣ ? ଏଇଟା ମୂଳ ଗ୍ରୀକ୍ ଶବ୍ଦ ଓ୍ୱାଇକୋ ନମସ୍‌ରୁ ଆସିଛି । ଓ୍ୱାଇକୋସ୍ (Oikos) ମାନେ 'ଘର' ଏବଂ ନୋମସ୍ (Nomos) ମାନେ - ମାନେଜମେଣ୍ଟ (Management) । ତେଣୁ Economics ର ମୌଳିକ ଅର୍ଥ ହେଲା-Management of the house. ଘର ଚଳେଇବା । ସେଠି ପ୍ରାଚୀନ ଗ୍ରୀକ୍ ସମାଜରେ ନାରୀମାନେ ଘର ସମ୍ଭାଳୁଥିଲେ । ଶୀଳା ଯଦି ସେତିକି କରିପାରିଲା, ତା ସହିତ ନିଜ ପିଲାଙ୍କୁ ଠିକ୍ ବାଟରେ ବଢ଼ାଇ ମଣିଷ କରି ପାରିଲା, ସେଇ ତ ଯଥେଷ୍ଟ" ।

ଶ୍ରୁତି, ଅତି ବିରକ୍ତ ହୋଇ କହିଲା - 'ବୁଦ୍ଧୁଙ୍କ ପରି କଥା କହନା, ପାଠ ପଢ଼ିସାରି ବାହା ହେଲେ ଏଗୁଡ଼ାକ କରିପାରିବନି ? ଏସବୁ ନିଜ ମନୋବୃତ୍ତି, ବାପାମାଙ୍କ ତାଲିମ୍ ଓ ସ୍ୱାମୀ ସ୍ତ୍ରୀ ର ବୁଝାମଣାର କଥା । ଚାଉଳ ନଫୁଟୁଣୁ ଓହ୍ଲାଇ ଆଣିଲେ ଠିକ୍ ଭାତ ହୁଏ ନାହିଁ, ଖୁବ୍ ହେଲେ କୁହାଯିବ ଭାତଟା ଚାଉଳିଆ ହୋଇଛି । ଫଳଟା ପାଚିଥିଲେ କହିବା- ପାଚିଲା ଫଳ, ନ ପାଚିଥିଲେ- ଦରପାଚିଲା । ସେମିତି ଦୁଇଟି କଥା- ପାଠୁଆ, ଦରପାଠୁଆ ।'

ଶ୍ରଦ୍ଧା ହସିଦେଲା । କହିଲା- 'ସେ ଦରପାଚିଲା ଫଳଟାକୁ ରଖିଦେଲେ ପାଚିଯିବନି ?'

'ଡ଼୍ରୋଣ୍ଟ ଟକ୍ ନନ୍‌ସେନ୍‌ସ' - କହି ଶ୍ରୁତି ଉଠି ଆସିଲା । ଧପ୍ ଧପ୍ ଚାଲି ରୁମ୍ ଭିତରେ ପଶିଗଲା । ଶ୍ରଦ୍ଧା ମଧୁର ହସ ହସିହସି ତା ପଛେ ପଛେ ଚାଲିଲା ।

ବାରଣ୍ଡାରେ ନନ୍ଦ ବସିଥିଲା । ଶ୍ରଦ୍ଧା ଆସିବା ବାଟରେ ତା ଉପରେ ଦୃଷ୍ଟି ପଡ଼ିଲା । ଦୁହେଁ ଦୁହିଁଙ୍କୁ ଚାହିଁଲେ । ନନ୍ଦ କିଛି ଗୋଟାଏ କହିବା ଭଦ୍ରତା ବୋଲି ଭାବି, ପଚାରି ଦେଲା- 'ଖାଇଲେଣି ?'

ଶ୍ରଦ୍ଧା ଓଠରେ ସେଇ ସ୍ମିତ ମଧୁର ହସ ଥାଏ । ମୁହୂର୍ତ୍ତେ ଅଟକି ଯାଇ କହିଲା - 'ଆଜ୍ଞା', ତା ପରେ ନମସ୍କାର କରି, 'ଆସୁଛି' ବୋଲି କହି ଧୀରେ ଧୀରେ ନିଜ ରୁମ୍ ଭିତରକୁ ଗଲା ।

'ଆସୁଛି' ଅର୍ଥ ଆସୁଛି ନୁହେଁ । ନନ୍ଦ ବୁଝିଲା । ସେ ବି ଖାଇ ପିଇ ଶୋଇବାକୁ ଗଲା ।

ଛାଇ ନିଦ ଲାଗି ଆସିବା ବେଳକୁ ନନ୍ଦ ସ୍ୱପ୍ନ ଦେଖିଲା । ମୂର୍ତ୍ତିବାବୁଙ୍କ ଘର । ସୁବଳବାବୁ ଓ ତାଙ୍କ ସାଙ୍ଗ ମିଶ୍ରବାବୁଙ୍କ କଥା ବାର୍ତ୍ତା । ସପ୍ତମ ଶ୍ରେଣୀରେ ଝିଅର ପଢ଼ା ବନ୍ଦ କରି, ବର ଖୋଜିବାକୁ ବାହରି ପଡ଼ିଥିଲେ ସୁବଳ ବାବୁ ।

ସୁବଳ ବାବୁ, ଶାନ୍ତ ସୁଠାମ ବ୍ୟକ୍ତି । ଲାଜ ଲାଜ, ଭାଣ୍ଡିଆ ଭାଣ୍ଡିଆ ମୁହଁ । କିନ୍ତୁ ବୁଦ୍ଧି ଭାରି ତୀକ୍ଷ୍ଣ । ଲକ୍ଷ ଅନୁସାରେ କାର୍ଯ୍ୟକ୍ରମ । ସେ କହୁ ଥାଆନ୍ତି-

When a man doesnot know
What harbour he is making for,
no wind is right wind.

ମିଶ୍ରବାବୁଙ୍କ ଥଟା - 'ତାଙ୍କ ସ୍ତ୍ରୀ କୁଆଡ଼େ କହିଲେ, ବଢ଼ିଲା ଝିଅଟା ପରା, ଆଉ ସ୍କୁଲ ନାଁ ଧରନା ।'

ମୂର୍ତ୍ତି ବାବୁଙ୍କ ଟେବୁଲ ଉପରୁ ଖସି ପଡୁଛି ଝିଅଟିର ଫଟୋ ।

କେଉଁଠି ପବନରେ ଝରକାଟା ପିଟି ହୋଇଗଲା । ଶବ୍ଦରେ ନନ୍ଦର ନିଦ ଭାଙ୍ଗିଗଲା । ସେ କର ଲେଉଟାଇଲା । ଭାବିଲା - 'ବାପା ଯେଉଁ ପ୍ରସ୍ତାବ କଥା କହୁଥିଲେ, ସେଇଟା ସୁବଳ ବାବୁଙ୍କ ଝିଅପାଇଁ ପ୍ରସ୍ତାବ ନଥିଲା ତ !'

ବେଗାବେଗି ଉଠିବାକୁ ହେବ । ସକାଳେ ବାହାରି ଯିବା କଥା । ରବିବାରଟା ବୋଲି ବାଟରେ ବିଶ୍ରାମ ପାଇଁ ଅଟକି ଯାଇଥିଲା । କିଛି ମନ ପରିବର୍ତ୍ତନ ମଧ ହେଲା । ଭଲ ବି ହେଲା ।

ନନ୍ଦ ପୁଣି ଟିକିଏ ଶୋଇବାକୁ ଚେଷ୍ଟା କଲା ।

## ।। ୨୧ ।।

ନନ୍ଦ ଗାଡ଼ିରେ ବସିବାକୁ ଯାଉଛି, ଦେଖିଲା ଶ୍ରଦ୍ଧା ଓ ଶ୍ରୁତି ସେମାନଙ୍କ କୋଠରୀରୁ ବାହାରିଲେ । ସେ, ସେମାନଙ୍କ ଆଡ଼କୁ ଚାହିଁ, କହିଲା -"ଗୁଡ୍ ମର୍ଣ୍ଣିଂ ।"

ଶ୍ରଦ୍ଧା ସଲ୍ଲଜ ଭାବରେ ନମସ୍କାର କଲା । ଭଦ୍ରତାରେ କିଛି ପଚାରିବା ଉଚିତ୍ ବୋଲି ବୋଧହୁଏ ଭାବିଲା ଓ ପାଚାରିଲା- 'ଏବେ ଯାଉଛନ୍ତି ?'

'ହଁ ମାଡ଼ାମ୍ ଯାଉଛି' ବୋଲି କହି ନନ୍ଦ ଗାଡ଼ିରେ ବସିଲା । ତା ସ୍ୱରଥିଲା ଖୁବ୍ ଭଦ୍ର ଓ ଆନ୍ତରିକ ।

ଡ଼ାକବଙ୍ଗଳାରେ ମାତ୍ର ଗୋଟିଏ ଦିନର ରହଣି ଭିତରେ କେତେ ଥର ବା ସେମାନେ ପରସ୍ପରକୁ ଦେଖିଛନ୍ତି ! ପୁଣି ଆଳାପ ଅବା କେତୋଟି ବାକ୍ୟରେ ହୋଇଛନ୍ତି ! ତଥାପି ଦୁହିଁଙ୍କ ଭିତରେ ପରସ୍ପର ପ୍ରତି ମମତା ବୋଧ ଜାଗ୍ରତ ହୋଇଥିଲା ।

ନନ୍ଦ ଫେରିବା ବାଟରେ ସେଇ ପାହାଡ଼ ଓ ଝରଣା କଥା ଭାବୁଥାଏ । ବଙ୍ଗଳା ଭିତରୁ ହାତୀଟିଏ ଗୋଡ଼ଭାଙ୍ଗି ବସିବା ଭଳି ଦିଶୁଥିବା ସେଇ ପାହାଡ଼ଟି ବେଶ୍ ଉଚ୍ଚ ଓ ବିସ୍ତୃତ ।

ପାହାଡ଼ ତଳେ କଲେଜ । ଶ୍ରଦ୍ଧା ସେଇଠି ଅଧ୍ୟାପିକା । ନନ୍ଦ ସିନା ଶ୍ରଦ୍ଧାର କର୍ମ କ୍ଷେତ୍ର ଜାଣିଲା, କିନ୍ତୁ ସେ ତ ନନ୍ଦର ନାଁ ସୁଦ୍ଧା ଜାଣି ନଥିବ । ହଁ, ଦରକାର ବା କଣ ?

ସେଇ ଫୁର୍ତ୍ତି ଗୋରୀ ଝିଅଟିର ନାଁ- ଶ୍ରୁତି । ତା ଯୁକ୍ତି ନନ୍ଦ ମନକୁ ଗଭୀର ଭାବରେ ଛୁଇଁଥିଲା । ସନ୍ତାନଟି ଝିଅ ବୋଲି ତା ଶିକ୍ଷା ପ୍ରତି ଅଣହେଳା କରିବାଟା ଅପରାଧ । ସୁବଳ ବାବୁ ମଧ୍ୟ ଝିଅଟିର ପଢ଼ା ବନ୍ଦ କରି ଦେଇ, ବର ଖୋଜିବାରେ ମାତି ଯାଇଥିଲେ । ଫଟୋରୁ ଲାଗୁଥିଲା ଝିଅଟି ସୁଶ୍ରୀ । ତା ମା ତାକୁ ଶୃଙ୍ଖଳା ଭିରେ ବଢ଼ାଇଛନ୍ତି । ବାପା ମା, ଦୁହେଁ ଚାହୁଥିଲେ ଝିଅଟି ବାହା ତୋଳା ହୋଇ ଘରଦ୍ୱାର କରି ରହୁ । ଭଲ ସ୍ତ୍ରୀ, ଭଲ ବୋହୂ ହେଉ, ଦୁହିତା ପରା ଦୁଇ କୁଳକୁ ହିତା ! ତାହା ତାଙ୍କ ଝିଅଠାରେ ସଫଳ ହେଉ । ସବୁ ରକ୍ଷଣଶୀଳ ବାପମା ସେଇଆ ଚାହାନ୍ତି । ବର ପିତାମାନେ ମଧ୍ୟ ଘରକରଣା, ସୁଲକ୍ଷଣା ବୋହୂ ଚାହାନ୍ତି । ନନ୍ଦର ମନେ ପଡ଼ିଲା ଫକୀର ମୋହନଙ୍କ ରେବତୀ କଥା । ଭାବିଲା, ସତେ କଣ ସମୟ ଏମିତି ଠାଏ ଠାଏ ଅଟକି ଯାଇଛି ? ଏବେ ସୁଦ୍ଧା ବହୁ କ୍ଷେତ୍ରରେ ଝିଅମାନଙ୍କ ଅବସ୍ଥା ସତେ ସେଇ ଆଗ ଭଳି ଅଛି ? ତାକୁ ବି ଚିଡ଼ିମାଡ଼ିଲା ।

ସୁବଳବାବୁଙ୍କ ଝିଅ ହୁଏତ ବାହାହୋଇ ଯିବଣି । ଝିଅ ଘିଅ ରହିଲେ ଗନ୍ଧାଏ । ତେଣୁ ବାପମା ଲାଗିପଡ଼ନ୍ତି ଝିଅଟି ଗୃହଯୋଗ୍ୟାହେବା ପରେ ପରେ ଯଥା ଶୀଘ୍ର ହାତକୁ ଦିହାତ କରାଇ ଦେବାକୁ । ଏପଟେ ପୁଅକୁ ମଧ୍ୟ ଚବିଶ ପଚିଶ ହେଲେ ବାପା ମା ବାହା କରାଇ ଦେବାକୁ ଚାହୁଛନ୍ତି । 'ଟୋକା ଟାକେରିଆ ଲୋକ ବେକରେ ପଇଲେ ଆପେ ବଢେଇ ଶିଖିବେ । ଦାୟିତ୍ୱ ତୁଲାଇବା ବୟସ ଆସିଲା । ତାଙ୍କୁ ଉପଯୁକ୍ତ ବୟସରେ ଦାୟିତ୍ୱ ଦେଲେ ସିନା, ସେମାନେ ତୁଲାଇବେ, ତା ନକଲାଯାଏ କଅଣ ଆଉ କରିବେ ? ପୋଲାପାଙ୍କିଆ

ହୋଇ ବୁଲିବେ ।' ଏହା ହେଲା ଗୋଟାଏ ମାନସିକ ସ୍ତରରେ ରହିଥିବା ବାପ ମାଆମାନଙ୍କର ଚିନ୍ତା ଓ ମନୋଭାବ ।

ବିବେକ ଓ ବିଚାର ଶକ୍ତିକୁ ସାଙ୍ଗରେ ଧରି ଚାଲିଲେ- ଅସୁବିଧା ଆସିପାରେ ସିନା, ବିପଦ ନାହିଁ । ଅସୁବିଧା ବି ଯାହା ଆସିବ, ତାହା କେବଳ ସାମୟିକ । ପ୍ରଭୁପାଦବାବୁ ଓ ଗୋକୁଳିବାବୁଙ୍କ ସମ୍ପର୍କରେ ଆସି ନନ୍ଦର ଏହିପରି ଦୃଷ୍ଟିକୋଣ ଫିଟିଛି । ସେ ଏବେ ଅନେକ ସମୟରେ ଅନୁଭବ କରୁଛି, ଗୋଟାଏ ସୁସ୍ଥସୁନ୍ଦର ଗାର୍ହସ୍ଥ୍ୟ ଜୀବନ ଆରମ୍ଭ କରିବାର ଆବଶ୍ୟକତା ଅଛି ।

ଡ୍ରାଇଭର ଗାଡ଼ିକୁ ଟିକିଏ ଅଟକାଇ ଦେଇ, ପୁଣି ଚାରି ପାଞ୍ଚ ହାତ ପଛକୁ ନେଇଗଲ । । ନନ୍ଦ ମନକୁ ଦକା ଚୁଇଁଲା, କଣ ହେଲାକି ? ଦେଖିଲା ବେଳକୁ ବିଲେଇଟାଏ ରାସ୍ତାର ଏପଟରୁ ସେପଟକୁ ଯାଉଛି । ବିଚରା ବିଲେଇ ! ମନେ ମନେ ହସିଲା ନନ୍ଦ ।

ପଛରେ ରହିଗଲା ସେଇ ପାହାଡ଼; ଯାହାର ବୃକ୍ଷ, ଲତା, ଗୁଳ୍ମର ଶୋଭା, ଝରଣାର ବାରିଧାରା ତାର ମନ ଓ ନୟନକୁ ଅପୂର୍ବ ଆନନ୍ଦ ଦେଇଥିଲା । ଶରତ ଋତୁର ଚନ୍ଦ୍ରାଲୋକରେ ଚମତ୍କାର ଦିଶୁଥିବ ଏଇ ସ୍ଥାନ । ଚନ୍ଦ୍ର ମନର ଅଧିପତି । ସେ ପୁଣି ଔଷଧୀଶ । ବୃକ୍ଷ, ଲତା, ଗୁଳ୍ମମାନେ ତାଙ୍କରିଠାରୁ ଔଷଧିଗୁଣ ଆହରଣ କରନ୍ତି । ଗାଡ଼ି ଭିତରେ ବେଳେ ବେଳେ ଦୋହଲୁ ଥିଲା ନନ୍ଦର ଦେହ । ଚହଲୁଥିଲା ତାର ମନ । କେତେ ଦୂରେ ଚନ୍ଦ୍ର କେତେ ଦୂରେ କୁମୁଦିନୀ । ହୁଏତ ଶାରଦ ପୂର୍ଣ୍ଣିମା ଏଇ ପାହାଡ଼କୁ ସଙ୍ଖୋଳି ଆସିବ । କିନ୍ତୁ ସେତେବେଳେ ନନ୍ଦ କଣ ଏଠି ଥିବ ?

ଚନ୍ଦ୍ରଙ୍କ ସହିତ ସଙ୍ଗୀତ ଓ ଔଷଧି ଗୁଳ୍ମମାନଙ୍କର ସଂପର୍କର ଇତିବୃତ୍ତ ବଡ଼ ଚମତ୍କାର ।

ବ୍ରହ୍ମାଙ୍କ ପୁଅ ଅତ୍ରି ଋଷି ଚନ୍ଦ୍ରଙ୍କର ବାପା । ଚନ୍ଦ୍ର ପୁଣି ବିନା ମାଆରେ ପୁଅ ! ଏହା ବ୍ରହ୍ମାଙ୍କ କରଣି ! ତେଣୁ, ଅତ୍ରି ଚାହିଲେ ଚନ୍ଦ୍ରଙ୍କୁ ଦେବତା ଭାବରେ ଗ୍ରହଣ କରାଯାଉ । ବ୍ରହ୍ମା କହିଲେ- 'ତଥାସ୍ତୁ'। ଏହି ଅବସରରେ ଗନ୍ଧର୍ବ ଓ ଅପ୍ସରାମାନେ ମୁନି ଋଷିମାନଙ୍କ ସହିତ ସାମ ଗାନ କଲେ । ଚନ୍ଦ୍ରଙ୍କର ସ୍ତୁତିକଲେ । ଅପୂର୍ବ ସେହି ଗାନ ! ତାଆରି ପ୍ରଭାବରେ ବସୁଧାରେ ଔଷଧ ଗୁଳ୍ମମାନ ଉଠିଗଲା । ଏହା ହେଲା ସଂଗୀତର ମହିମା !

ପଦେ ପଦେ ଗୀତ ମନର ବିଷାଦକୁ ଧୋଇ ଦିଏ । ଗୋଟିଏ ଗୋଟିଏ ପଦ

ମନରେ ଉତ୍ସାହ ଭରିଦିଏ । ଏହା ନନ୍ଦ ଅନୁଭବ କରିଛି । ଗୀତ ସହିତ ନୃତ୍ୟ ଓ ବାଦ୍ୟ ପ୍ରତି - ଅନୁରାଗ ବଢ଼ିଛି ଏହି ଅନୁଭବରୁ । ସେ ଶୁଣିଛି ସଙ୍ଗୀତ ଶୁଣାଇ ନାନା ରୋଗର ଚିକିତ୍ସା ହୁଏ । ଏହାର ପ୍ରଭାବରେ ଫସଲ ବି ବଢ଼ିପାରେ । ତେଣୁ ଏଇ ଶୁଣା କଥା ଓ ପଢ଼ିଥିବା ପୌରାଣିକ ଉପାଖ୍ୟାନ ମନେ ପଡ଼ିଲେ, ସେ ଭାବେ ଏମିତି କିଛି କିଛି ପୁରାଣ କାହାଣୀ ସହିତ ବିଜ୍ଞାନର କଣ କିଛି ସମ୍ପର୍କ ଅଛି ? ପ୍ରଶ୍ନର ଉତ୍ତର ପାଇଁ ବେଳେ ବେଳେ ଅଣ୍ଡାଳି ହୁଏ ।

ବ୍ରହ୍ମପୁତ୍ର ଉପତ୍ୟକାରେ ଗୋଟିଏ ଜନଗୋଷ୍ଠୀ- ମିରି । ଏମାନେ କୁଆଡ଼େ ଚନ୍ଦ୍ରଙ୍କୁ ବାପା ଓ ସୂର୍ଯ୍ୟଙ୍କୁ ମା ବୋଲି ଜ୍ଞାନ କରନ୍ତି । ଏହା ସେମାନଙ୍କର ଧାର୍ମିକ ବିଶ୍ୱାସ । ଏହି ବାପା ମା'ଙ୍କ ଠାରୁ ମିରି ଜାତିର ଜନ୍ମ ବୋଲି ସେମାନଙ୍କର ଦୃଢ଼ ଧାରଣା । କିନ୍ତୁ ହିନ୍ଦୁ ପୁରାଣମାନଙ୍କରେ ସୂର୍ଯ୍ୟ, ଚନ୍ଦ୍ର ଦୁହେଁଯାକ ପୁରୁଷ ଦେବତା । ସେମାନଙ୍କ କୀର୍ତ୍ତି ଅପକୀର୍ତ୍ତି ବିଷୟରେ ପୁରାଣମାନଙ୍କରେ ନାନା ଉପାଖ୍ୟାନ ଖଞ୍ଜା ହୋଇଛି । କଳ୍ପନାର ଗତି ଓ ବିଶ୍ୱାସର ଧାରା ଭିତରେ ଅପୂର୍ବ ସେ ଛନ୍ଦଣି । ବିଚିତ୍ର ସେ ବାହୁ ବନ୍ଧନ ! କିଏ କହେ- ଏଗୁଡ଼ାକୁ ମିଥ୍, ମାନେ ମିଥ୍ୟା ! ପୁଣି କିଏ ଭାବେ, ଏହା ସତ୍ୟ, ଏହାର ଶ୍ରବଣ ଓ ପଠନରେ ପୁଣ୍ୟ ହୁଏ । ଏହା ପବିତ୍ର । ଏହା ବହୁ ପ୍ରାଚୀନ କାଳରେ ସତ୍ୟ, ଦ୍ୱାପର, ତ୍ରେତା ପ୍ରଭୃତି ଯୁଗମାନଙ୍କରେ ଘଟିଥିବା ଘଟଣା । ଏଥିରେ ଦେବଦେବୀଙ୍କ ଲୀଳା ଓ ମହିମାର ଯେଉଁ ବର୍ଣ୍ଣନା ଅଛି, ତାହା ମୁନିଋଷିମାନେ ଦେଖିଛନ୍ତି । ସେମାନେ ଏହାକୁ ଲେଖିଛନ୍ତି ବା ଲେଖାଇଛନ୍ତି । ବ୍ୟାସ କେମିତି ମହାଭାରତକୁ ଗଣେଶଙ୍କ ହାତରେ ଲେଖାଇଥିଲେ, ତାର ଦୃଷ୍ଟାନ୍ତ ଦିଆଯାଏ । ତଥାପି ଏହାରି ଭିତରେ ମିଶି ଯାଇଛି ଆମ ସଂସ୍କୃତିର ପ୍ରବହମାନ ଧାରା । ତାକୁ ଦେଖି ଦେଖାଇବାର ଉଦ୍ୟମରେ କିଏ ମଗ୍ନ ତ, କିଏ ମିଥ୍‌ର ମାନେ ବାହାର କରିବାର ଚିନ୍ତା ଓ ଚେଷ୍ଟାରେ କାର୍ଯ୍ୟରତ । ନନ୍ଦ, ତା ବାଳୁତ ବୟସରେ ବହୁତ ପୁରାଣ କାହାଣୀ ଶୁଣିଛି । ପୁଣି ଶୁଣିଛି - ମନପବନ କଠଉ, ପକ୍ଷୀରାଜ ଘୋଡ଼ା, ବୁଢ଼ୀ ଅସୁରୁଣୀ ଓ ଦୁଃସାହସୀ ରାଜପୁତ୍ର କାହାଣୀ, କଲୁରେଇ ବେଣ୍ଟ, ସାଧବ ଘର କଥା । ପିଲାଦିନ ତମାମ୍ ଏଗୁଡ଼ିକ ତା ମନକୁ ଖୁସି କରି ରଖିଥିଲା । ସୁଖ ଦେଉଥିଲା । କଥାଗୁଡ଼ିକରେ ଗୋଟିଏ ଘଟଣାରୁ ଘଟଣାନ୍ତରକୁ ଗତି କଲାବେଳେ ମନରେ ତାର କୌତୁହଳ ସୃଷ୍ଟି ହେଉଥିଲା । ଏଭଳି ଗପ ପିଲାମାନଙ୍କର କଣ କରେ ବା ନକରେ, ସେ ବିଷୟରେ ପରଖ ହୋଇ ନାହିଁ ବୋଧ ହୁଏ । ଗାଡ଼ିର ଗତି ସହିତ ସମ୍ବନ୍ଧ ନରଖି, ନାନା ଦିଗକୁ ଗତି କରୁଥାଏ ନନ୍ଦର ମନ ।

"ଆବେ ଶଳା" ବୋଲି ପାଟିଟାଏ କରି ଗାଡ଼ିର ବ୍ରେକ୍ ଦେଇ ଦେଲା ଡ୍ରାଇଭର ।

ନନ୍ଦ ଅନାଇଲା, ବୁଢ଼ାଟିଏ ବାହାଙ୍ଗିର ଦୁଇ ପଟେ ନାନା ଆକୃତିର ହାଣ୍ଡି, ଆଟିକା, ମାଠିଆ ଧରି ଶଡ଼କର ଏପଟୁ ସେପଟକୁ ଧୀରେ ଧୀରେ ଯାଉଛି । ସେପଟେ ଧାଡ଼ିଏ ଗଛ । ଛାଇ ପଡ଼ିଛି । ପୁଣି ସେଇ ପାଖେ ଚାଲିବା ସୁବିଧା । ଲୋକଟି ବୋଧହୁଏ ସେଥିପାଇଁ ଏପାଖରୁ ସେପାଖକୁ ଯାଉଛି ।

ଗହୀର ବିଲରୁ ଘାସ ଗୋଛାଏ ମୁଣ୍ଡାଇ ଶଡ଼କ ଉପରକୁ ଉଠିଆସୁଥିବା ଲୋକଟିଏ ଡ୍ରାଇଭରକୁ ଅନାଇ କହିଲା- "କାଲାଟା ଆଜ୍ଞା । ହରନ୍ ଶୁଣି ପାରି ନାହିଁ କି ମଟର ଆବାଜ ବାରି ପାରି ନାହିଁ ।"

ପରକୁ ଆପଣାର କଲାପରି 'ହର୍ଣ୍ଣ', 'ଆଓ୍ୱାଜ' ଆଦି ବାହାର ଶବ୍ଦଗୁଡ଼ିକୁ ନିଜସ୍ୱ କରି ନେଇଛି ଆମ ଭାଷା !

ହାଣ୍ଡି ଭାର ଧରିଥିବା ବୁଢ଼ାଟି ଥରେ ସେ ଲୋକଟି ଆଡ଼େ, ଥରେ ଡ୍ରାଇଭର ଆଡ଼େ ଅନାଇଲା, ମୁହଁରେ ଭାଣ୍ଡିଆ ଭାଣ୍ଡିଆ ହସ ।

ନନ୍ଦ ଆଶ୍ୱସ୍ତ ହେଲା ଯେ, ଲୋକଟି କାଲା । ସେ ଗାଡ଼ି ଶବ୍ଦ ବା ହର୍ଣ୍ଣ ଶୁଣୁ କି ନଶୁଣୁ, ଅନ୍ତତଃ ଡ୍ରାଇଭରର ଗାଳିଟା ଶୁଣିପାରିନଥିବ ।

ସେ ଡ଼ି.ଏଫ,ଓ ଙ୍କ ନାଁ କଣ କେଜାଣି; ଶୀଳାର ବାପା । ଝିଅର ପାଠ ପଢ଼ା ଅଧା ରଖି ବାହାକରାଇ ଦେଉଛନ୍ତି । ଶ୍ରୁତି ଏଥିପାଇଁ ତାଙ୍କୁ ଗାଳି ଦେଉଛି । ସେ କଣ ଶ୍ରୁତିର ଗାଳି ବା ଆଉ କାହାର ପସନ୍ଦ ଅପସନ୍ଦ କଥା ଶୁଣି ପାରୁଥିବେ ? ସେ ଚାହୁଁଛନ୍ତି ରାସ୍ତାର ଗୋଟିଏ କରକୁ ଚାଲିଯିବେ । ସେଠି ଚାଲିବା ସୁଖକର । ନିରାପଦ । ସେ ନିଷ୍ଚୟ ଘର ଓ ବର ଦେଖିଥିବେ । ତାଙ୍କ ମନକୁ ପାଇଥିବ, ଭାବିଥିବେ, ସେଇଘରେ ସେଇ ବର ସହିତ ଝିଅଟି ତାଙ୍କର ସୁଖରେ ଓ ନିରାପଦରେ ରହିବ । ଯଦିବା କେଉଁ ବନ୍ଧୁ ବାନ୍ଧବ କହୁଥିବେ- 'କାହିଁକି ଛୁଆଟାକୁ ଏଇ ବୟସରୁ ବାହା ଦେଉଛନ୍ତି ?' ସେ ନୀରସ ହସଟିଏ ହସି ଦେଉଥିବେ । ମନେ ମନେ ଭାବୁଥିବେ ଯାହା ବୋଝ, ତାକୁ ଗରୁ । ତଥାପି, କହିବା ଲୋକର ମନ ଜଗିବାକୁ ଯାଇ, ଜବାବ୍ ଦେଉ ନଥିବେ । ମୁଚୁକୁନ୍ଦ ହସଟିଏ ହସି ଦେଉଥିବେ । କଦବା କାହା କଥାରେ ।

ଚନ୍ଦ୍ର ଓ ସୂର୍ଯ୍ୟ ଆକାଶ ମାର୍ଗରେ ଉଦୟ ଅସ୍ତର ଲୀଳା ଖେଳା ଦେଖାଉଛନ୍ତି । ତାଙ୍କ ବିଷୟରେ କିଏ କଣ କଳ୍ପନା କରୁଛି କି କଣ କରୁଛି, ସେଥିରେ ସେମାନଙ୍କର ଯାଏ କେତେ, ଆସେ ବା କେତେ ! ସେମିତି କଇଁ ଫୁଲ ଓ ପଦ୍ମ ଫୁଲର କଥା ।

ନନ୍ଦ ନିଜ ଭାବନାକୁ ନିଜେ ଅପସନ୍ଦ କରିଦେଲା ମନେ ମନେ । ଧ୍ୟାତ୍ କଣ ଗୁଡ଼ାଏ ମନରେ ପଶିଯାଉଛି । ଶ୍ରଦ୍ଧା ତ ଆଉ କଇଁ ଫୁଲ କି ପଦ୍ମ ଫୁଲ ନୁହେଁ; ପୁଣି ସେ ନିଜେ ଚନ୍ଦ୍ର କି ସୂର୍ଯ୍ୟ ବି ନୁହେଁ; ସେ ଚବିଶ ପଚିଶ ବର୍ଷ ବୟସର ଝିଅଟିଏ । ତାଠାରୁ ହୁଏତ ବୟସରେ ସାତ ଆଠ ବର୍ଷ ସାନ ହୋଇଥିବ ।

ବାପାଙ୍କ ପାଖକୁ ବହୁତ ପ୍ରସ୍ତାବ ଆସୁଥିଲା । ସେ ତାକୁ ଏଡ଼ାଇ ଦେଉଥିଲା । ଋଣ ଭାର ତୁଟାଇବା ଓ ଘର ଦ୍ୱାର ସଜାଡ଼ିବା ଆଳରେ ଦିନ ଗଡ଼ାଉଥିଲା । ଆବଶ୍ୟକତା ଅନୁସାରେ ଘରର ମରାମତି ଓ କିଛି ଅଂଶ ତୋଳା ହେବା କାମ ହୋଇ ଯାଇଛି । ଋଣ ବି ଶୁଝି ଗଲାଣି । କିନ୍ତୁ ତା ସହିତ ବଢ଼ି ଯାଇଛି ନନ୍ଦର ବୟସ । ଆଉ ଏବେ ପୁରୁଣା କି ନୂଆ କୌଣସି ପ୍ରସ୍ତାବ ଆସୁ ନାହିଁ । ବରଂ ବଢୁଛି ବାପା ବୋଉଙ୍କ ହତାଶା ।

ଭୁବନେଶ୍ୱରରେ ଚାରିଦିନ ରହିବାକୁ ପଡ଼ିବ । ସେକ୍ରେଟାରୀଏଟ୍‌ରେ ଆଲୋଚନା ଅଛି । ଅଫିସ୍ କାମରେ ଦୁଇଦିନ କଟିଯିବ । ସ୍ଥାନୀୟ ବିଧାୟକ ଏବେ ସେଇଠି ଅଛନ୍ତି । ତାଙ୍କ ସହିତ ସାକ୍ଷାତ କରିବା ଦରକାର । ଅନେକ ଦିନ ପରେ ଭୁବନେଶ୍ୱର ଫେରୁଛି । ଏ ଭିତରେ ସହରଟି ଅନେକ ବଦଳି ଯିବଣି ।

ମନ ଭିତରକୁ ବିତିଲା ଦିନର ସ୍ମୃତି ଚହଟି ଅସିଲା । ପୁରୁଣା ଥାନ, ପୁରୁଣା ଜନ, ଯାହାଙ୍କୁ ଯେଉଁଠି ସମ୍ଭବ ସଙ୍ଗୋଳି ଆସିବାକୁ ହେବ । ଏ ଭିତରେ ସେମାନଙ୍କ ଚେହେରା ବଦଳି ଯାଇଥିବ ।

ମନ ଭିତରେ ନାନା ଚିନ୍ତା ଲଟେଇ ଯାଉଥାଏ ।

## ।। ୨୨ ।।

"ବୁଝିଲ ନିକି, ଶାସ୍ତ୍ରରେ ଅଛି - ଜଠର, ଜଳାଶୟ, ଜାୟା, ଜାମାତା............... ଆରଟା କଣ ତ...........ଅଃ, ହେତୁ ପଡୁନି.........ହିଁ.......ଜାତ ଦେବ, ଏମାନଙ୍କ କ୍ଷୁଧା ମେଣ୍ଟାଇ ଖୁସି କରିବା କାଠିକର ପାଠ । ଯେତେ ଢ଼ାଳିରେ, ଯେତେ ଦେଲେ ବି ଏମାନେ ସନ୍ତୋଷ ହୋଇ ହଉ, ଥାଉ ଯଥେଷ୍ଟ ହେଲା ବୋଲି ସୂଚନା ଦେବେ ନାହିଁ "- ପ୍ରବଚନ ଚାଲିଛି ଭଦ୍ରଲୋକଙ୍କର ।

ପୃଥୁଳବପୁ, ଲମ୍ବୋଦର, ସଚିତ୍ର କପୋଳ, ଶୁଭ୍ରବସନାବୃତ ପ୍ରୌଢ଼ ଜଣକ କହିବା

ଭିତରେ ଅନାଉଥାନ୍ତି ଶ୍ରୋତୃବର୍ଗଙ୍କୁ । ତଦୁପରି ଆଖିରେ ଚତୁରତା ଚହଟାଇ, ପୁନଃ ପୁନଃ ଅବଲୋକନର ଭଙ୍ଗି ବଡ଼ ଉପଭୋଗ୍ୟ ।

ଶ୍ରୋତା ଜଣକ ସୁବଳବାବୁ ହେବେ ପରା ! ନନ୍ଦ ନିରେଖି ଅନାଇଲା । ମନେ ମନେ ଭାବିଲା, ହଁ, ତ! ଇଏ ଏଠି କେମିତି ?

ଏଇ ସରକାରୀ ଅତିଥି ଭବନରେ ଜଣେ ବ୍ୟବସାୟୀ ବ୍ୟକ୍ତିଙ୍କ ଅବସ୍ଥାନ ଓ ସ୍ୱଚ୍ଛନ୍ଦ ଚଳ ପ୍ରଚଳ ତ ସ୍ୱାଭାବିକ ନୁହେଁ ! ତଥାପି, ସେ ମନର ଭାବନା ମନରେ ଛପାଇ ସେମାନଙ୍କ ଆଡ଼କୁ ଆଗେଇଲା । ତାଙ୍କୁ ଏତେ ଦିନ ବ୍ୟବଧାନରେ ଦେଖି ଖୁସି ଲାଗିବା କଥା । ଅନ୍ତତଃ ମୂର୍ତ୍ତିବାବୁଙ୍କ ବିଷୟରେ କିଛି ବୁଝି ହେବ ତ !

ମୂର୍ତ୍ତିବାବୁ ଓ ମିଶ୍ରବାବୁଙ୍କର ବଦଳି ହୋଇଯାଇଛି ଓ ସେ ପୁରୁଣା ଷ୍ଟେସନ ମାଷ୍ଟର ଅବସର ଗ୍ରହଣ କରିଛନ୍ତି । ନନ୍ଦ ଏହି ଖବର ପାଇ, ରେଲୱେ କଲୋନୀରୁ ଫେରି ଆସିଥିଲା ବିଷାଦ ବିଦୀର୍ଣ୍ଣ ହୃଦୟରେ । ତାର ମନେ ପଡ଼ିଯାଉଥିଲା ସେଇ ବିତିଲାଦିନର ଅଭୁଲା ସ୍ମୃତି । ଅଶ୍ରୁପୂର୍ଣ୍ଣାକୁଳେକ୍ଷଣମ୍ ନନ୍ଦ, ଛାତିର ବେଦନାକୁ ଆଖିବାଟେ କାଢ଼ି, କାଢ଼ିପାରୁ ନଥିଲା । ଏହାର କେତୋଟି ଘଣ୍ଟା ପରେ ସୁବଳବାବୁଙ୍କ ସହିତ ଆକସ୍ମିକ ସାକ୍ଷାତ ଗ୍ରୀଷ୍ମେ ଘନାଗମ ପରି ମନେ ହେଲା । ତଥାପି, ସେଠି ଦୁଇ ଜଣଙ୍କର କୌଣସି ଆଳାପ ସମୟରେ ତୃତୀୟ ବ୍ୟକ୍ତି ଭାବରେ ପହଞ୍ଚି ଯିବା ଉଚିତ୍ ଲାଗିଲା ନାହିଁ । ସେ ଦ୍ୱାର ପର୍ଯ୍ୟନ୍ତ ଆଗେଇ ଯାଇ ଫେରି ଆସିଲା । କିନ୍ତୁ ନିଜର ପ୍ରକୋଷ୍ଠକୁ ଯାଇ ପାରିଲା ନାହିଁ ।

ଏତେ କୌତୁହଳ ଭରା ଆଳାପରେ ବାଧା ସୃଷ୍ଟିକରିବା ଠିକ୍ ହେବ ନାହିଁ । ରସ ଭଙ୍ଗ ହେବ । ଅନ୍ତତଃ ଶୁଣା ଯାଉ । ସେ ଉଚିତ୍ ଅନୁଚିତ ସୀମା ଭିତରେ ଅନ୍ଦୋଳିତ ହେଲା । ବାଟ ଭାଙ୍ଗି କାନ ଓ କଥାର ପରିଧି ଭିତରେ ଟହଲ ମାରିଲା । କାନରେ ପହଞ୍ଚି ଯାଉଥାଏ ସେମାନଙ୍କ ଆଲୋଚନା ।

ଲୋକଟି କହୁଥାଏ -"ବୁଝିଲେ ନିକି, ଜାମାତା ସିନା ପର ପୁଅ, ତାର ଜାୟା ତମର କଣ ? ସେ ତ ପର ନୁହ, ତମରି ଝିଅ, ଜାମାତାକୁ ତମେ ଯୋଉ ଚାରଣାର ସମ୍ପତ୍ତି ଦେବ, ଝିଅ ସେଥିରେ ଅଣାଏ ମିଶାଇବ ନା ନାହିଁ ? ଆଖରି, ସମ୍ପତ୍ତି ତମ ଝିଅ ଓ ତା ପିଲାଏ ଭୋଗ କରିବେ । କୁଣ୍ଠିତ ହଉଚ କିଆଁ ।"

'ମୁଁ କୁଁ........' ସୁବଳ ବାବୁ କଣ କହି ଆସିବା ବେଳକୁ, ସେ ମାଡ଼ିବସି କହୁଥାଏ- ନାଇଁ ନାଇଁ, ମୋ କଥାଟା ବୁଝିଲ ନିକି, ସମୁଦିଏ ତମର ଜାଗା, କୋଠା ସବୁ ବୁଝିଦେଇଛନ୍ତି । ବାୟା ସହିତ ଦର କଷାକଷି ବି ହୋଇ ଯାଇଛି । ହେଲ୍ଲେ, ମୁସ୍ତରୀ ପକ୍ଷ ହେଲ ତମେ, କିଓ, ତମେ କିଏ, ତମ ଜୁଆଇଁ କିଏ ? ହେଲା । ମୁଁ ତୁମ ସମୁଦିଙ୍କି ବୁଝାଇ ଦେଲି - କନ୍ୟା ସହିତ ଗୋ ସୁବର୍ଣ୍ଣାଦି ଯାହା ପାଇଲ ପାଇଲ, ବଡ଼ ଧୂମ୍‌ଧାମ୍‌ରେ ବାହାଘର ହେଲା, ଦି ପିଠିର ଖର୍ଚ୍ଚ ବି କନ୍ୟା ପକ୍ଷ ସମ୍ଭାଳିଲେ । ତା ବାଦେ ବି ସେମାନେ କହିଥିଲେ ଭୂମି ଖଣ୍ଡେ ଦେବେ ବୋଲି । ସେମାନେ ଭଦ୍ର ଲୋକ । ଏଇ ଦେଖ, ଦେଲେ କି ନାହିଁ ? ହଇଓ, ମୋ କଥା ଶୁଣି ତମ ସମୁଦିଙ୍କର ଜବାବ୍ ଦବାକୁ ଆଉ ତୁ ଅଛି ! ମାନି ଗଲେ । କହିଲେ - ହଁ ସୁବଳବାବୁ ଖାଣ୍ଟି ଲୋକ । ହେଲେ ତାଙ୍କ ମନରେ ଟିକିଏ କେମିତି ଉଁ... ଚୁଁ ଥିବା ପରି ଲାଗିଲା ।"

ସୁବଳବାବୁ ଅଟକିଲା ବାକ୍ୟଟି ପୂରଣ କରିବାକୁ ଯାଇ କହିଲେ 'ମୁଁ କୁଣ୍ଠିତ ନୁହେଁ ଯେ.........'

ଲୋକଟା ତାଙ୍କୁ ବାକ୍ୟ ପୂର୍ଣ୍ଣ କରିବାକୁ ନଦେଇ, କହୁଥାଏ-"ଓହୋ,ସେ ଜାଣି ନାହାନ୍ତି କି । ତମେ କାଇଁ କି କୁଣ୍ଠିତ ହେବ । ତମ ଆର ସମୁଦି କଣ ପଦେ ଫୋଡ଼ି ଦେଇଥିବେ । କିଓ ତମର କ'ଣ ଏମିତି ଅଭାବ ଅଛି ? ପୁଅ ପାଇଁ ପୁଣି କରିବ ନି ?"

ସୁବଳବାବୁ ଏଥର ଟିକିଏ ଉଚ୍ଚ ସ୍ୱରରେ କହିଲେ - "ଶୁଣନ୍ତୁ ମୋତେ ତ କଥା କୁହାଇ ଦେଉ ନାହାନ୍ତି ..........."

ସେ ବପୁସ୍ମାନ ଲୋକଟା ନାନା ପ୍ରକାର ହସ୍ତ ମୁଦ୍ରା, ମସ୍ତକ ମୁଦ୍ରା କରି କହିଲା - "ହୁଁ..........ହୁଁ........କୁହ ।"

ସୁବଳବାବୁ କହିଲେ- "କୋଠା ସହିତ ଏତେ ବଡ଼ ଜାଗା କିଣିଲୁ । ତିନି ଲକ୍ଷ ଟଙ୍କା ପଡ଼ିଲା । ପରୁଆ ନାଇଁ । ତେବେ, ମୁଁ କହୁଛି କଣ କି,........... କୋଠା କଥା କହୁନି, ସେଇଟା ତ ଝିଅର, ଜାଗାରୁ ଷାଠିଏ ସତୁରି ଡ଼େସିମେଲ୍ ପୁଅ ନାଁରେ ରଖିବି । କୋଠା ସହିତ ଅବଶିଷ୍ଟ ଜାଗା ଝିଅ ଜୁଆଇଁଙ୍କର । ସେଥିରେ ମଜି ଧୂଳି ନାଇଁ । ମହାଶୟ, ଆପଣ କୁହନ୍ତୁ; ମୁଁ କୋଉ ନାକରା କଟାଟାଏ କହିଲି ?"

ଲୋକଟିର ମୁହଁ ଶୁଖିଗଲା । କହିଲା - "ହଉ, ତମେମାନେ ହେଲ ବନ୍ଧୁବାନ୍ଧବ । ତମର ତମେ ତେଲି ତେଲ ହୋଇ ମିଶିଯିବ । କିଓ, ଆମେ ତ ପିଡ଼ିଆ ! କହୁନ କାଇଁକି ?

ସୁବଳବାବୁ ଟିକିଏ ପାମ୍ପଲେଇବା ସ୍ୱରରେ କହୁ ଥାଆନ୍ତି- "ନାଇଁ ନାଇଁ, ସେ କଥା ନୁହଁ, ଆପଣ ଆମ ଦୁହିଙ୍କ ଲୋକ୍ । ନହେଲେ ମୁଁ କୋଉଠି ସେଠି ବନ୍ଧୁ କରି ପାରି ଥାଆନ୍ତି ? ତା କହୁନି । ମୋ ଜବାବ୍ ମୁଁ ରଖିବି । ଜାଗା ଭୁବନେଶ୍ୱରରେ ବାଧେରେ କିଣାହେବ । ଯାହା ପଡ଼ିବ ଅବଶ୍ୟ ଦେବି । ଆଜ୍ଞା କଥା ଦେଇଥିଲି ପରା, ନଦେବି କେମିତି ?"

ଲୋକଟା ଧାଉଁ କିନା ମାଡ଼ି ବସିଲା ପରି କହିଲା- "ସେଇତ ତମର ସେଇ କଥା, ସେଇ ମରଦ୍ କା ବାତ୍ ଉପରେ ବାହାଘର ହୋଇ ଗଲା । ଆରେ ବାବୁ, ଆମେ ହେଲୁ ଭଦ୍ରଲୋକ, କଥା ପଡ଼ିଲା ବେଳେ ଥିଲୁ ବୋଲି, ତେଣେ ସିଏ କହୁଛନ୍ତି । ଏଣେ ତେମେ କହୁଚ । ଏଥିରୁ କଣ ଆମକୁ ହାତୀ ଘୋଡ଼ାଟାଏ ମାନ କିଏ ଦେଇ ପକାଇବ ନା କଣ ହୋ ?"

ଲୋକଟା ତାର ବକ୍ତବ୍ୟ ଶେଷ କରି ଗୁମ୍‌ମାରି ବସିରହିଲା । ସୁବଳବାବୁ ବି କିଛି ସମୟ ନୀରବ ରହି, କହିଲେ- "ଦେଖନ୍ତୁ, ମୋ ଝିଅଟିକୁ ଯେମିତି ଏଥି ପାଇଁ କିଛି ଶୁଣିବାକୁ ନ ମିଳେ । କିଛି ଗଞ୍ଜଣା ସହିବାକୁ ନପଡ଼େ ।"

ଲୋକଟା ଆପଣାର ଯୋଡ଼ହସ୍ତକୁ ଉପରକୁ ଟେକି ରଖି କହିଲା- "ରାମ-ରାମ, ଆପଣ ବନ୍ଧୁ ବାନ୍ଧବ ଲୋକ । ଆମେ ଯେତେ ହେଲେ ବି ବାହାର ଲୋକ । ଏତେ ବଡ଼ କଥାଟାଏ ଯେତେ ବେଳେ ମନରେ ପଶିଲାଣି, ମୁଁ ତାକୁ ଜଣାଇ ଦେବି । ଆପଣଙ୍କର ଆଶଙ୍କାଟା କାହିଁକି ମନ ଭିତରେ କୁହୁଳୁଥିବ ? ଆପଣା ଆପଣା ଭିତରେ କଥା ଭାଷା ହୋଇଯିବେ । ତେଣିକି ଆପଣମାନଙ୍କ କଥା, ମୋତେ ସେ ଭିରତକୁ ଟାଣନ୍ତୁ ନାହିଁ ।"
ସୁବଳବାବୁ ଲୋକଟାର ହାତକୁ ଧରି ପକାଇ କହିଲେ- "ତା' ମା କହୁଥିଲା, ପୁଅ ହୋଇଥିଲେ ତ ଭାଗଟାଏ ପାଇ ଥାଆନ୍ତା, ତାକୁ ଯଉତୁକ ବାବତରେ ଦେଇ ଦେବାକୁ କିଆଁ ଆଗ ପଛ ହେବ ? ପୁଅ କିଏ ଝୁଆଁଇ କିଏ ?"

ଲୋକଟା ଜୋରରେ ମୁଣ୍ଡ ଝାଙ୍କି ଦେଇ କହିଲା- "ସେଇତ ! ମୋ ତୁଣ୍ଡରୁ ତ ନୁହ ଅନ୍ତର ଭିତରୁ କଥାଟା ଓଟାରି ନେଲେ ।........" ଆଉ କଣ କହିବା ଆଗରୁ ହଠାତ୍ କଥା

ବନ୍ଦ କରି ଝୁଙ୍କି ପଡ଼ି ଅନାଇଲା, ନନ୍ଦ ଉପରେ ତାର ଦୃଷ୍ଟି ପଡ଼ିଲା । ନିରେଖିଲା ପରି ଅନାଇ ସୁବଳବାବୁଙ୍କୁ ଆଖିରେ ସୂଚନାଦେଇ ପଚାରିଲା- "ଇଏ କିଏ ?"

ନନ୍ଦ ଆପଣାର ଅଜ୍ଞାତରେ ଦୁଆର ମୁହଁ ପାଖାପାଖି ଅଟକି ଯାଇଥିଲା ।

ସୁବଳବାବୁ ଚଉକିରୁ ଉଠି ଆସି ନନ୍ଦକୁ ଦେଖି ଦୋ ଦୋ ଚିହ୍ନା ହେଲା ଭଳି ଅନାଇ ରହିଲେ ।

ନନ୍ଦ ନମସ୍କାର କରି ପଚାରିଲା- "କଣ ଆଜ୍ଞା ଚିହ୍ନି ପାରୁନାହାନ୍ତି ?"

ସୁବଳବାବୁ ବିନମ୍ର ପ୍ରତିନମସ୍କାର କରି ମନେ ପକାଇବାକୁ କଷ୍ଟ କରୁ ଥାଆନ୍ତି । ନନ୍ଦ ତାଙ୍କୁ ସ୍ମରଣ- ବିସ୍ମରଣ ମଧ୍ୟରେ ଅଧିକ ସମୟ ଘାଣ୍ଟି ହେବାକୁ ନଦେଇ, କହିଲା- "ମୂର୍ତ୍ତିବାବୁଙ୍କ ଘରେ ଦେଖା ହୋଇଥିଲା ।"

ସୁବଳବାବୁ ମନେ ପକାଇ ଦେଇ ଭାରି ଖୁସି ହୋଇଗଲେ । ନନ୍ଦର ହାତ ଧରି ପକାଇ କହିଲେ, "କ୍ଷମା କରିବେ ଅଜ୍ଞା, ଅନେକ ଦିନ ହୋଇ ଗଲାଣି ତ, ତା ଛଡ଼ା ମାତ୍ର ଗୋଟିଏ ଥର ଅଳ୍ପ ସମୟ ପାଇଁ ଭେଟ ହୋଇଥିଲା । ତେଣୁ ହଠାତ୍ ଚିହ୍ନି ପାରିଲି ନାହିଁ,........... ଆଉ ଆପଣଙ୍କର ଖବର କିଛି କୁହନ୍ତୁ । କୋଉଠି କଣ କରୁଛନ୍ତି ?"

ନନ୍ଦ ସଂକ୍ଷେପରେ ଉତ୍ତର ହେଲା- "ଆପଣମାନଙ୍କ ଶୁଭେଚ୍ଛାରୁ ଭଲ ଅଛି । ଏବେ ଏଠି ଅଳ୍ପଦିନ ପାଇଁ ଅଛି । ଆପଣ କୁହନ୍ତୁ- ଆପଣଙ୍କ ଖବର ଅନ୍ତର କଣ, ମୂର୍ତ୍ତି ବାବୁଙ୍କ ଖବର କଣ ?"

ସୁବଳବାବୁ କ୍ଷମା ମାଗିବା ଭଙ୍ଗିରେ କହିଲେ- "ମୂର୍ତ୍ତିବାବୁଙ୍କ ଖବର ଆଜ୍ଞା ରଖି ପାରିନି । ସେ ଆମ ମିଶ୍ର ବାବୁଙ୍କର ପ୍ରୀତି ବନ୍ଧୁ । ଏବେ ଆଉ ଭୁବନେଶ୍ୱରରେ ନାହାନ୍ତି । ଓ୍ୱାଲଟିୟର ବଦଳି ହୋଇଥିଲା ବୋଲି ଶୁଣୁଥିଲି । ସେ ଅନେକ ଦିନ ତଳର କଥା ।"

ନନ୍ଦ ପଚାରିଲା- "ତାଙ୍କ ଠିକଣା ଦେଇ ପାରିବେ ?"

ସୁବଳବାବୁ କହିଲେ- "ଆପଣଙ୍କ ଠିକଣା ଦିଅନ୍ତୁ । ମୁଁ ମିଶ୍ରବାବୁଙ୍କଠୁ ବୁଝି ଆପଣଙ୍କୁ ଚିଠିରେ ଜଣାଇ ଦେବି ।"

ନନ୍ଦ ପଚାରିଲା- "ଆପଣଙ୍କର ଝିଅ, ଯାହା ବାହାଘର ବୁଝା ବୁଝି ଚାଲିଥିଲା, ସେ ଦାୟିତ୍ୱ ତୁଟି ଗଲାଣି ?"

ସୁବଳବାବୁ କହିଲେ-"ହଁ ସେଇ ଯୋଉ..... । ଯାହା ହେଉ ଆଜ୍ଞା ଆପଣ ସବୁମନେ ରଖିଛନ୍ତି । ଠାକୁରଙ୍କ କୃପାରୁ ସେଇଟିର ବାହାଘର ହୋଇଯାଇଛି । ଭଲ ଜାଗାରେ ହେଲା ଆଜ୍ଞା । ସେଠି ଯୋଉ ପଡ଼ିଥିଲା, ନ ହୋଇଛି ଭଲ ହୋଇଛି । ଟିକିଏ ସତାରି ଯିବାରୁ ତାଠାରୁ ବହୁ ଗୁଣରେ ଭଲ ହେଲା । ଭଲ ଘର, ବର ଦେଖି ବାହା ଦେଇପାରିଲି । ଜ୍ୱାଇଁ ଇଞ୍ଜିନିୟର । ଝିଅକୁ ଭଲରେ ରଖିଛନ୍ତି । ସେଇ ଝିଅଟି ପାଇଁ ଜାଗା ଖଣ୍ଡିଏ କିଣିବାକୁ ଆସିଥିଲି ।"

ସେ ଲୋକଟା ତେଣୁ ଡ଼ାକ ଛାଡ଼ିଲା- "ସୁବଳବାବୁ ଆଜ୍ଞା, ମୁଁ ଏଥର ଯାଉଛି ।"

ସୁବଳବାବୁ ନନ୍ଦର ହାତକୁ ଧରି ପକାଇ, କହିଲେ - "ଟିକିଏ ଆଜ୍ଞା

ନନ୍ଦ କହିଲା - "ହଁ, ହଁ, ଇଏ ଗୋଟାଏ କଥା । ମୁଁ ବରଂ ଆପଣଙ୍କ କଥା ବାର୍ତ୍ତାରେ ବାଧା ଦେଲି । ଆପଣ ଆସନ୍ତୁ । ପଛେ ଭେଟିବା ।"

ସୁବଳବାବୁ ଯାଉ ଯାଉ ମୁହଁ ବୁଲାଇ ପଚାରିଦେଲେ-"ଏଇଠି ଅଛନ୍ତି ?"

ନନ୍ଦ କହିଲା- "ଆଜ୍ଞା" । ପୁଣି ତାର ମନେ ପଡ଼ିଗଲା, ଏଇ ସୁବଳବାବୁଙ୍କ ମୁହଁରୁ ବହୁ ଦିନ ତଳେ ଶୁଣିଥିବା ପ୍ରବାଦ-When a man does not know what harbour he is making for, no wind is the right wind.ଏବେ, ସୁବଳବାବୁଙ୍କ ଲକ୍ଷ୍ୟ କଣ ? ତାଙ୍କ ଜାହାଜର ଗତି କୁଆଡ଼କୁ ?

## ॥ ୨୩ ॥

ଆକଶରେ ମେଘ ଘୋଟି ରହିଛି । ସକାଳୁ ପାଗଟା ଟିକିଏ କୋହଲା ଅଛି । ଉମା ବାରିପଟୁ କଷି କଖାରୁ ତୋଳାଉଥିଲେ । ରାମ ଯାଇଛି ମାଂସ କିମାପାଇଁ । କଷି କଖାରୁ ସହିତ ମାଂସ କିମା ପଡ଼ି ରନ୍ଧା ହେବ । ପିଆଜ ଚକୁଳି ସହିତ ଏଇ ତରକାରୀ ଯଦୁବାବୁଙ୍କର ମନଘେନା ଖାଦ୍ୟ । ଉମା ସବୁଦିନ ତାଙ୍କ ମନ ଓ ରୁଚି ଅନୁସାରେ ବଡ଼ ଯତ୍ନରେ ବିଭିନ୍ନ ସମୟର ଖାଦ୍ୟ ରାନ୍ଧନ୍ତି । ଯଦୁବାବୁ ବି ଉମାଙ୍କ ଯତ୍ନରେ ଉଣା କରନ୍ତି ନାହିଁ ।

ପୁଅ କାହିଁ ଦୂର ଦୂରାନ୍ତରେ ଅଛି । ଦୁଇ ହଜାର ମାଇଲ ବାଟ । ଘରେ ଟେଲିଫୋନ୍‌ଟା ଅଛି ବୋଲି ସିନା, ନୋହିଲେ ମନ ସମ୍ଭଳା ପଡୁ ନଥାନ୍ତା । ସିଏ କେତେବେଳେ କେମିତି ସେପଟୁ ଫୋନ୍ କରେ । ତା ବାପା ବି ବେଳେ ବେଳେ ତା ଖବର ଫୋନ୍ କରି ବୁଝନ୍ତି । ଝିଅଟା ଛୁଟିରେ ଆସିଥିଲା ଯେ, ଶ୍ରଦ୍ଧା ସାଙ୍ଗରେ ଯାଇଛି । ଉମା ନିଜ ଜାଣତରେ କେବେହେଲେ ଦୁଇ ଝିଅଙ୍କ ଭିତରେ ପରାଭିନ୍ନ କରି ଦେଖି ନାହାନ୍ତି । ଏତେ ବଡ଼ ବଙ୍ଗଳାଟା । ଖାଁ ଖାଁ ଲାଗୁଛି ।

ରାମ ଦେଖିଲା ବାବୁ ଦାଣ୍ଡ ବାରଣ୍ଡାରେ ଚୁପ୍ ଚାପ୍ ବସିଛନ୍ତି । ଯଦୁବାବୁ ଏଇ ମିଜାଜ୍‌ରେ ଥିବାବେଳେ ରାମର ଭାରିଡ଼ର । ଏମିତି ବସିଥିବା ସମୟରେ, ବେଳେ ବେଳେ ଗମ୍ଭୀର ସ୍ୱରରେ 'ରାମ' ବୋଲି ଡ଼ାକି ଦିଅନ୍ତି । ଚଟାପଟ୍ ପହଞ୍ଚି ନଗଲେ ଭାରି ରାଗି ଯାଆନ୍ତି । ଚଟ୍ କରି ଉଠି ଆସି ଘର ବାହାର ଘେରାଏ ବୁଲି ଯାଆନ୍ତି । ଚାରି ଆଡ଼େ ଘେରାଏ ଆଖି ବୁଲାଇ ନିଅନ୍ତି । ଦୃଷ୍ଟିରେ ପଡ଼ିଲେ ଗାଳି ଦିଅନ୍ତି ।

ବାବୁଙ୍କ ଗାଳି ବୋଇଲେ ଦି ପଦ - 'କାଲା' 'ବଦମାସ୍' । କିନ୍ତୁ ବଡ଼ କଡ଼ା ସ୍ୱରରେ ସେଇ ଦିପଦ କହନ୍ତି । ସେତିକିରେ ଛାତିରୁ ଦଲକାଏ ରକ୍ତ ଖସିପଡ଼ିଗଲା ପରି ଲାଗେ ରାମକୁ । କିନ୍ତୁ ବାବୁ ଯେତେ ରାଗିଥିଲେ, କି ମନ ବିରସ କରି ବସିଥିଲେ ବି ମାଆଙ୍କୁ ଦେଖିଦେଲେ ମନ ବଦଳାଇ ନିଅନ୍ତି । ସେ ବାହାରୁ ଫେରି, ରୋଷେଇଘରେ ପରିବା, ମାଂସ କିମା ଓ ମାଛ ବ୍ୟାଗ ଅଲଗା ଅଲଗା କରି ସଜାଡ଼ି ଥୋଇଲା । ଉମା ବି ବାରି ପଟୁ କିଛି ପନିପରିବା ଆଣି, ସେଠି ପହଞ୍ଚିଲେ । ରାମର ମୁହଁରେ ଟିକିଏ ଡ଼ରଡ଼ର ଭାବ ଦେଖି ପଚାରିଲେ - "କଣ ହେଲା କି ?"

ରାମ ଟିକିଏ ପାଖକୁ ଆସି ଧୀର ସ୍ୱରରେ କହିଲା- "ବାବୁ ଦାଣ୍ଡବାରଣ୍ଡାରେ ଚୁପ୍‌ଚାପ୍ ବସିଛନ୍ତି ।"

ଉମା ତରକାରୀ କଷା ବସାଇ ଦେଲେ । ପିଠା ପକାଇଲା ପରେ ଡ଼ାକି ଆଣିବେ । ଯଦୁବାବୁ ଖାଇ ବସିବେ ସେ ଗୋଟିଏ ଗୋଟିଏ ଗରମ ପିଠା ନେଇ ଦେଉଥିବେ । କିମା କଷାରୁ କଷା, ମଝିରେ ମଝିରେ ନେଇ ଦେଉଥିବେ, ସ୍ୱାମୀ ତାଙ୍କର ମନ ବୋଧ କରି ଖାଇଲେ, ତାଙ୍କୁ ଭାରି ଖୁସି ଲାଗେ । ସେଇଥିରେ ତାଙ୍କ ପେଟ ପୂରିଯାଏ । ଦି ପହର ଖିଆ ଟିକିଏ ଡ଼େରି ହେବ ତ, ହେଉ ।

ଦି ପହର ଖିଆ ପାଇଁ ମାଛ ତରକାରୀ, ମାଛ ଭଜା ହେବ । ହରଡ଼ ଡ଼ାଲିକୁ ଟିକିଏ ଭାଜି ଖଟାମିଠା ଦେଇ ରାନ୍ଧିବାକୁ ହେବ । ଏଥିରେ ତାଙ୍କର ଭାରି ଶରଧା ।

ପିଲାଏ ତ ପାଖରେ ନାହାନ୍ତି । ଏଇନା ସେଇ ତାଙ୍କର ସ୍ୱାମୀ, ସେଇ ତାଙ୍କର ପିଲା । ସବୁ ଯତ୍ନ, ସବୁ କାମ ଓ ଶ୍ରମ ତାଙ୍କରି ମନ ଖୁସି ପାଇଁ । ଛୁଟି ଦିନଟା ତ, ଟିକିଏ ମନ ଖୁସିରେ ଖିଆ ପିଆ କରି ବିଶ୍ରାମ ନେବେ । ଆରାମ କରିବେ । ଅନ୍ୟ ଦିନ କେଉଁଠି ବା ତାଙ୍କୁ ପାଖରେ ପାଇ ହେବ ! ସକାଳୁ ଥରେ ଖାଇ ଦେଇ ଆଠଟା ସାଢ଼େ ଆଠଟାରେ ଅଫିସ୍ ଚାଲିଯିବେ ଯେ, ଆସିଲା ବେଳକୁ ଗୋଟାଏ ବାଜିବ । ଖାଇ ଦେଇ-ଟିକିଏ ଖଟରେ ଗଡ଼ପଡ଼ ହେବେ ଦଶ ପନ୍ଦର ମିନିଟ୍ କି ଖୁବ୍ ହେଲେ କୋଡ଼ିଏ ମିନିଟ୍ । ତା ପରେ ଟେଲିଫୋନ୍ କରିବେ ଅଫିସକୁ । ପାଖା ପାଖି ଦିଟା ବେଳକୁ ଚାଲି ଯିବେ ଅଫିସ୍ । ଫେରୁ ଫେରୁ ସଞ୍ଜ । ବଡ଼ ଶୃଙ୍ଖଳିତ ଓ ଦକ୍ଷ ଅଫିସର । ସେଇ ଭାବରେ ତାଙ୍କର ଖ୍ୟାତି । ସେ, କିନ୍ତୁ ଉମା ଓ ପିଲାମାନଙ୍କ ପାଖରେ ସରସ ମନର ସ୍ନେହ ପ୍ରବଣ ମଣିଷ ।

ଯଦୁବାବୁଙ୍କର ଏଇ ପରିବର୍ତ୍ତିତ ଅଭ୍ୟାସଟି କ୍ରମେ ସ୍ୱଭାବରେ ପଡ଼ି ଯାଇଛି । ଅନେକ ସମୟ ଚୁପ୍ ଚାପ୍ ରହୁଛନ୍ତି । ଉମା ଭାବନ୍ତି । ନୀରବ ମୁହୂର୍ତ୍ତଗୁଡ଼ିକ ମନରେ ତରଙ୍ଗ ତୋଳେ । ଏଇ ସ୍ୱଭାବ, ଏଇ ଦୃଷ୍ଟିକୋଣ ମୂଳରେ ଅଛି - ଶ୍ରଦ୍ଧା ।

ଯଦୁବାବୁଙ୍କର ମନେ ପଡୁଥାଏ - ସେଇ ଦିନଟି । ଅତୀତର ସ୍ମୃତି । ଉମାଙ୍କ ଉଦାରତା, ବିଶାଳ ହୃଦୟର କଥା । ପୁଣି ଭାବୁଥାନ୍ତି ତାଙ୍କ ଆଡ଼କୁ ମାଡ଼ି ଆସୁଥିବା ଦାୟିତ୍ୱ ବିଷୟରେ ।

ସେଇଟା ଥିଲା ଟୋକା ବୟସ । ଚାକିରୀ ପାଇବାର ମାସ କେତୁଟା ପରେ ବିବାହ ହେଲା । ତାପରେ ଚାଲି ଗଲେ କର୍ମ କ୍ଷେତ୍ରକୁ । ଘରେ ରହିଲେ ଉମା, ଘରର ଝିଅ, ଘରର ବୋହୂ । ତାଙ୍କ ବୋହୂ ପଣିଆ କଥା ଗାଁ ଗଣ୍ଡାରେ ବୁଢ଼ା ବୁଢ଼ୀମାନେ କଥା ଭାଷା ହେଉଥିଲେ । "ଏମିତି ମର୍ଯ୍ୟାଦାମନ୍ତ, ଲକ୍ଷ୍ମଣବନ୍ତ ଝିଅ ବୋହୂ ଭାଗ୍ୟରେ ଥିଲେ ମିଳନ୍ତି ।" ଯଦୁବାବୁଙ୍କ ବାପା ବୋଉ ତ ବୋହୂ ବୋଲି ସତେ ଅବା ନିସ୍ତରି ଯାଆନ୍ତି । କି ରୂପ, କି ଗୁଣ, କି କଥା ଓ ଚଳଣି, କାହିଁରେ ଖୁଣିବାକୁ ନାହିଁ । ଶାଶୁ ଶଶୁର ଭାବନ୍ତି, ଭାଗ୍ୟରେ ଥିଲେ ଏମିତି ବୋହୂର ସେବା ଯତ୍ନ ପାଇବାକୁ ମିଳେ । ଉମା ଭାବନ୍ତି ଦେବତାଭଳି ଶଶୁର, ଦେବୀ ପରି

ଶାଶୁ, ଏମାନଙ୍କ ସେବା କରିବାର ଭାଗ୍ୟ କେତେ ଦିନ ବା ମିଳିବ !

ଯଦୁବାବୁ ସେତେବେଳେ ସୁନ୍ଦର ସୁଠାମ ନବ ଯୁବକ । ଶାନ୍ତ ଗମ୍ଭୀର ଚେହେରା । ମିଠା ହସ, ଠିକ୍ ତାଙ୍କ ବାପାଙ୍କ ପରି । ପୁଣି ସେ ଥିଲେ ବାପମାଆଙ୍କର ଅନୁଗତ ପୁଅ । ଗାଁରେ ରହିଲେ ଉମା, ନବ ପରିଣିତା ବଧୂ । ଯଦୁବାବୁ ରହିଲେ ଦୂର ବିଦେଶରେ । ଟୋକା ଅଫିସର । ଲୋକଙ୍କର ଭାରି ଖାତିର୍ । ଘରେ ଚପ୍‌ରାସି ଥାଏ ସେବା ଯତ୍ନ କରିବାକୁ ।

ଚପରାଶି ମଧୁ କିନ୍ତୁ ବଡ଼ ପାଖରା । ଉଡ଼ିଗଲା ଚଢ଼େଇର ପର ଗଣିଦେବ । ବାବୁଙ୍କ ମନ ନେବାରେ, ମନ ଜଗିବାରେ ଭାରି ହୁସିଆର । ମହା ଧୂର୍ତ୍ତ । ଯଦୁବାବୁ ଗୋଟାପଣେ ତାର ଆପଣାର ହୋଇଗଲେ ।

ମଧୁ ବିଚାରିଲା ବାବୁଙ୍କ ଘର ପାଇଁଟି ପାଇଁ ଆଉ ଜଣକୁ ରଖିଦେଲେ ଭଲ ହେବ । ସେ ଅବା ଘର ଓଳେଇବା ବିଛଣା ସଜାଡ଼ିବାଠୁ ବଜାର ସଉଦା, ରନ୍ଧାବଢ଼ା ତା ବାଦେ ବାସନ କୁସନ ହାଣ୍ଡି କୁଣ୍ଡେଇ ମାଜିବାଯାଏ ଘର ଗୋଟାକର ଯାବତୀୟ କାମ କେତେବେଳେ କରିବ ? ତା ସାଙ୍ଗକୁ ପୁଣି ଅଫିସ୍ କାମ ଅଛି । ସେ ଦାୟିତ୍ୱ ତ ପୁଣି ତୁଲାଇବାକୁ ହେବ ! ଠିକ୍ ସମୟରେ ଅଫିସ୍‌ରେ ନ ପହଞ୍ଚିଲେ ଆଉ ପାଞ୍ଚ ଜଣ କଣ କହିବେ ? ସେଠି କାମ ଖିଲାପ ହେଲେ ବାବୁଙ୍କର ଅପନିନ୍ଦା । ସେ ଯଦୁ ବାବୁଙ୍କୁ ତାଙ୍କ ମନକୁ ଧରିବା ଢ଼ଙ୍ଗରେ ବୁଝାଇ ଦେଲା । ତା ସହିତ ବୁଝିଦେଲା ଜଣକୁ, ଯିଏ ଖାସ୍ ଆସିବ ଘର ଓଳିଆ, ବାସନ ମଜା, ପରିବା କଟା କାମ ସାରିଦେଇ ଚାଲି ଯିବ। ଆଉ ସବୁ କାମ ମଧୁ ତୁଲାଇ ନେବ ।

ସେଇ ଜଣକ- ନୂପୁର ।

ନୂପୁରର ରଙ୍ଗ ଅଳ୍ପ ସାବନ । ଅଳ୍ପ ସାବନ ବୋଇଲେ ଗୋରା ଆଡ଼କୁ ଶହକେ ଷାଠିଏ ସତୁରୀ ଭାଗ ଊଣା । କିନ୍ତୁ ଗଢ଼ଣଟି ବଡ଼ ସୁନ୍ଦର । ବିଶାଳାକ୍ଷୀ, ହସ ହସ ମୁହଁ । ଦେହଟି ପତଳା ନୁହେଁ କି ମୋଟା ନୁହେଁ । କାମରେ ଭାରି ଫୁର୍ତ୍ତି । ଯଦୁବାବୁଙ୍କୁ ବହୁତ ମାନ୍ୟ କରେ । ଲାଜ କରେ । ସେ ନିଜେ ଯେମିତି ସଫାସୁତରା, ନିର୍ମଳ, ତା କାମଟି ବି ସେମିତି । ନୂପୁର ପରିବା କାଟିବା ଦିନୁ ତରକାରୀର ସୁଆଦ ବଦଳି ଯାଇଛି ।

ଯଦୁବାବୁଙ୍କର ମିଠା କଥା, କୋମଳ ମଧୁର ବ୍ୟବହାର ନୂପରକୁ ଭାରି ଭଲ ଲାଗେ । ତା ବାପା ମଲା ଦିନୁ ତାକୁ ଏମିତି ଆଦରରେ କେହି କଥା ପଦିଏ କହି ନଥିଲେ । ବେଳେ

ବେଳେ ବାବୁଙ୍କ କଥା ତାକୁ ଆଉଁସି ଦେଲା ପରି ଲାଗେ । ଏଡ଼େ ଭଲ ବାବୁ ! ଠାକୁରେ ତାଙ୍କ କଲମ ତାଜା ରଖନ୍ତୁ । ସେ ବଡ଼ରୁ ବଡ଼ ହୁଅନ୍ତୁ । ସେ ଯଦୁବାବୁଙ୍କର ମଙ୍ଗଳ ମନାସେ ମନେ ମନେ । ତାର ଚଳଣି, ଗତିବିଧିରେ ଫୁଟି ଉଠୁଥାଏ ତାଙ୍କ ପ୍ରତି ଅପାର କୃତଜ୍ଞତା ।

ଛୁଟି ଦିନ ପଡ଼ିଲେ, ତା ସାଙ୍ଗରେ ଦିନେ ଦି ଦିନ ଛୁଟି ମିଶାଇ, ତିନି ଚାରି ଦିନ ପାଇଁ ଯଦୁବାବୁ ଗାଁକୁ ଆସନ୍ତି । ସେ ପହଞ୍ଚିବା ଦିନ ଘରେ ଓ ଗାଁରେ ଆନନ୍ଦ ଖେଳି ଯାଏ । ବାପା ବୋଉଙ୍କ ଗୋଡ଼ ତଳେ ଲାଗେନି । ଉମା ଏକାକୀ ପାଇଲେ ଲୋଟି ଯାଆନ୍ତି ତାଙ୍କ ଉପରେ । ମାନ ଅଭିମାନ ଭରା କଥାମାନ ଆଞ୍ଜୁଳା ଆଞ୍ଜୁଳା ଫୁଲ ପରି କୁଢ଼ାଇ ଦିଅନ୍ତି ତାଙ୍କ ଆଗରେ । ଯଦୁବାବୁଙ୍କର ଚେହେରାରେ ସେ ଫୂର୍ତ୍ତି, କଥାରେ ସେ ରସିକତା ଓ ଫେରିବା ବେଳର ବିଷାଦ ଭରା ମୁହଁ ଉମାଙ୍କ ମନ ଭିତରେ ଗୋଳେଇ ଘାଣ୍ଟି ହେଉଥାଏ, ସେ ପୁଣି କେବେ ଆସି ପହଞ୍ଚିବାଯାଏ ।

ଉମାଙ୍କର ମନେ ପଡ଼େ ସେ ବୋହୂବେଳର ସ୍ମୃତି । ଯଦୁବାବୁଙ୍କର ବେଳେ ବେଳେ ମନେ ପଡ଼େ ସେଇ ନିରିମାଖି ନୂପୁର ।

ଉମା ପଚାରିଲେ-"ଖାଇବାକୁ ଆଣିବି ?"

ଯଦୁବାବୁଙ୍କ ଅନ୍ୟମନସ୍କତା ଭାଙ୍ଗିଗଲା । ଉମାଙ୍କ ଆଡ଼କୁ ଅନାଇ ହସିଲେ । ବଡ଼ ପ୍ରଶାନ୍ତ ପବିତ୍ର ଚାହାଣି । ବେଳେ ବେଳେ ମନେ ପଡ଼େ ତାଙ୍କର ଉଦାରତା, କ୍ଷମା ଶୀଳ ଦରଦୀ ସ୍ୱଭାବ, ସତରେ, ସେ ସେବା କରିବାରେ ଦାସୀ, କାର୍ଯ୍ୟରେ ମନ୍ତ୍ରୀ, ସହିଷ୍ଣୁତାରେ ଧରିତ୍ରୀ ! ଯଦୁବାବୁ ଉଠିଲେ ଓ ଗଲେ ଡ଼ାଇନିଙ୍ଗ୍ ଟେବୁଲ୍ ପାଖକୁ । ଉମା ଖାଦ୍ୟ ପରଷି ଦେଇ ପାଖରେ କିଛି ସମୟ ଛିଡ଼ା ହେଲେ ଓ ସାମ୍ନା ଚଉକୀରେ ବସିଲେ । ଯଦୁବାବୁ ଚକୁଳି ଓ ମାଂସ କିମାର ସ୍ୱାଦକୁ ଖୁବ୍ ତାରିଫ୍ କଲେ ।

ଉମା ସେ ବିଷୟରେ କିଛି ନ କହି, କହିଲେ - "ପିଲାଏ ମନେ ପଡୁଛନ୍ତି ।"



## ॥ ୨୪ ॥

ନୂପୁରଟି ବଡ଼ ହୀନି କପାଳୀ ।

ଜନମରୁ ପାଞ୍ଚ ବର୍ଷଯାଏ ବଡ଼ ସେରନ୍ତାରେ ବଢ଼ିଥିଲା । ସେ ବର୍ଷ ମୂଲକରେ ମରୁଡ଼ି ପଡ଼ିଲା । ଗାଁ ଗଣ୍ଡାରୁ ବହୁ ଲୋକ ବିଦେଶ ଗଲେ କୁଲି କାମ କରିବାକୁ । ନୂପୁରର ବାପା ବି ଯାଇଥିଲେ । ମଜୁରୀ ଖଟି ଦିନା କେତେ ପଇସା କମେଇଲେ । ପେଟରୁ କାଟି ଘରକୁ ପଇସା ପଠାନ୍ତି । ମଝିରେ ମଝିରେ ବୋଉ ନାଁରେ ମନି ଅର୍ଡ଼ର ଆସେ । ସେଇଥିରେ ମାଆଝିଅ ଚଳନ୍ତି । ଘର ବୋଇଲେ ସେ ଦି ଜଣ ।

ବାପା ପଠାଇଥିବା ପଇସାରୁ କିଛି ସଞ୍ଚିଥିଲା ତା ମା । ସେଇଥିରେ ଶକ୍ତିକୁ ଚାହିଁ ଗହଣା ଖଣ୍ଡିଏ ଦିଖଣ୍ଡି, ଶାଢ଼ି କେତେ ଖଣ୍ଡି କିଣିଥିଲା ଝିଅ ପାଇଁ । ପୁଣି ଖବର ପଠେଇ ଥିଲା ଆସିବା ବେଳେ ଛୋଟ ବଡ଼ କରି ଦି ଖଣ୍ଡି ଟ୍ରଙ୍କ ଆଣିବା ଲାଗି । ବାପା ଆସିବା ବେଳକୁ ଦି ଖଣ୍ଡି ଟ୍ରଙ୍କ, ଗୋଟିଏ ସୁଟକେଶ ଆଣିଥିଲେ । କିନ୍ତୁ ନିଜେ କଙ୍କାଳସାର ହୋଇ ଆସିଥିଲେ । ବୋଉକୁ କହିଲେ ଶୀଘ୍ର ପାତ୍ରଟିଏ ଖୋଜି ଝିଅଟିକୁ ବାହା ଦେଇଦେବା ।

ବାପାଙ୍କ ଦେହର ଅବସ୍ଥା ଦେଖି ବୋଉ ତାଟକା । ପାତ୍ର କଣ ? ବାହାଘର କଣ ? ତାଙ୍କ ମୁହଁକୁ ଚାହିଁ ବୋଉ ଭୋ ଭୋ ହୋଇ କାନ୍ଦିଲା । ନୂପୁର ବି କାନ୍ଦି ପକାଇଲା । ବୋଉ କହିଲା "ଆଗ ଡ଼ାକ୍ତର ଦେଖାଇବା । ତମ ଦିହ ଭଲ ହୋଇ ଯାଉ, କି, ତାପରେ ସେ କଥା ବୁଝିବା ।"

ବାପା ହସିଲେ । ଗଲେ ତାଙ୍କ ସଙ୍ଗାତ ଘରକୁ। ବାପାଙ୍କ ସଙ୍ଗାତ ରଥି ମଉସା ଭାରି ପାରିବାର ମଣିଷ । ସେ ସବୁ କଥା ବୁଝିଲେ । ମନର ଦୁଃଖ ଓ ଆଶଙ୍କା ମନରେ ଚପାଇ ବାହାଘର ଖୋଜିଲେ ନୂପୁର ପାଇଁ । ସନିଆଁ ସହିତ ବିବାହ ସମ୍ପନ୍ନ ହେଲା । ମାସ କେତୁଟା ଯାଇନି ନୂପୁର ବାପା ଆଖି ବୁଜିଲେ । ସେଇ ଦୁଃଖରେ ମାଆ ତାର କାନ୍ଦି କାନ୍ଦି ଅନ୍ଧୁଣି ହୋଇଗଲା । ଦିନେ ରାତିରେ ବାରି କୂଅରେ ଗଳିପଡ଼ିଲ । ଦେଢ଼ ଦିନ ବାଦେ ଜଣା ପଡ଼ିଲା । ସେତେ ବେଳକୁ ଆଉ କିଏ କଣ ବା କରି ଥାଆନ୍ତେ । ନୂପୁର ମୁଣ୍ଡପିଟି କାନ୍ଦିଲା । ବାପଘର ପଟୁ ସବୁ ଅନ୍ଧାର ହୋଇ ଗଲା ।

ସନିଆ ଘରେ ବିମାଣ ଜମି । ସେତିକିରେ ଚଳେ ନାହିଁ । ବାପ ପୁଅ ଦୁହେଁ ମୂଲ ଲାଗନ୍ତି ପର ଦୁଆରେ । ମାଆକୁ ବାର ମାସରେ ତେର ରୋଗ । ବରଷା ଚାରି ମାସ ଘରେ କତରା ଲାଗି ହୋଇ ପଡ଼ିଥାଏ । ଆଣ୍ଠୁ ଗଣ୍ଠି ବାତକୁ କଫରୋଗ । କିନ୍ତୁ ବୁଢ଼ୀଟି ଭାରି ସ୍ନେହୀ । ପୁଅ ବୋହୂଙ୍କୁ ଆଖି ଆଗରେ ଏକାଠି ଦେଖିବ ବୋଲି ଦିନକୁ ଚାରି ଥର ଡ଼ାକିବ । ସନିଆ ବାପାର ବୁଢ଼ିଠେଇ ସ୍ନେହ ଊଣା ନୁହ । ବୁଢ଼ା କାମକୁ ଯିବା ଆଗରୁ ବୁଢ଼ିକୁ ଦେଖି ଦେଇ ଯାଅନ୍ତି । ପୁଣି କାମରୁ ଫେରି ତା ଦେହ ଦୁଃଖ କଥା ବୁଝନ୍ତି । ଯତ୍ନ ନିଅନ୍ତି । ହେଲେ ଔଷଧ ମହୋଷଧିକୁ ବଳ ନଥାଏ ।

ଦିନେ ବୁଢ଼ା ହଳକୁ ଯାଇଥିଲେ, ସନିଆ ବି କାହା ଜିନିସ ବୋହି ହାଟକୁ ଯାଇଥିଲା । ସେତିକି ବେଳେ ବୁଢ଼ିଙ୍କ ଛାତି ଉଚ୍ଛୁନ୍ନରି ଲାଗିଲା । କଥା କହିବାକୁ ତର ସହିଲା ନି । ଆଖି ବୁଜି ଦେଲେ । ନୂପୂର ବୋବାଳି ପକାଇ କାନ୍ଦିଲା । ସାଇ ପଡ଼ିଶା ଧାଇଁ ଆସିଲେ । ଖବର ଗଲା ସନିଆ ବାପା ପାଖକୁ । ଶୁଣୁ ଶୁଣୁ ବୁଢ଼ାଙ୍କର ହାଁ ପଶିଗଲା । ସେଇଠି ଟଳି ପଡ଼ିଲେ । ଲୋକେ କହିଲେ- "କି ସୁନ୍ଦର ମରଣ !"

ସନିଆ ହାଟରୁ ଫେରି ମୁଣ୍ଡରେ ହାତ ଦେଇ ବସିପଡ଼ିଲା । ସେ ଦୃଶ୍ୟ ନୂପୁର ମନରେ ଗାର ହୋଇ ରହି ଯାଇଛି । ତାକୁ ସେ କେତେ ଦମ୍ଭ ଦେଲା । ବୋଧ ଶୋଧ କରି କହିଲା । ନିଜ ପୈତୃକ ଡ଼ିହ ଖଣ୍ଡକ ବିକି, ସେଇ ପଇସାରେ ଶାଶୁ ଶଶୁଙ୍କର ସୁଧ ପାଇଁ ସନିଆକୁ ପଇସା ଦେଇଥିଲା ନୁପୁର ।

ଦିନ ଗଡ଼ି ଯାଉଥିଲା ସୁଖ ଦୁଃଖ ଭିତରେ । ଦିନେ ଗାଁର ଜଣେ ଆସି ଖବର ଦେଲା- ପାଖ ଗାଁର କେତେଜଣ ଭେଣ୍ଡିଆ ଆସାମ ଯାଉଛନ୍ତି । ତା ବାଗାନରେ କାମ କରିବେ । ଭଲ ପଇସା ମିଳିବ । ସନିଆ ବି ବୁଝା ବୁଝିକଲା ଓ ଆସାମ ଯିବାକୁ ବାହାରିଲା । ନୂପୁରକୁ ବୁଝାଇଲା, ଏଥିରେ ଭଲ ଦି ପଇସା ରୋଜଗାର ହେବ । ଦିନ କେତୁଟାରେ ସେମାନଙ୍କ ଭାଗ୍ୟ ବଦଳିଯିବ ।

ନୂପୁର ମନା କଲା । କହିଲା- "ନାଇଁ ମ, କେତେ ଦୂର କାଇଁ କୋଉଠି ଆଖି ପାଉନି । ଯିଏ ଗଲେ ଯାଆନ୍ତୁ ପଛେ, ତମେ ଆମର ଯାଆନି । ଏଇଠି ଆମେ ଦୁହେଁ ଖଟିବା, ଆମ କପାଳରେ ଯାହାଥିବ ଭୋଗିବା ।"

ସନିଆ ଦୋ ଘାଇରେ ପଡ଼ିଗଲା । ଦି ଦିନ ମନମାରି ବସିଲା । ପୁଣି ଖବର ଆସିଲା ଆସାମ ଯିବାକୁ । ଏଥର ସେ ଉଛୁନ୍ନ ହେଲା । ନୂପୁର ଯେତେ ବୁଝାଇଲେ ବି ତା ମନ ବୁଝିଲାନି । ଗୋଟିଏ କଥା କହୁଥାଏ, "ମୋ ବା ଏମିତି ଅଭାବ ଭୋଗି ଭୋଗି ମଲା । ମୋ ଦିହକ ବି ଯିବ, ଅମେ ଜୀବନରେ ଦିନେ ସୁଖରେ ଚଳି ପାରିବାନି । ଜମି ଦିମାଣକ ତିନି ମାଣ ହବନି । ଘର ସବୁବରଷ ଛପର କରିହେବନି । ଖାଇବା ପିନ୍ଧିବାରେ ଅଭାବ ଗୋଡ଼େଇଥିବ । ବେମାର ପଡ଼ିଲେ ଚିକିହ୍ସା ହୋଇ ପାରିବାନି । ଇଆଠୁ ସହସ୍ର ଗୁଣରେ ଭଲ ବାହାରେ କିଛି ଦିନ ଖଟି ପଇସା କମେଇ ଓ ଜମେଇ ଫେରି ଆସିବା । ଭଲରେ ଘର ଦ୍ୱାର କରି ଚଳିବା ।" ନୂପୁରର ବରାବର ତା ବାପା କଥା ମନେ ପଡୁଥାଏ । ତେଣୁ ସନିଆକୁ ଆସାମ ଛାଡ଼ିବାକୁ ତା ମନ ମାନୁନଥାଏ । ପୁଣି ଶୁଣିଛି ସେଇଟା ଗୁଣି ଗାରେଡ଼ିର ଦେଶ । କେତେ ବେଳେ କୋଉ କଥା, ଆମ ଏଇଠି କଣ କାମ ନାଇଁ । ଭୁବନେଶ୍ୱର, ରାଉରକେଲା, ପାରାଦୀପ ଆଡ଼େ ତ ବହୁତ ଲୋକ ଯାଇ କାମ ଧନ୍ଦା କରି ପଇସା କମାଉଛନ୍ତି । ସେଠିକି ହେଲେ ଯାଉନ । ଏତେ ଦୂର ଦେଶକୁ କିଆଁ ଯିବାକୁ ବାହାରୁଛ ? ସନିଆ ଭାବୁଥାଏ ନୂପୁର ମାଇପି ଲୋକ, କିଛି ଜାଣି ପାରୁନି, ଆସାମ ଗଲେ ଆମ ଅବସ୍ଥା କାଲି କି କାଲି ଲେଉଟି ଯିବ । ଆମ ଓଡ଼ିଶାର ବହୁତ ଲୋକ ସେଠି ଅଛନ୍ତି । ଇଆ ବୁଦ୍ଧି ସେତେ ବାଟକୁ ଯାଇ ପାରୁନି । କଥାରେ ଅଛି, ମାଇପି ବୁଦ୍ଧିରେ ଜଗନ୍ନାଥ ଖଣ୍ଡିଆ । ମୁଁ ଇଆ କଥା ଶୁଣି ରହିଲେ ଏମିତି ଜୀବନଯାକ ହୀନସ୍ତା ହୋଇକାଳ କଟାଇବାକୁ ପଡ଼ିବ । ଆମ ପିଲାଏ ବି ସେଇ ଅଭାବର ଭଉଁରୀରେ ଘାଣ୍ଟି ଚକଟି ହେବେ । ସେ ଶେଷରେ ଆସାମ ଯିବାକୁ ମନ ଟାଣ କଲା । ଗଲାବେଳେ କହିଗଲା - 'ବୁଝିଲୁ ନୂପୁର, ଏଥର ସନ୍ୟାସୀ ନାୟକ ସିଆଡୁ ଧନ ଧରି ବାହୁଡ଼ିବ । ଏ ଘର କୋଠା ହବ । ଆମେ ଜମିବାଡ଼ି କିଣି ସୁଖରେ ରହିବା । ଆଉ କୁଆଡ଼େ ଯିବାକୁ ହେବନି । ଆମ ପିଲାଏ ବି ସୁଖରେ ରହିବେ ।' ନୂପୁର ଛାତିର କୋହ ଛାତି ଭିତରେ ଚପାଇ ଛଳ ଛଳ ଆଖିରେ ବିଦାୟ ଦେଲା । ମନ ଦମ୍ଭକରି ମାଟି କାମୁଡ଼ି ପଡ଼ି ରହିବା ଛଡ଼ା କଣ ବା ସେ କରିପାରି ଥାଆନ୍ତା ?

ସନିଆ ଗଲା ଯେ, ଆଉ ବାହୁଡ଼ିଲା ନାହିଁ । ନୂପୁର ପ୍ରତିଦିନ ଠାକୁରଙ୍କୁ କେତେ ଡ଼ାକେ । ବୃନ୍ଦାବତୀଙ୍କଠାରେ ସକାଳେ ଗାଧୋଇସାରି ପାଣି ଦେଲା ବେଳେ, ସଞ୍ଜରେ ସଞ୍ଜବତୀ ଦେଲାବେଳେ ତାର ମଙ୍ଗଳ ମନାସେ । ଚିଠି ଖଣ୍ଡକ ପାଇଁ ଅନାଇ ଥାଏ । କିଛି କାହା

ହାତରେ ଖବର ଆସିବ ବୋଲି ଭାବୁଥାଏ । ଏମିତି କେତେ ବରଷ ବିତିଗଲା । କେତେ ଲୋକ କେତେ କଥା କହନ୍ତି । ସେ ତଥାପି ଆଶା ବାନ୍ଧି ବସିଥାଏ । "ସନିଆ ସନ୍ୟାସୀ ବାବୁ ହୋଇ ଫେରିବ । ସେମାନଙ୍କ ଦଶା ଲେଉଟିବ ।" ଏମିତି ଦିନ, ମାସ, ବର୍ଷ ଗଡ଼ିଗଡ଼ିଯାଏ । ଥରେ ଗୋଟାଏ କଥା ଉଠିଲା, ସନିଆ ଆଉ ଫେରିବ ନି । ସେ ସେଠି ଗୋଟାକୁ ଆଦରି ରହିଗଲାଣି । ସେ ମାଇକିନା ଛାଡ଼ିଲେ ସିନା ଇଏ ଆସିବ । ସିଏ ଏକୁ ଆଉ ନଛାଡ଼େ । କଥାରେ କଥା ଯୋଡ଼ି କିଏ କେତେ ପ୍ରକାର କରି କହନ୍ତି ।

ନୂପୁର କାନରେ କେତେ କଥା ତ ପଡ଼େ, କାହା କଥାକୁ ପରତେ ଯିବ ! ଠାକୁରଙ୍କୁ ବିନୟ ହୋଇ ଡ଼ାକେ, ବିଶ୍ୱାସ କରେ, ଠାକୁର ଦିନେ ନା ଦିନେ ତା ଡ଼ାକ ଶୁଣିବେ । ସନିଆ, ସନ୍ୟାସୀ ବାବୁ ହୋଇ ଫେରିବ । ତା ଭାଗ୍ୟ ଲେଉଟିବ । ଦିନ ଗଡ଼ି ଗଡ଼ିଯାଏ ।

ଘର ଛପର ହୋଇ ପାରି ନଥିଲା । ତେରଷ୍ଠା ବରଷ ଝଡ଼ି ବରଷାରେ ସେ ଖଣ୍ଡକ ଭାଙ୍ଗିଗଲା । ଜମି ଖଣ୍ଡିକ ବନ୍ଧା ପକାଇ କିଛି ପଇସା ଆଣିଥିଲା । ସେଥିରେ ଘର ମରାମତି ଓ ଛପର ସିନା ହୋଇଗଲା; ତା ପରେ ଚଳେ କେମିତି ? ମୂଲ ପାଇଟି ଲାଗି ଓଳିଏ ଖାଇ, ଓଳିଏ ଉପାସ ସହି ଦିନ କଟାଇଲା ନୂପୁର ।

ମଧୁ ଚପରାସି ତା ପାଇଁ କାମ ବୁଝି ଦେଲା । ସେ ଯଦୁବାବୁଙ୍କ ଘରେ କାମ କଲେ, ତା ପେଟ ଅପୋଷା ରହିବ ନାହିଁ । ବାବୁ ଭାରି ଭଲ ମଣିଷ । ପର ମନ ବୁଝନ୍ତି ।

ନୂପୁର ଯଦୁବାବୁଙ୍କ ଘରକୁ ଯେଉଁଦିନ କାମ କରିବାକୁ ଗଲା, ସେଇଦିନ କେଉଁଓଳି କଣ କଣ କରିବ ସ୍ଥିର ହୋଇଗଲା । ସକାଳେ ଘଣ୍ଟାଏ ଦି ଘଣ୍ଟା, ଉପର ଓଳି ଘଣ୍ଟାଏ ଦି ଘଣ୍ଟା କାମ । ବାବୁଙ୍କ ତରଫରୁ ମଧୁ ସବୁ ବୁଝାଇ ଦେଲା। ଯଦୁବାବୁ ସଙ୍ଗେ ସଙ୍ଗେ ତା ପାଇଁ ନୂଆ ଲୁଗା ପଟା କିଣି ଆଣିବାକୁ ମଧୁକୁ ଟଙ୍କା ବଢ଼ାଇ ଦେଲେ । କହିଲେ ଶାଢ଼ୀ ଓ ଆଉ ସବୁଥିରୁ ଦୁଇ ଦୁଇ ଖଣ୍ଡ ଆଣିବାକୁ । ଅଧିକ ପଇସା ଲାଗିଲେ ମାଗିନେବାକୁ କହିଲେ । ଦରମା ତୁଟାଇବାକୁ ଯେତେ ପଚାରିଲେ ବି, ନୂପୁର କିଛି କହିଲା ନାହିଁ । ତା ତରଫରୁ ମଧୁ କହିଲା 'ଆପଣ ଖୁସିରେ ଯାହା ବିଚାର କରି ଦେବେ । ଇଏ କାହା ଘରେ କାମ କରିବା ଲୋକ ନୁହେଁ ଆଜ୍ଞା, ଅଭାବରୁ ରାଜି ହୋଇଛି ।'

ନୂପୁରକୁ କାମ ମଣେଇ ଦେଇ, ମଧୁଗଲା ବଜାରକୁ । ଯଦୁବାବୁ ତା ଅଭାବ ଅସୁବିଧା କଥା ଆଗରୁ ପଚାରି ବୁଝିଥିଲେ । ତା ହାତକୁ କିଛି ଟଙ୍କା ବଢ଼ାଇଦେଇ କହିଲେ-

'ତୋର ମାସିକିଆ ସଉଦା ପତ୍ର କିଣି ଦେବୁ । ଇଏ ତୋ ଦରମା ବାବତକୁ ଆଗତୁରା ଦିଆଗଲା । ଘରେ ଭଲ ଭାବରେ ଖାଇ ପିଇ କାମ କରିବାକୁ ଆସିବୁ । ଉପାସ ଭୋକରେ କାମ କରିବାକୁ ଆସିବୁନି । ତୋତେ ଦିହ ଲଗା ସାବୁନ, ଲୁଗା ସଫା ସାବୁନ ପ୍ରତିମାସରେ ଦୁଇଟା ଲେଖାଏ ଦିଆ ଯିବ । ଖାଇବା ପିନ୍ଧିବାରେ କିଛି ଅଭାବ ରହିବନି । ଯାହା ଦରକାର କହିବୁ ।'

ନୂପୁର ଲାଜ ଲାଲ ହୋଇ କହିଲା- 'ହଜୁରଙ୍କ ଆଗରେ ଦୁନିଆ ଲୋକ ଓଳର ଆପତ୍ତି କରୁଛନ୍ତି । ତାଙ୍କ ଦୁଃଖ ଅଭାବ ଦୂର ହେଉଛି । ମୁଁ କହିବି ନାଇଁ କାହିଁକି ?'

ପ୍ରଥମ ଦିନ ମଧୁ ସବୁ କାମ ବୁଝାଇ ଦେଲା ପରେ, ନୂପୁର ସେଇ ଅନୁସାରେ, ସମୟ ମୁତାବକ କାମ କରିଦେଇ ଯାଏ । ତାକୁ କିଛି କହିବା କିମ୍ବା ବତାଇବାକୁ ପଡ଼େ ନାହିଁ । ଯାହା ଯେତେବେଳେ କହିବା କଥା, ମଧୁ କହେ । ବଡ଼ଘର ପୁଅ, ଯୋଗକୁ ହାକିମ ଚାକିରୀ ପାଇଛନ୍ତି । ମନ ସେମିତି, ଚଳେଣି ସେମିତି । ସେ ଯେଉଁ ଦିନ ଶୁଣିଲେ, ନୂପୁର ଜମି ବନ୍ଧକ ପଡ଼ିଛି, ସାଙ୍ଗେ ସାଙ୍ଗେ ମଧୁକୁ କହିଲେ କେତେ ଟଙ୍କା ସୁଧମୂଳ ହୋଇ ଗଲାଣି ବୁଝି ଆସି, ପଇସା ନେଇ ଯା ଓ ମୋ ପାଖରେ ବନ୍ଧକ କାଗଜ ପଇଠ କର । ତାହା ହିଁ ହେଲା ।

ନୂପୁରର ବନ୍ଧାପଡ଼ିଥିବା ଜମି ମୁକୁଳାହେଲା । କିନ୍ତୁ ତା ମନ ବନ୍ଧା ପଡ଼ିଗଲା ଯଦୁବାବୁଙ୍କ ପାଖରେ । କେତେ ଉଚ୍ଚ ମନର ବାବୁ, ସାକ୍ଷାତ୍ ଧର୍ମାବତାର, ବାପମା ! ମାତ୍ର ସେ ତାଙ୍କ ପାଖରେ ଲାଜ ଲାଜ ହୋଇ ଚଳେ । ଯଦୁବାବୁ ବି ତା ସହିତ ଅତି କମ୍ କଥା କହନ୍ତି । ତାକୁ କିଛି କହିବା ଦରକାର ବି ପଡ଼େ ନାହିଁ ।

ସେ ଦିନ ହଠାତ୍ ବର୍ଷା ଆରମ୍ଭ ହୋଇ, ଝଡ଼ି ଲଗେଇ ଦେଲା । ମଧୁ ନଥାଏ । ଛୁଟି ନେଇ କୁଣିଆ ଘରକୁ ଯାଇଥାଏ । ଏମିତି ବେଳେ ବେଳେ ସମୟ ଅସମୟରେ, ନୂପୁର ରନ୍ଧାବଢ଼ା କାମ ତୁଲାଇ ନିଏ । ମଧୁ ତା ସାଙ୍ଗରେ ସେଇଆ ତୁଟାଇ ଥିଲା । ସେ ଦିନ ନୂପୁର ରୋଷେଇ କରିଥିଲା ।

ଯଦୁ ବାବୁ ତକିଆଟା ପିଠିରେ ଦେଇ ଖଟବାଡ଼କୁ ଆଉଜି ବସି ଥାଆନ୍ତି । କଣ ସବୁ ଖେଳି ଯାଉଥାଏ ତାଙ୍କ ମନରେ ।

ଉମା ବାପ ଘରୁ କେତେଖଣ୍ଡ ବହି ଆଣି ଥିଲେ । ତାଙ୍କ ଟ୍ରଙ୍କରେ ସେଥି ଭିତରୁ

ଖଣ୍ଡିଏ ଥିଲା - ରାଧାନାଥ ଗ୍ରନ୍ଥାବଳୀ । ଯଦୁବାବୁ ଥରେ ପଲଙ୍କ ଉପରେ ଶୋଇ ସେ ଖଣ୍ଡକ ପଢୁପଢୁ ପେଟ ଉପରେ ଥୋଇ ଦେଇ ଶୋଇ ପଡ଼ିଥିଲେ । ଉମା ଆସି ବହିଟି ଉଠାଇ ନେଇ ରଖିଦେବା ବେଳକୁ ନିଦ ଭାଙ୍ଗିଗଲା । ପଲଙ୍କ ବାଡ଼କୁ ଆଉଜି ବସିପଡ଼ିଲେ । ଉମାଙ୍କୁ ବସିବା ପାଇଁ ଇଙ୍ଗିତ କଲେ । ଉମା ପଚାରିଥିଲେ ଚନ୍ଦ୍ରଭାଗା କାବ୍ୟଟି ପଢ଼ିଲ ? ଯଦୁବାବୁ ପଢ଼ି ନଥିଲେ । ପଢ଼ିଲେ । ଉମା କାହିଁକି ସେଇ କାବ୍ୟଟି କଥା ପଚାରିଲେ ବୁଝିଲେ । ସେ ଦିନ ବି ଏମିତି ପଲଙ୍କ ଉପରେ ସେ ଆଉଜି ବସିଥିଲେ । କିନ୍ତୁ ଏଇଟା ତାଙ୍କ ଗାଁଘର ନଥିଲା କିମ୍ବା ଉମା ତାଙ୍କ ପାଖରେ ନଥିଲେ ।

ନୂପୁର ବଡ଼ ସମ୍ଭ୍ରମରେ ଦୁଆର ମୁହଁର ଗୋଟିଏ କଣକୁ ଅଢ଼େଇ ହୋଇ ଛିଡ଼ା ହେଲା । ଓଢ଼ଣାରେ ମୁହଁଟି ଅଧା ଘୋଡ଼ାଇ ଥାଏ । ପଚାରିଲା - 'ବାବୁ, ବାଢ଼ିବି ?'

ଯଦୁବାବୁ ଅନ୍ୟ ମନସ୍କ ଭାବରେ ପଚାରିଲେ -'ଏଁ ?'

ନୂପୁର ଆଉଟିକିଏ ଶରମି ଗଲା, ପଚାରିଲା- 'ଠା କରିବି ?'

ଯଦୁ ବାବୁ 'ହଁ' କହି, ହାତ ଧୋଇବାକୁ ଉଠି ଆସିଲେ । ନୂପୁର ପାଣିଢ଼ାଳଟି ବଢ଼ାଇ ଦେଲା । ଆସନ ପକାଇ ଦେଇ ଥାଳିରେ ଭାତ ବାଢ଼ି ଆଣିଲା । ଠା ଠା କରି ଥାଳିଆ, ଗିନାମାନଙ୍କରେ ଡ଼ାଲି ତରକାରୀ, ଭଜା, ସନ୍ତୁଳା, ରାଇ ବାଢ଼ି ଦେଇଗଲା । ପାଖରେ ପିଇବା ପାଣି ଗିଲାସରେ ରଖି ଦେଇଗଲା । ଟିକିଏ ଦୂରରେ ଅଣ ଆଡ଼ିଆ ହୋଇ ଠିଆ ହୋଇ ଅପେକ୍ଷା କଲା, ପୁଣି କଣ ପଛରେ ବାଢ଼ିବ ବୋଲି ।

ଯଦୁବାବୁ ଖାଇ ବସିବା ବେଳେ ପଚାରିଲେ - 'ତୋ ପାଇଁ ଖାଇବାକୁ ରଖିଛୁ ତ ?' ଯିଏ ରୋଷେଇ କରେ, ତା ଖାଇବା କଥା ଆଗ ବୁଝନ୍ତି ଯଦୁବାବୁ । ସେ ମଧୁକୁ ମଧ ଏମିତି ପଚାରନ୍ତି ।

ନୂପୁରର ହୃଦୟ ଭିତରୁ କୋହ ଉଠିଲା । ଲୁହ ଉଛୁଳି ଆସିଲା ଆଖି ଡ଼ୋଳା ଯାଏ । ତଣ୍ଟି ଭିତରଟା କେମିତି କେମିତି ହୋଇଗଲା । କେତେ ବରଷ ହେଲା, କେହି ତାକୁ ଖାଇବା କଥା- ପଚାରି ନଥିଲେ । ତା ପୁଣି ଏତେ ଆଦରରେ ଓ ଆପଣାର ସ୍ୱରରେ ପ୍ରଥମ ଥର ଶୁଣିଲା । ସେ ଥରିଲା ସ୍ୱରରେ ଉତ୍ତର ଦେଲା- 'ହଁ ଅଛି ।'

ଯଦୁବାବୁ ଭୋଜନରେ ବସି ଥାଆନ୍ତି । ଖାଇବା ମଝିରେ ନୂପୁର ଡ଼ାଲି, ତରକାରୀ ଯାଚିଲା । ଆଉ କଣ ଦେବ ବୋଲି ପଚାରିଲା ସେ ମନା କଲେ । କହିଲେ - 'ତୁ ଏଥର ଖାଇଦେ । ମୋର ଆଉ କିଛି ଦରକାର ନାହିଁ ।'

ନୂପୁର ପୁଣି ଡ଼ରି ଡ଼ରି ପଚାରିଲା 'ଆଉ ଖାଇବେ ନି ? କଣ ଭଲ ଲାଗିଲାନି ?' ତା ସ୍ୱର ଓଦା ଓଦା ଥାଏ ।

ଯଦୁବାବୁ କହିଲେ - 'ନାଇଁ ଲୋ, ଖୁବ୍ ବଢ଼ିଆ - ହୋଇଛି । ମୁଁ ବେଶ୍ ମନବୋଧ କରି ଖାଇଲି । ତୁ ଯା, ଖାଇଦେ ।' ତାଙ୍କ ସ୍ୱର ଥିଲା ଖୁବ୍ ମିଠା ଓ ଅନ୍ତରଙ୍ଗ ।

ବାହାରେ ମୂଷଳ ଧାରାରେ ବର୍ଷା ହୋଉଥାଏ ଅନବରତ । ନୂପୁର ଖାଉଥାଏ । ତା ଆଖିରୁ ଧାର ଧାର ଲୁହ ବୋହି ଯାଉଥାଏ । ସେ ଭାବୁଥାଏ, କେତେ ଉଚ୍ଚମନର ବାବୁଟିଏ ସତେ !

ନୂପୁର ଖାଇସାରି ବାସନ ଧୋଇଲା । ବରଷା ଛାଡ଼ି ନଥାଏ । ସେମିତି ଝଡ଼ି ଲାଗିଥାଏ । ଭାବିଲା, କାମ ତ ସରିଲାଣି, ସେମିତି ତିନ୍ତିବୁଡ଼ି ପଳେଇ ଯିବ ଘରକୁ ।

ଦୁଆରଟା ଭିତରୁ ବନ୍ଦ କରି ଦେଇ ଯିବା ଲାଗି ବାବୁଙ୍କୁ କହିବାକୁ ଗଲା । ସେ ଆଖିବୁଜି ଶୋଇ ପଡ଼ିଥିଲେ । ଡ଼ାକିବାକୁ ଭରସି ପାରିଲା ନାହିଁ । ଘର ଦ୍ୱାର ମୁକୁଳା ରଖି ଚାଲି ଯିବ ବା କେମିତି ? ବରଂ ଏଇ ଅଗଣା ବାରଣ୍ଡାରେ ଟିକିଏ ବସି ବସି ବିଶ୍ରାମ ନେବା ଠିକ୍ ହେବ । ବାବୁ ଉଠିଲେ, କହି ଦେଇ ଚାଲି ଯିବ ।

ନୂପୁର ଦୁଇ ହାତରେ ଗୋଡ଼ ଦୁଇଟିକୁ ଛନ୍ଦିଧରି କାନ୍ଥରେ ମୁଣ୍ଡଟି ଲଗାଇ ବସିଛି । ମୁଣ୍ଡରୁ ଓଢ଼ଣା ଖସି ଆସିଛି । ପିଠି କାନ୍ଥକୁ ଲାଗିଛି କି ଲାଗିନି । ମୁହଁଟି ଟିକିଏ ଉପରକୁ ଅଛି । ଓଳିରୁ ପାଣି ଧାର ଧାର ହୋଇ ଝରୁଥିବାର ଲକ୍ଷ୍ୟ କରୁଥାଏ । ଦେଖୁଥାଏ, ବାହାରେ ମୂଷଳ ଧାରା ବର୍ଷା । ନିଜର ନିଃସହାୟତା କଥା ଭାବୁ ଭାବୁ କେତେବେଳେ ତାକୁ ନିଦ ଲାଗିଗଲା ।

ଯଦୁବାବୁ ନିଜ କ୍ୱାଟରର ବାହାର ବାରଣ୍ଡାରେ ଚୁପ୍ ଚାପ୍ ବସିଥାନ୍ତି । ବ୍ରେକ୍ ଫାଷ୍ଟ ବାଦେ ଖବର କାଗଜ ଓ ପତ୍ରିକା ଲେଉଟାଇବା ପରେ, ସେ ଏଇଠି ଏମିତି ଅନେକ ବେଳୁ

ଗୋଟିଏ ରକିଙ୍ଗ୍ ଚେୟାରରେ ବସିଛନ୍ତି । ବେଳେ ବେଳେ ଝୁଲୁଛନ୍ତି । କେତେବେଳେ ପୁଣି ସ୍ଥିର ଦୃଷ୍ଟିରେ ମେଘ ମେଦୁର ଆକାଶକୁ ଚାହିଁ ରହିଛନ୍ତି ।

ଉମା କେତେବେଲୁ ପାଖ ସୋଫାରେ ବସି ଯଦୁବାବୁଙ୍କ ଅନ୍ୟ ମନସ୍କତାକୁ ଉପଭୋଗ କରୁ ଥାଆନ୍ତି ।

ବିଜୁଳି ମାଇଲା । ଆଲୁଅ ପଡ଼ିଲା ସାମ୍ନା ଗଛ ଓ ବାରଣ୍ଡାରେ । ତା ପରେ ପରେ ଘଡ଼ ଘଡ଼ି ଚଡ଼ ଚଡ଼ି ଶବ୍ଦ ।

ସେ ଦିନ ବି ଏମିତି ପାଗ ହୋଇଥିଲା .......... ଖଣ୍ଡେ ଖଣ୍ଡେ ବଉଦ ସତେ ଅବା ମନ ଭିତରକୁ ପଶି ଆସୁଛି । ଘୋଟି ଯାଉଛି ମନ ଭିତରେ ।

ଶ୍ରଦ୍ଧାକୁ ଏ ଭିତରେ ପଚିଶ ବର୍ଷ ହୋଇଗଲାଣି । ଯଦୁବାବୁ ଆପଣା ଭିତରେ ନିମଗ୍ନ ଥାଆନ୍ତି ।

ଉମା ଭାବୁଥାନ୍ତି । ମିଥୁନ ଚାଲିଛି । ଏଇଠି ଉତ୍ତରାୟଣ ସରିଯିବ । କର୍କଟ ସଂକ୍ରାନ୍ତିରୁ ଆରମ୍ଭ ହୋଇଯିବ ସୂର୍ଯ୍ୟଙ୍କର ଦକ୍ଷିଣାୟନ ଗତି । ବାହା ତିଥି ଏଇନା ନାହିଁ ବୋଲି କିଏ ଜଣେ କହୁଥିଲେ ।

ଏଇ କ୍ୱାଟରରେ ଆଗରୁ ଜଣେ ବଡ଼ ଇଞ୍ଜିନିୟର ରହୁଥିଲେ । ସେ ଏଇ ସବୁ ଆମ୍ବ ପଣସ, କଦମ୍ବ ଗଛମାନ ଲଗାଇଥିଲେ । ଏଇ ବେଦିଟା ବି ସେ କରାଇଥିଲେ । ଏଇଠି ତାଙ୍କର ଝିଅ ପୁଅଙ୍କର ବାହାଘର ହୋଇଥିଲା । ଉମା ଶୁଣିଛନ୍ତି, ପୁରୁଣା ପଡ଼ୋଶୀମାନଙ୍କଠାରୁ । ତାଙ୍କ ପିଲାଙ୍କର ବାହାଘର କଣ ଏଇଠି ହେବାର ଯୋଗ ନାହିଁ ? ରଜ ଆସିଗଲାଣି । ଝିଅ ଦିଟା ବାହାରେ । ସେମାନେ କଣ ରଜକୁ ଆସିବେ ନାହିଁ ? ଉମା ଚାହିଁଲେ ଯଦୁବାବୁଙ୍କ ଆଡ଼କୁ, ସେ ଗୋଟିଏ ବଡ଼ ଆମ୍ବ ଗଛ ଆଡ଼େ ଚାହିଁ ଥାଆନ୍ତି । କଣ ଭାବୁଥାନ୍ତି କେଜାଣି ? କିନ୍ତୁ ଆଗପରି ମୁହଁରେ ଗମ୍ଭୀରତା ନାହିଁ, ଟିକିଏ ପ୍ରଫୁଲ୍ଲ ଦିଶୁଛନ୍ତି ।

ଉମା ପଚାରିଲେ - 'ଝିଅ ଦୁହେଁ ରଜ ଆଗରୁ ଫେରିବେ ତ ?'

ଯଦୁବାବୁ ସବୁ ବୁଝି ସାରିଛନ୍ତି । କହିବାକୁ ଭୁଲି ଯାଇଥିଲେ । କହିଲେ - 'ହଁ, ସେ ଦୁହେଁ ପଅରଦିନ ପହଞ୍ଚିବେ । ଝିଅମାନେ ନଥିଲେ କଣ ରଜଟା ଭଲ ଲାଗିବ ?'

ଉମା କହିଲେ - 'ହଁ ପରା, ତାଙ୍କ ସାଙ୍ଗମାନେ ଆସି ଦଳ ଦଳ ହୋଇ ପଚାରି ଯାଉଛନ୍ତି । ବେଶୀ ଖୋଢା ଚାଲିଛି ଶ୍ରୁତିକୁ ! ଶ୍ରଦ୍ଧା ଅପା ଖେଳିବେ ନି, ଖେଳାଇବେ । ଶ୍ରୁତିଟା ଏବେ ବି ପିଲାଙ୍କ ପରି ହେଉଛି । ଉଦଣ୍ଡୀ ଟା !'

ଯଦୁବାବୁ କହିଲେ- 'ଦି ଭଉଣୀଙ୍କର ଭାରି ମେଳ, ପୁଣି ଯୁକ୍ତି ତର୍କରେ ରଗା ରଗିରେ ବି ଅନ୍ତ ନାହିଁ । ନୁହଁ ?'

ଉମା ହସି ହସି କହିଲେ - 'ହଁ ପରା !'

## ॥ ୨୫ ॥

କିଏ କହେ- କ୍ୱାଟର । କିଏ କହେ - ବଙ୍ଗଳା, କିଏ ବା କହେ ବଙ୍ଗଲୋ । ପିଅନମାନେ କହନ୍ତି - କୋଠି । କିନ୍ତୁ ଯଦୁ ବାବୁ ଓ ଉମାଙ୍କ ପାଇଁ ସେଇଟା ଥିଲା - ଘର । ଗାଁରେ ବନ୍ଧୁ ବାନ୍ଧବ ବା କୁଟୁମ୍ବରେ କାହା କାହା ସାଙ୍ଗରେ କଥା ପଡ଼ିଲେ, କହନ୍ତି - ଆମ ଭୁବନେଶ୍ୱର ବସା ।

ରାମ ଏଇ ଭୁବନେଶ୍ୱର ବସା ବା କୋଠିର ପ୍ରଶସ୍ତ ହତାର ଗୋଟିଏ ପାଖେ ଥିବା ବଡ଼ ବଡ଼ ଗଛ କେତୋଟିରେ ତିନି ଚାରିଟା ଦୋଳି ବାନ୍ଧି ଦେଇଛି ।

ଗାଁ ଗଣ୍ଡାରେ ଯେମିତି ସାଇ ପଡ଼ିଶା ଚଳଣି ଥାଏ, ଏଠି ସେମିତି ନାହିଁ । ତଥାପି ଆଖପାଖ କ୍ୱାଟରର ଛଅ ସାତଝିଅ ଏକାଠି ହୋଇ ଦୋଳି ଖେଳୁଛନ୍ତି । ଗାଁ ପରିବେଶକୁ ସହର-ସମାଜରେ ଫୁଟାଇ ଉପଭୋଗ କରିବାର ଉଦ୍ୟମ ତଥାପି ମଉଳି ନାହିଁ ।

ତିନି ଚାରି ଜଣ ଦୋଳିରେ ବସି ଝୁଲୁ ଛନ୍ତି । କେହି କେହି ଦୋଳି ଝୁଲାଉଛନ୍ତି । କେତେ ଜଣ ପାଖା ପାଖି ଚଉକୀ ପକାଇ ବସିଛନ୍ତି । କିନ୍ତୁ ଦୋଳିରେ ଝୁଲୁଥିବା ଝିଅଙ୍କ ଭିତରୁ ଦୁଇ ତିନି ଜଣ ଗୀତ ବୋଲିଲା ବେଳେ ଅନ୍ୟମାନେ କେବଳ ହସୁଛନ୍ତି ଓ ବେଳେ ବେଳେ ପଦେ ଅଧେ ପାଳି ଧରୁଛନ୍ତି । ଝିଅଟିଏ ଦୋଳିରେ ପେଙ୍ଗ ମାରିବା ବେଳେ ବୋଲୁଥାଏ-

ବନସ୍ତେ ଡ଼ାକିଲା ଗଜ
  ବରଷକେ ଥରେ ଆସିଛି ରଜ

ଆସିଛି ରଜଲୋ

ସଙ୍ଗେ ଧରି ସଜବାଜ...................

ପୁଣି ଜଣକୁ ଇଙ୍ଗିତ କରି କହୁଥାଏ

ରାଶିରୁ ଛାଡ଼ିଲା ଚୋପା

ଗୋଡ଼ରେ ନାଇଚୁ

ସରୁ ଅଳତା

ସରୁ ଅଳତା ଲୋ

ମୁଣ୍ଡରେ ସିନ୍ଦୁର ଟୋପା ।

ଆଉ ଜଣେ ବୋଲୁଥାଏ -

ପାଚିଲା ଭଇଁଚ କୋଳି

ତୋର ମୋର ଆଜି

ଲାଗିବା କଳି

ଲାଗିଲା କଳିଲୋ

ମୋଠାରୁ ଯିବୁ କି ବଳି

ପଞ୍ଝାକ ଯାକ ଖିଲି ଖିଲି ହୋଇ ହସୁ ଥାଆନ୍ତି ।

ଶ୍ରଦ୍ଧା ଗୋଟିଏ ଦୋଳିରେ ବସି ବେଶ୍ ଫୂର୍ତ୍ତି ଓ ଆନନ୍ଦରେ ପେଙ୍ଗା ମାରୁଥାଏ ଓ ପାନ ଚୋବେଇ ଚୋବେଇ ଗୀତକୁ ଉପଭୋଗ କରୁଥାଏ ।

ଫାଟକ ପାଖରେ ଗାଡ଼ି ଶବ୍ଦ ଶୁଣି ଗୀତର ସ୍ୱର କମାଇ ଦେଲା ଝିଅଟି । ଶ୍ରୁତି ପାଟିକଲା - 'କିଲୋ ଆଳକା ସ୍ୱର ପଡ଼ିଗଲା କି ?'

ଦି ଚାରି ଜଣ ଝିଅ କହିଲେ- 'କିଏ ଆସିଲେଣି ।' ଶ୍ରୁତି ବେପରୁଆ ଭାବରେ କହିଲା - 'ଆସନ୍ତୁ, ଜାଣି ନଥିଲେ ଜାଣିଯିବେ, ଭୁଲି ଯାଇଥିଲେ ମନେ ପଡ଼ିଯିବ ଆଜି ରଜ ।' ତା କଥାରେ ଉଠିଲା ହସର ଗୋଟାଏ ପତଳା ଲହର ।

ଗାଡ଼ି ଗେଟ୍ ମୁହଁରେ ଅଟକିବା ଦେଖି ରାମ ଦଉଡ଼ି ଗଲା । ପୁଣି ସେଠୁ ଲେଉଟି ଆସି, ଯଦୁବାବୁଙ୍କୁ ଖବର ଦେଲା- 'ନନ୍ଦବାବୁ ଆସିଛନ୍ତି ।'

ପ୍ରୋବେସନ୍ ସମୟରେ ନନ୍ଦ ଯଦୁବାବୁଙ୍କଠାରୁ କାମ ଶିଖୁଥିଲା । ସେ ତାକୁ ଖୁବ୍ ଆଦର କରୁଥିଲେ । ତାର ସ୍ୱଭାବ ଓ କଥା ଚଟ୍ କରି ଧରି ନେଇ ବୁଝିଯିବା, ପୁଣି କାମ

କରିବାର ବିଚକ୍ଷଣତା ତାକୁ ମୁଗ୍ଧ କରୁଥିଲା । ସେ ଆସିଥିବାର ଶୁଣି, ତାକୁ ପାଛୋଟି ନେବାକୁ ବାରଣ୍ଡା ଯାଏ ଆସିଲେ । ନନ୍ଦ ମଧ୍ୟ ରାମଠାରୁ ଇସାରା ପାଇ ଭିତରକୁ ଧୀରେ ଧୀରେ ଆସୁଥାଏ ।

ନନ୍ଦ ପ୍ରଣାମ କରୁ କରୁ କହିଲା 'ସତରେ ସାର୍ ଆଜି ରଜ ବୋଲି ମୋର ଆଦୌ ମନେ ନଥିଲା । ଭୁଲି ଯାଇଥିଲି । ପୋଡ଼ ପିଠା ଖାଇବାର ଯୋଗ ଟାଣି ଆଣିଲା । ' ଯଦୁବାବୁ ହସି ହସି କର ମର୍ଦ୍ଦନ ପାଇଁ ବାହୁ ପ୍ରସାରିତ କଲେ । ପୁରୀ ଜିଲ୍ଲାରେ ରଜରେ ପୋଡ଼ ପିଠା ହେବାର ବିଧି ନାହିଁ । କିନ୍ତୁ ଉମା କଟକ ଜିଲ୍ଲାର ଝିଅ ତ, ସେ ପୋଡ଼ ପିଠା କରନ୍ତି ରଜ ବେଳକୁ । ତା ଛଡ଼ା ଘରେ ଏମିତି ପୋଡ଼ ପିଠା କରନ୍ତି, ଯଦୁବାବୁଙ୍କୁ ଭଲ ଲାଗେ ବୋଲି । ନନ୍ଦ କେତେ ଥର ତାଙ୍କ ଘରେ ପୋଡ଼ ପିଠା, ଆରିସା ପିଠା ଖାଇଛି । ଆଜି ସେଇ ସ୍ମୃତି ମନରେ ଚହଟି ଗଲା । ରାମ ଲନ୍‌ରେ ଚଉକୀ ପକାଇ ଦେଇ, ଯଥା ବିଧି ଚର୍ଚ୍ଚାର ବ୍ୟବସ୍ଥା କରିବାକୁ ଭିତରକୁ ଚାଲିଗଲା । ଯଦୁବାବୁ ଓ ନନ୍ଦ ବସି କଥା ବାର୍ତ୍ତା ହେବା ଭିତରେ ସେମାନଙ୍କ ଆଗରେ ସେଣ୍ଟର ଟେବୁଲଟିଏ ଥୁଆ ହେବାର ଦେଖି ନନ୍ଦ ଅନୁମାନ କରି ନେଲା ଯେ, ଏଥର ଖାଦ୍ୟ ଓ ତା ସହିତ ମାଡ଼ାମ୍ ଆସିଯିବେ । ଏଇ ପରିବାର ସହିତ ତାର ଆତ୍ମୀୟତା ଅନେକ ଦିନର, ଏବଂ ତାହା ତାକୁ ଆକଣ୍ଠ ଆନନ୍ଦ ଦେଇଛି । ଅଫିସର କାମ ଦାମ ସହିତ ବରିଷ୍ଠ, ସମାସ୍କନ୍ଧ ଓ କନିଷ୍ଠ ଅଫିସରମାନଙ୍କ ସହିତ କେମିତି ସାମାଜିକ ଜୀବନରେ ଚଳିବାକୁ ହୁଏ, ସେ ତାହା ଯଦୁବାବୁଙ୍କଠାରୁ ଏଇ ପରିବାରରୁ ଶିଖିଛି ।

ଉମା ହସି ହସି ଚାଲି ଆସିଲେ ଭିତରୁ । କହି କହି ଆସୁ ଥାଆନ୍ତି - 'କଅଣ ନନ୍ଦବାବୁ, ବହୁ ଦିନପରେ ମନେ ପକାଇଲେ ?'

ଯଦୁବାବୁ ଉମାଙ୍କ ସହିତ ଯୋଗ ଦେଇ କହିଲେ 'ହଉ ପଛେ ବହୁଦିନ, ମନେ ତ ପଡ଼ିଲା !'

ନାନା କଥା ପଡ଼ିଲା । ଗପ ସପ ହେଉ ହେଉ, ଉମା ସେଇ ଭିତରେ ଗୋଟିଏ କଥା ଉଠାଇଲେ - 'ଆମ ଶ୍ରଦ୍ଧା ପାଇଁ ଗୋଟିଏ ପାତ୍ର ନଜର କର ମ !'

ନନ୍ଦର ମନେ ପଡ଼ିଗଲା, ଯଦୁବାବୁ ଥରେ କହିଥିଲେ - ଗପସପ ଭିତରେ ସପ୍ ବା ସପିଙ୍ଗ କଥାଟା ମନ ଭିତରେ ରଖି କେମିତି କାମ ହାସଲ କରାଯାଇପାରେ । ଅବଶ୍ୟ ଉମାଙ୍କ ସ୍ୱରରେ ଥିଲା ଆତ୍ମୀୟତାର ଅଧିକାର ।

ଯଦୁବାବୁ ମଧ୍ୟ ତାଳ ଦେଲା ପରି କହିଲେ- 'ମୁଁ ତୁମକୁ ଠିକ୍ ଏଇଥି ପାଇଁ ମନେ ପକାଉଥିଲି। ଅବଶ୍ୟ, ତୁମେ ଆମ ପିଲାମାନଙ୍କୁ ଦେଖି ନଥିବ। ତୁମ ଟ୍ରେନିଙ୍ଗ୍ ଓ ପ୍ରୋବେଶନ୍ ସମୟରେ ସେମାନେ ନଥିଲେ । ବଡ଼, ଶ୍ରଦ୍ଧା । ସେ ଅଧ୍ୟାପିକା ହୋଇ ଗଲାଣି ।'

ନନ୍ଦ ଫାଟକ ଫିଟାଇ ଆସିବା ବେଳେ ଗୋଟଏ ଦୋଳି ଉପରେ ତାର ଦୃଷ୍ଟି ପଡ଼ିଛି ଏବଂ ଆଉ ଝିଅଟିର କଥା ବି କାନରେ ବାଜିଛି । କିନ୍ତୁ ପୋଷାକ ଓ ପରିବେଶ ପାର୍ଥକ୍ୟ ହେତୁ ହଠାତ୍ ଚିହ୍ନିବାରେ ଅସୁବିଧା ହୋଇଥିଲା । କହିଲା - 'ବୋଧହୁଏ ଦେଖିଛି କି କଣ ମନେ ପଡୁନି ।'

ଉମା ଭିତରକୁ ଉଠିଗଲେ । କିଛି ସମୟ ପରେ ପୁଣି ଫେରିଲେ। କହିଲେ- 'ନନ୍ଦବାବୁ, ତୁମେ କଣ ଏକା ଭୁବନେଶ୍ୱର ଆସିଛ ?'

ନନ୍ଦ ଅଳ୍ପ ହସିଲା ଓ ମସ୍ତକର ଇଙ୍ଗିତରେ ପ୍ରଶ୍ନର ଉତ୍ତର ଦେଲା ।

ଉମା କହିଲେ- 'ଆଜି ଅନେକ ଦିନପରେ ଏକାଠି ଖିଆ ପିଆର ସୁଯୋଗ ମିଳିଛି । ନିଶ୍ଚୟ ଆସିବ । ତମକୁ ନିମନ୍ତ୍ରଣ ରହିଲା । ଆଉ ତମ କଥାରୁ ତ କିଛି ସ୍ପଷ୍ଟ ବୁଝିପାରୁ ନାହିଁ, ଯଦି ଦୁହେଁ ଆସି ଥାଅ, ତେବେ ଦୁଇ ଜଣଯାକ ନିଶ୍ଚୟ ଆସିବ ।'

ଯଦୁବାବୁ କହିଲେ- 'ଅନେକ ଦିନର ବ୍ୟବଧାନ ପରେ ଭେଟ ହେଉଛି ତ, ତେଣୁ ଏ ଭିତରେ ତମେ ଘରସଂସାର କଲଣି କି ନାହିଁ ଜାଣି ପାରିନୁ । ଯଦି ଦୁହେଁ ଆସି ଥାଅ, ତେବେ କଦାପି ଏକା ଆସିବନି । ଦୁହେଁ ଯାକ ନିଶ୍ଚୟ ଆସିବ ।'

ନନ୍ଦ ହାତ ଯୋଡ଼ି ପକାଇ କହିଲା- 'ସାର ଏତେ ବଡ଼ କଥା କହିଲେ ! ସେପରି କିଛି ହୋଇଥିଲେ, ଆପଣ ପୁଣି ଜାଣି ନଥାନ୍ତେ ?'

ଯଦୁବାବୁ ନିଜ ଅଜାଣତରେ ଟିକିଏ ଗମ୍ଭୀର ହୋଇଗଲେ । ଉମାଙ୍କ ମନରେ ଆଶାର ଝଲକ ଚହଟିଲା ।

ରାମ ଆସି ଛିଡ଼ା ହେଲା । ବୋଧ ହୁଏ କିଛି କହିବାକୁ ଆସିଛି । ଉମା ପ୍ରଶ୍ନ କଲାଭଳି ଅନାଇଲେ ।

'ଦେଇ କହିଲେ ଝିଅମାନେ ଯିବାକୁ ବାହାରିଲେଣି' - ଏଇ ସମ୍ବାଦଟି ଦେଇ ସାରି, ସେ କିଛି ଆଦେଶର ଅପେକ୍ଷାରେ ରହିଲା । ସେମାନଙ୍କୁ ଖାଇବା ବାଢ଼ିଦେବା ଲାଗି ଉମା ତାକୁ ବରାଦ୍ କଲେ ।

ଝିଅମାନେ ବୋଲି ଖେଳ ଛାଡ଼ି ଡ଼ାଇନିଙ୍ଗ ରୁମ୍ ଆଡ଼କୁ ଗଲେ । ଯିବା ବାଟରେ ବାପା ଓ ବୋଉଙ୍କ ପାଖରେ ବସିଥିବା ଅତିଥିଙ୍କ ଉପରେ ଶ୍ରୁତିର ଦୃଷ୍ଟି ପଡ଼ିଲା । ଟିକିଏ ଅଟକି ଯାଇ ଲନ୍ ଆଡ଼କୁ ଆସିଲା । ଯଦୁବାବୁଙ୍କ ପାଖରେ ଛିଡ଼ା ହେଲା । ନନ୍ଦ ଆଡ଼କୁ ଅନାଇ, କହିଲା - 'ହାଲୋ !'

ନନ୍ଦ କିଛି କହିବା ଆଗରୁ ଉମା କହିଲେ- 'ମା, ଦଣ୍ଡବତ ହୁଅ । ଇଏ ନନ୍ଦ ଭାଇ ।'

ଶ୍ରୁତି ଆନ୍ତରିକ ନମସ୍କାର କଲା । ସସ୍ମିତ ଦୃଷ୍ଟିରେ, ତାଙ୍କ ଆଡ଼କୁ ଚାହିଁ କହିଲା- 'ଆଗରୁ ଦେଖା ହୋଇଥିଲା । କିନ୍ତୁ ପରିଚୟ ହୋଇ ନଥିଲା ।'

ନନ୍ଦ ବଡ଼ ଆମୋଦିତ ହୋଇ କହିଲା - 'ହଁ ହଁ ଅଳ୍ପ ସମୟ ପାଇଁ ହେଲେ ବି ଦେଖା ସାକ୍ଷାତ ହୋଇଛି । କିନ୍ତୁ ସାର୍ ଏମାନେ ଆମ ପିଲାଏ ବୋଲି ମୁଁ ଜାଣି ପାରି ନଥିଲି ।'

ଶ୍ରୁତି ଅତ୍ୟଧିକ ନମ୍ରତା ଓ ଫର୍ମାଲିଟିକୁ ଘୃଣା କରେ । ତାର ମନ ହେଉଥିଲା ନନ୍ଦକୁ ଖତେଇ ହୋଇ ନିଜର ଅପସନ୍ଦ ପ୍ରକାଶ କରିଦେବାକୁ । କିନ୍ତୁ ନନ୍ଦ ଏହା ଛଡ଼ା କଣ ବା କହିଥାନ୍ତା ?

ଯଦୁବାବୁ କହିଲେ - 'ହଉ ମା, ତୁ ସାଙ୍ଗମାନଙ୍କ ପାଖରେ ବସି ଅପାକୁ ପଠାଇ ଦେ ।'

ଶ୍ରୁତିଠାରୁ ବୋଉ ଡ଼ାକୁଥିବାର ଖବର ପାଇ, ଶ୍ରଦ୍ଧା ଲନ୍ ଆଡ଼କୁ ଆସିଲା । ଆସିବା ବେଳେ ଶ୍ରୁତିର ତାଗିଦ୍ ଶୁଭୁଥାଏ - 'ତୁ ଆସିଲେ ଖାଇବା । ଆମେ ଅପେକ୍ଷା କରୁଛୁ ।'

ଶ୍ରଦ୍ଧା ବାରଣ୍ଡାରୁ ଓହ୍ଲାଇବା ବେଳେ ନନ୍ଦକୁ ଦେଖି ପାରିଲା । ଭାବିଲା, ଇଏତ ସେଇ ଭଦ୍ର ଲୋକ । ବୋଧହୁଏ ବାପାଙ୍କର ଅତି ପରିଚିତ । ତେଣୁ ସଙ୍ଖୋଳିବାକୁ ଆସିଛନ୍ତି । ସେ ଉମାଙ୍କ ପାଖରେ ବଡ଼ ସମ୍ଭ୍ରମରେ ଛିଡ଼ା ହେଲା ଓ ନନ୍ଦକୁ ନମସ୍କାର କଲା ।

ଯଦୁବାବୁ କହିଲେ- 'ମା, ଇଏ ନନ୍ଦ ଭାଇ ରାଜ୍ୟ ପ୍ରଶାସନ ପାହିଆର ଜଣେ ବିଚକ୍ଷଣ ଅଫିସର । ଆମମାନଙ୍କର ଅତି ଆପଣାର ଲୋକ ।'

ଉମା ଶ୍ରଦ୍ଧାକୁ ବଡ଼ ସ୍ନେହରେ ଆଉଁସୁ ଥାଆନ୍ତି । ତା ଛିଡ଼ା ହେବା ଠାଣିରେ ଥାଏ

ମର୍ଯ୍ୟାଦା ବୋଧ ଓ ନମ୍ରତା । ମୁହଁଟି ସାମାନ୍ୟ ତଳକୁ କରିଥାଏ ।

ନନ୍ଦ ଆତ୍ମୀୟତା ପୂର୍ଣ୍ଣ ପ୍ରତି ନମସ୍କାର କରି ପଚାରିଲା - 'ଇଏ ଶ୍ରଦ୍ଧା, ନାଁ ?'

ଶ୍ରଦ୍ଧା ମୁହଁ ଟେକି ଅନାଇଲା, ଅଳ୍ପ ହସ ହସ ଓଠ ଓ ଆଖି । ମୁଖମଣ୍ଡଳରେ ପବିତ୍ର ପ୍ରସନ୍ନତା ।

ଯଦୁବାବୁ କହିଲେ - 'ମା, ବସୁନ୍ତୁ ।'

ଶ୍ରଦ୍ଧା ତାଙ୍କୁ ନମ୍ର ଭାବରେ ଅନାଇଲା । ଧୀର ବିନୟ ସ୍ୱରରେ କହିଲା- 'ପିଲାଏ ଅପେକ୍ଷା କରିଛନ୍ତି ।'

ଉମା କହିଲେ - 'ହଉ, ସିଏ ଯାଉ ।'

ଶ୍ରଦ୍ଧା ନନ୍ଦକୁ ମଧୁର ନମସ୍କାର ଜଣାଇ ଅନୁମତି ମାଗିବା ଭଳି ସ୍ୱରରେ କହିଲା - 'ଆସୁଛି' । ତା ପରେ ଧୀର ନମ୍ର ପଦକ୍ଷେପରେ ଚାଲିଗଲା ।

ନନ୍ଦ ଯିବାକୁ ଉଠି, ନମସ୍କାର କଲା । ଯଦୁବାବୁ ତାର ଆସିବା ସମୟ ପଚାରିଲେ । ନନ୍ଦ ସଂଧ୍ୟା ଆଠଟାରୁ ସାଢ଼େ ଆଠଟା ଭିତରେ ଆସିବ ବୋଲି କହିଲା । ଖିଆପିଆ ସହିତ କଥା ବାର୍ତ୍ତା ପାଇଁ ତ ସମୟ ହିସାବ କରି ଆସିବାକୁ ହେବ । ସେ ସମ୍ପର୍କରେ ନନ୍ଦ ଯଥେଷ୍ଟ ସଚେତନ ।

ଯଦୁବାବୁ ପଚାରିଲେ - 'କେଉଁଠି, ସର୍କିଟ ହାଉସ୍‌ରେ ଅଛ ?'

ନନ୍ଦ ଚାଲି ଯାଉ ଯାଉ, ଅଟକି ଯାଇ ଫେରି ଅନାଇଲା, କହିଲା - 'ହଁ ସାର୍ ।'

ଡ୍ରାଇଭର ଗାଡ଼ି ଷ୍ଟାର୍ଟ କରିବାର ଶବ୍ଦ ଶୁଣିଲା ଶ୍ରଦ୍ଧା ।

## ॥ ୨୬ ॥

ନାରଦ ସବୁ କହି ଯାଇଥିଲେ । ନଗାଧିରାଜ ହିମାଦ୍ରି ଜାଣି ଗଲେ ଯେ, ତାଙ୍କର ଉମା ବୋଲି ଯେଉଁ ଝିଅଟି ହୋଇଛି, ସେ 'ଦକ୍ଷସ୍ୟ କନ୍ୟା ହର ପୂର୍ବ ପତ୍ନୀ' । ତେଣୁ, ସେ ତାଙ୍କ ପାଇଁ ବର ଖୋଜୁ ନଥିଲେ । ତଥାପି ଶିବଙ୍କ ପାଖକୁ ପ୍ରସ୍ତାବଟା ନେଇ ଯିବାକୁ ପଛାଉଥିଲେ । ଡ଼ରଥିଲା, କାଳେ ସେ ମନା କରିଦେବେ ! ପୁରାଣ ବର୍ଣ୍ଣିତ ଉପାଖ୍ୟାନଟି

ଚମତ୍କାର ଭାବରେ ଫୁଟିଛି କାଳିଦାସଙ୍କ କାବ୍ୟରେ । ପୁଣି ସେଇ ଏକା ଭଳି ଆଶଙ୍କା ଯଦୁବାବୁଙ୍କ ମନକୁ ଆଛନ୍ନ କରିରଖିଛି ।

ନନ୍ଦ ପାଇଁ ଶ୍ରଦ୍ଧାର ଅନିଚ୍ଛା ନାହିଁ । ନନ୍ଦର ମନ ମଧ୍ୟ ଶ୍ରଦ୍ଧା ଆଡ଼କୁ ଢ଼ଳିଛି । ଏହା ଯଦୁବାବୁଙ୍କ ଅନୁମାନ । ଉମା ମଧ୍ୟ ଏହା ଲକ୍ଷ୍ୟ କରିଛନ୍ତି । ତଥାପି ପ୍ରସ୍ତାବଟି ଧରି ଆଗେଇ ଯିବାବେଳକୁ, ଟିକିଏ ଆଗପଛ ହେଉଛି ଯଦୁବାବୁଙ୍କର ମର୍ଯ୍ୟାଦା ସଚେତନ ମନ ।

ରାମ, ରନ୍ଧନ ଓ ପରିବେଷଣ ରୀତିରେ ଅଭ୍ୟସ୍ତ ଓ ଅଭିଜ୍ଞ । ଉମା ମଧ୍ୟ ଏଦିଗରେ ଊଣା ନୁହନ୍ତି । ସେ ଖାଇବା ଟେବୁଲ ପାଖକୁ ନନ୍ଦ ଓ ଯଦୁବାବୁଙ୍କୁ ପାଛୋଟି ଆଣିଲେ । ଶ୍ରଦ୍ଧା, ଶ୍ରୁତି, ଉମା ଓ ଯଦୁବାବୁ, ନନ୍ଦକୁ ପ୍ରଥମେ ବସାଇ ଦେଇ, ଗୋଟିଏ ଗୋଟିଏ ଚଉକିରେ ବସିଗଲେ । ପ୍ରଥମେ ସୁପ୍ ପରିବେଷଣ ହେଲା । ତା ସହିତ ଆରମ୍ଭ ହେଲା ଆଳାପ ।

ଯଦୁବାବୁ ହୁଏତ କୌଣସି ମଜା କଥାରୁ ଆଳାପ ଆରମ୍ଭ କରି ଥାଆନ୍ତେ, ନନ୍ଦ ବି ଏପରି କରି ପାରି ଥାଆନ୍ତା । କିନ୍ତୁ ସେଦିନର ଅନୁଭୂତିରୁ କିମ୍ବା କେଉଁଥି ପାଇଁ କେଜାଣି, ନନ୍ଦ ପଚାରିଲା - 'ସାର୍ କେତେ ରୋଜଗାର କଲେ, କୋଉ ପାହିଆକୁ ଉଠିଲେ, ମଣିଷ ଦୁର୍ନିତି ମୁକ୍ତ ହୋଇ ପାରିବ ?'

ଯଦୁବାବୁଙ୍କର ଚିନ୍ତା ପରି, ଉତ୍ତର ବି ଥିଲା ସ୍ୱଚ୍ଛ । ତାଙ୍କ ମତରେ ମଣିଷ କେବଳ ଆର୍ଥିକ ଅଭାବ ପାଇଁ ଦୁର୍ନୀତି କରେ ନାହିଁ । ଏହା ସଂସ୍କୃତିର ଅଭାବ ପାଇଁ ଘଟେ । ଲୋଭ ମୋହ ପ୍ରଭୃତି ପ୍ରବୃତ୍ତିକୁ ବିବେକର ଆୟତ୍ତରେ ଛାଡ଼ିଦେଲେ, ଏପରି ହୁଅନ୍ତା ନାହିଁ । କିନ୍ତୁ ଏ କ୍ଷେତ୍ରରେ ବଡ଼ କଥାଟି ହେଲା- 'ନିଜର ଆବଶ୍ୟକତାକୁ, ଅର୍ଜନ ଅନୁସାରେ ନିୟନ୍ତ୍ରଣ କରିବା ।'

ଶ୍ରଦ୍ଧା କହିଲା- 'ଗାନ୍ଧିଜୀ ପ୍ରଥମେ ନିଜର ବ୍ୟକ୍ତିଗତ- ଆବଶ୍ୟକତାକୁ ସଂଯତ କରିଦେଇଥିଲେ । ଆବଶ୍ୟକତାକୁ ଅନାବଶ୍ୟକ ଭାବରେ ବଢ଼ାଇ ଦେଲେ, ଖର୍ଚ୍ଚ ବଢ଼େ । ପୁଣି ନିଜର ଆୟକୁ କଳନା ନ କରି ଖର୍ଚ୍ଚର ଯୋଜନା ଲମ୍ବାଇ ଦେଇଗଲେ ବି ଖର୍ଚ୍ଚ ବଢ଼େ । ତାକୁ ତୁଲାଇବାକୁ ନିର୍ଦ୍ଦିଷ୍ଟ ଅର୍ଜନ ବାହାରେ ଅଧିକ ଅର୍ଥ ଆବଶ୍ୟକ ହୁଏ । ସେତେବେଳେ ଜଣେ ଧାର କରଜ କରିବ, କିମ୍ବା ପୈତୃକ ସମ୍ପତ୍ତିଥିଲେ ବିକ୍ରି କରିବ । ତା ବି ଯଦି ନଥାଏ, ବା ସେ ଦିଗଟି ବନ୍ଦ ହୋଇ ଯାଇଥାଏ, ତେବେ ଅନ୍ୟ ଉପାୟ ଖୋଜିବ । ଏପରି କି ଜଣେ ଜଣେ ଅନ୍ୟ ଜଣକ ସହିତ ନିଜକୁ ତୁଲ୍ୟ ସ୍ଥିତିରେ ରଖି ଚଳିବାକୁ ବସନ୍ତି । ତା ଭଳି ତାଙ୍କର

ଆର୍ଥିକ ସ୍ୱଚ୍ଛଳତା ଥାଉ କି ନଥାଉ, ସେଥି ପ୍ରତି ଖାତିର୍ କରନ୍ତି ନାହିଁ । ଏପରି ମନୋବୃତ୍ତି ମଧ୍ୟ, ନିଅଣ୍ଟ ଓ ନିଅଣ୍ଟ ଭରଣା କରିବାର ଘୂର୍ଣ୍ଣି ଭିତରକୁ ଠେଲି ଦିଏ । ଏହାରି ଫଳରେ ଲୋକଙ୍କ ମନରେ ଅବାଟରେ ଯାଇ ଅର୍ଥ କମାଇବାର ପ୍ରବୃତ୍ତି ଜନ୍ମେ ଏବଂ ତାହା କ୍ରମେ ଅଭ୍ୟାସ ଓ ଅଭ୍ୟାସରୁ ପ୍ରକୃତିରେ ପଡ଼ିଯାଏ ।'

ଶ୍ରୁତି ମଧ୍ୟ ସମାଜରେ ଦୁର୍ନୀତି ଗ୍ରସ୍ତ ଲୋକଙ୍କର ଗତି ବିଧି ଓ ପ୍ରଭାବକୁ ଲକ୍ଷ୍ୟ କରିଛି । ସେ କହିଲା- 'ସାଧାରଣତଃ ଯାହା ଦେଖାଯାଉଛି ଦୁର୍ନୀତି ପରାୟଣ ଲୋକଗୁଡ଼ାକ ସମାଜରେ ପାରିବାର ଲୋକ ଭଳି ଲାଗୁଛନ୍ତି ଏବଂ ବହୁ ଲୋକଙ୍କର ଆଦର୍ଶ ହୋଇ ଯାଉଛନ୍ତି । ସେମାନେ ତାଙ୍କର ସ୍ଥିତିକୁ ଦୃଢ଼ ଓ ନିରାପଦରେ ରଖିବା ପାଇଁ ଯାହା ପାଇଁ ଯାହା କରିବା, ଯାହାକୁ ଯାହା ଦେବା, ଯାହା ପାଇଁ ଯେଉଁ ବାଟରେ ହେଲେ ବି, ଯାହା କରାଇବା ଲାଭ ଜନକ ବୋଲି ଭାବୁଛନ୍ତି, ସେଥିରେ ସାମାନ୍ୟତମ ହେଳା କରୁ ନାହାନ୍ତି। ସେଥିପାଇଁ ଗୋଟାଏ ଗୋଟାଏ ପରିସର ଭିତରେ ସେମାନଙ୍କର ଆଧିପତ୍ୟ ବଢୁଛି ଏବଂ ସାଧାରଣ ଲୋକଙ୍କ ଭିତରେ ସେମାନଙ୍କ ପ୍ରତି ଘୃଣା ପରିବର୍ତ୍ତେ, ସେମାନଙ୍କର ସାମର୍ଥ୍ୟ ଅଛି ବୋଲି ଧରି ନିଆଯାଇଛି । ଏହା ଫଳରେ ଦୁର୍ନୀତିଟା ସଂକ୍ରାମକ ରୋଗଭଳି ବ୍ୟାପୁଛି ।'

ଶ୍ରଦ୍ଧା ଶ୍ରୁତିର କଥାକୁ ସମର୍ଥନ କଲା । ପୁଣି ଯଦୁବାବୁ ସୂଚାଇ ଦେଇଥିବା ଦୃଷ୍ଟିକୋଣ ସଂପର୍କରେ କହିଲା- 'ବାପା ଯେଉଁ ସଂସ୍କୃତି କଥାଟି କହିଲେ, ସେଇଟି ଭାରି ବଡ଼ ଜିନିଷ । ମୁଁ ଅବଶ୍ୟ ଆମ ଘର କଥା ବୋଲି କହୁ ନାଇଁ, କି ଆମେ ଗୋଟାଏ ନମୁନା ବା ଆଦର୍ଶ ବୋଲି ଦାବୀ କରୁନାହିଁ । କିନ୍ତୁ ଆମେ ଦୁର୍ନୀତି ବିରୁଦ୍ଧରେ ଦୃଢ଼ ମନୋଭାବ ଗଢ଼ି ନେଇଛେ । ହାତରେ ନିଜର ଲୁଗା ପଟା ସଫା କରିବା ଇସ୍ତ୍ରୀ କରିବାଠାରୁ ଯାବତୀୟ ଘର କାମ କରିବାରେ ଆମର ନିପୁଣତା ଅଛି । ନିଜର କୌଣସି କାର୍ଯ୍ୟ କରିବାରେ ଆମର କୁଣ୍ଠା ନାହିଁ କି ଲଜ୍ୟା ନାହିଁ । ସ୍କୁଲ କଲେଜ ଗଲାବେଳେ ଆମେ ସାଇକେଲ୍‌ରେ ଯାଉଥିଲେ । ବାପା ବ୍ୟକ୍ତିଗତ କାମରେ ଗଲେ, ସରକାରୀ ଗାଡ଼ି ବ୍ୟବହାର କରନ୍ତି ନାହିଁ । ନିଜ ଗାଡ଼ି ନିଜେ ଚଳାଇ ଯିବା ଆସିବା କରନ୍ତି । ଅର୍ଦ୍ଦଳି ପିଅନ ଗେଟ୍ ପାଖରେ କିମ୍ବା ବାହାର ବାରଣ୍ଡାରେ ବସେ । ବାହାର ବୋଲ ହାକ କରେ । ରାମ ଆମ ନିଜ ଲୋକ । ତା ଛଡ଼ା ଆଉ କାହା ହାତରେ ଘର କାମ କରା ଯାଏ ନାହିଁ । ଅଫିସ ଲୋକଙ୍କ ହାତରେ ଘରୋଇ କାମ କରାଇ ନେବା ଅସୁନ୍ଦର କଥା ବୋଲି ଆମମାନଙ୍କ ମନରେ ଧାରଣା ରହିଯାଇଛି । ଏଗୁଡ଼ାକ ଆମର ସ୍ୱାଭିମାନ ବଢ଼ାଇଛି । ଆମର ଚଳଣିକୁ ସଜାଡ଼ି ଗୋଟାଏ ବାଗରେ ପକାଇ ଦେଇଛି ।

ଆମେ ବର୍ଷାଦିନେ ବର୍ଷାତି ପିନ୍ଧି, ତିନ୍ତିବୁଡ଼ି ପଢ଼ିବାକୁ ଯାଉଥିବାବେଳେ ଆଉ କେଉଁ ସାଙ୍ଗ ତାଙ୍କ ବାପାଙ୍କ ଅଫିସ ଗାଡ଼ିରେ ଆମ କର ଦେଇ ଚାଲିଗଲାବେଳେ, ଆମର ଈର୍ଷା ହୁଏ ନାହିଁ । ଆମେ କିମ୍ବା ବୋଉ କେବେହେଲେ ଅଫିସ୍ ଗାଡ଼ିରେ ଆମକୁ ସ୍କୁଲ ବା କଲେଜରେ ଛାଡ଼ି ଆସିବାକୁ କହି ନାହୁଁ, ବରଂ ବାପା ଆମକୁ କହିଛନ୍ତି ତାଙ୍କ ନିଜ ଗାଡ଼ିରେ ଡ୍ରାଇଭିଙ୍ଗ୍ ଶିଖିବାକୁ ଏବଂ ଦରକାର ହେଲେ ନିଜ ନିଜ କାମରେ ତାକୁ ବ୍ୟବହାର କରିବାକୁ । ପଦ ପଦ୍‌ପଦବୀରେ ଥିବା ଲୋକେ ଯଦି ଏଇ ଭଳି ମନୋଭାବ ପୋଷଣ କରିବେ, ତେବେ ବାହାର ଓ ଭିତର ଉଭୟ ପରିଛନ୍ନ ତଥା ଦୁର୍ନୀତି ମୁକ୍ତ ରହିବାର ବାଟ ସଫା ହୋଇଯିବ ।'

ଉମା ଓ ଯଦୁବାବୁ ଦୁଇ ଝିଅଙ୍କ କଥା ଉପଭୋଗ କରୁ ଥାଆନ୍ତି । ନନ୍ଦ ମଧ ଯଦୁବାବୁଙ୍କ ଅଭ୍ୟାସ ଓ ଆଭିମୁଖ୍ୟ ବିଷୟରେ ଅବହିତ । ସେ ପଚାରିଲା - 'ସାର୍ ଏବେ ବି ଆପଣଙ୍କ ହବିରେ ଲାଗୁଛନ୍ତି ?'

ଶ୍ରଦ୍ଧା ସ୍ୱାଭାବିକ ହସଟିଏ ହସିଦେଲା । କହିଲା 'ବାପା ହାପ୍ ପ୍ୟାଣ୍ଟ ପିନ୍ଧି ପ୍ରତିଦିନ କିଛି କିଛି ବଗିଚା କାମ ନ କଲେ ଶାନ୍ତି ପାଆନ୍ତି ନାହିଁ । ଶ୍ରୁତିର ବି ସେଇଟା ବଡ଼ ହବି । ଅବଶ୍ୟ, ତାକୁ ଆପଣ ବାହାରୁ ଦେଖିଲେ ସେ ବିଷୟରେ ଅନୁମାନ କରିପାରିବେ ନାହିଁ ।'

ଶ୍ରୁତି ଦୁଷ୍ଟାମୀ ଚାହାଣି ସହିତ ଶ୍ରଦ୍ଧାକୁ କହୁଣୀରେ ଠେଲି ଦେଇ କହିଲା - 'ତୋ ହବି ବୋଉ ସହିତ ଗୋପାଳନ !'

ଶ୍ରଦ୍ଧା କହିଲା- 'ନାଃ କୁକୁରର ଟିଙ୍କ ବଛା ଓ ପରିଚର୍ଯ୍ୟା ।'

ଉମା କହିଲେ - 'ହଉ, ଥାଉ । ଏଇଠୁ ତର୍କ ବିତର୍କରୁ ଦୁଇ ଭଉଣୀଙ୍କର ଲଢ଼େଇ ଆରମ୍ଭ ହୋଇଯିବ ।'

ନନ୍ଦ ପଚାରିଲା- 'ଏମାନେ ଲଢ଼େଇ କରନ୍ତି ?'

ଉମା କହିଲେ- 'ଲଢ଼େଇ ଆଉ କଣ ? ଶ୍ରଦ୍ଧା ଶ୍ରୁତିକୁ ଟିକିଏ ଟିକିଏ ଚିଡ଼ାଇ ଦେଇ ଚୁପ୍ ହୋଇଯାଏ । ଶ୍ରୁତିର ତୁହାକୁ ତୁହା ଚିଡ଼ିବା ଓ ଗାଳିଦେବାକୁ ଶୁଣି ଶୁଣି ଉପଭୋଗ କରେ ।'

ଶ୍ରଦ୍ଧା ମାଆଙ୍କ କଥା ଶୁଣି, ମୁହଁ ପୋତି ହସୁ ଥାଏ ଓ କଣେଇ କଣେଇ ନନ୍ଦ ଓ

ଯଦୁବାବୁଙ୍କ ଆଡ଼କୁ ଅନାଉଥାଏ ।

ନନ୍ଦ କହିଲା- 'ତା ହେଲେ ଏଇ ଧୀର ସ୍ଥିର ଲାଗୁଥିବା ଝିଅଟି ଭିତରେ କମ୍ ଦୁଷ୍ଟାମୀ ନାହିଁ !'

ନନ୍ଦର ମନ୍ତବ୍ୟକୁ ସମସ୍ତେ ଉପଭୋଗ କଲେ । ଏ ଭିତରେ ଖାଦ୍ୟ ବଢ଼ା ହୋଇ ଖିଆ ଆରମ୍ଭ ହୋଇଥାଏ । ଖିଆ ପିଆ ସରିଲା । ସମସ୍ତଙ୍କ ପାଇଁ ପୁଡ଼ିଙ୍ଗ୍ ଓ କିଛି ଫଳ ଥୁଆ ହୋଇଗଲା । ଯିଏ ଯାହା ରୁଚି ଅନୁସାରେ ନେଲେ ।

ନନ୍ଦ ସନ୍ତୋଷ ପ୍ରକାଶ କରି ଉଠିଲା । ସମସ୍ତେ ତାକୁ ଛାଡ଼ିବା ପାଇଁ ଗେଟ୍ ଯାଏ ଆସିଲେ । ଉମା ଗେଟ୍ ପାଖରେ ପହଞ୍ଚିବା ଆଗରୁ କହି ପକାଇଲେ- 'ଗୋଟାଏ ବଡ଼ ଭୁଲ ହୋଇଗଲା ।'

ଯଦୁବାବୁ ଟିକିଏ ପଛକୁ ଚାଲି ଆସି, ଉମାଙ୍କୁ ଡ଼ାକି ଆସ୍ତେ ପଚାରିଲେ - 'କଣ କି ?'

ଉମା ଚୁପ୍ କରି କହିଲେ- 'ଡ୍ରାଇଭର ଖାଇନି ।'

ଯଦୁବାବୁ 'ହଉ' ବୋଲି କହି ଗାଡ଼ି ଯାଏ ଗଲେ । ଡ୍ରାଇଭର ଓହ୍ଲାଇ ଆସି ତାଙ୍କୁ ନମସ୍କାର କଲା । ସେ ତା କାନ୍ଧରେ ହାତ ରଖି କହିଲେ - 'ବାବୁ ତମେ ମୋ ସାଙ୍ଗରେ ଟିକିଏ ଆସ । ଉମା ବି ସେ ଦୁହିଁଙ୍କ ପଛେ ପଛେ ଗଲେ ।'

ନନ୍ଦ ଜାଣି ପାରିଲା ନାହିଁ, ସେ ଡ୍ରାଇଭରକୁ ଏତେ ସୁନ୍ଦର ଭାବରେ ଖାଇବା ପାଇଁ ଡ଼ାକି ନେଲେ । ଡ୍ରାଇଭର ବି କୃତ କୃତ୍ୟ । ଏଡ଼େ ବଡ଼ ସାହେବ, ଏତେ ଭଦ୍ର ଓ ଭଲ ମଣିଷ ବୋଲି ସେ ଅନୁମାନ କରି ପାରି ନଥିଲା ।

ନନ୍ଦ ସହିତ ଶ୍ରଦ୍ଧା ଓ ଶ୍ରୁତି ଗେଟ୍ ପାଖରେ ଛିଡ଼ା ହୋଇ କଥା ବାର୍ତ୍ତା ହେଉଥିଲେ । ଯଦୁବାବୁ ଫେରିଆସିବା ଯାଏ ଭଦ୍ରତା ଦୃଷ୍ଟିରୁ ଏପରି ଆଳାପ କରିବାର ଆବଶ୍ୟକତା ଥିଲା । ଯଦୁବାବୁ ଫେରି ଆସି, ଦୁଇ ଭଉଣୀକୁ ଘରକୁ ପଠାଇ ଦେଇ, ନନ୍ଦକୁ ଡ଼ାକି ନେଇ ବାହାରକୁ ଗଲେ । ଡ୍ରାଇଭର ଖାଇସାରିବା ପର୍ଯ୍ୟନ୍ତ କିଛି ସମୟ ଏକାନ୍ତରେ ଆଳାପ କରିବା ଥିଲା ତାଙ୍କର ଅଭିପ୍ରାୟ ।

ନିରୋଳା ରାସ୍ତା । ସମୟ ପ୍ରାୟ ରାତି ଏଗାରଟା ପାଖା ପାଖି । କିଛି ବାଟ ଚାଲିବା

ଭିତରେ ଯଦୁବାବୁ ପଚାରିଲେ - 'ତୁମର କେମିତି ପାତ୍ରୀ ପସନ୍ଦ ?'

ନନ୍ଦ କହିଲା ସାର୍, 'ମୁଁ ମାମୁଲି ଗ୍ରାଜୁଏଟ୍ । କୌଣସି ଅଧ୍ୟାପିକା ମତେ ନିଊନ ଭାବିବା ସ୍ୱାଭାବିକ । ପୁଣି ପରିବାରର ଆର୍ଥିକ ସ୍ୱଚ୍ଛଳତା ଦୃଷ୍ଟିରୁ ଆମେ ନିମ୍ନ ମଧ୍ୟ ବିତ୍ତରୁ ମଧ୍ୟ ଊଣା । ଘରେ ବାପା ବୋଉ । ସେମାନେ ଖୋଜିବେ ଗୁଣର ବୋହୂ । ସେ ତାଙ୍କର ସେବା କରୁ କି ନକରୁ, ତା ଠାରେ ଅନ୍ତତଃ ସେବା କରିବାର ମନୋବୃତ୍ତି ଆଶା କରିବେ । ତା ଛଡ଼ା ମୋର ବୟସ ଓ ଅନ୍ୟାନ୍ୟ ତ ଆପଣ ଜାଣନ୍ତି । ମୁଁ କଣ କହିବି ?'

ଯଦୁବାବୁ ଗୋଟାଏ ଦୃଷ୍ଟିରୁ ଆଶ୍ୱସ୍ତ ହେଲେ ଯେ, ନନ୍ଦ ତାଙ୍କ ପ୍ରଶ୍ନର ତାତ୍ପର୍ଯ୍ୟ ବୁଝି ପାରିଛି । ସେ କହିଲେ - 'ତମର ଯୋଗ୍ୟତା କୌଣସି ଅଧ୍ୟାପିକାଙ୍କ ଠାରୁ ଊଣା ନୁହେଁ । ବୟସର ବ୍ୟବଧାନ ମଧ୍ୟ ସେପରି ବେଶୀଗୁଡ଼ାଏ ନୁହେଁ । ହେଲେ ମଧ୍ୟ, ସେଥିରେ ବାଧା ନାହିଁ । ତୁମର ପଦ ଓ ସ୍ୱଭାବ ଦୃଷ୍ଟିରୁ ସେ ସବୁ କଥା ଗୌଣ । ବାପାମାଙ୍କ ସେବା ଓ ଘର କରଣା ବିଷୟରେ ମୁଁ ସାର୍ଟିଫିକେଟ୍ ଦେଉଛି । ସେ, ଯାହାଠାରୁ ତାଲିମ୍ ନେଇଛି, ତାର ଆଦର୍ଶ ବୋହୂ ଓ ଆଦର୍ଶ ଗୃହିଣୀ ଭାବରେ ସୁନାମ ଅଛି । ଏଣିକି ତୁମର ସ୍ୱଷ୍ଟ ସମ୍ମତି ପାଇଲେ ଶ୍ରଦ୍ଧାକୁ ପଦେ ପଚାରି ଦେଇ, ତୁମ ବାପାଙ୍କ ସହିତ ଯୋଗା ଯୋଗ କରିବାକୁ ବିଚାରୁଛି ।'

ନନ୍ଦ କିଛି ସମୟ ନୀରବ ରହିଲା । କଣ କହିବ ନ କହିବ ହଠାତ୍ ସ୍ଥିର କରିପାରିଲା ନାହିଁ । ଯଦୁବାବୁ ତାର ମାନସିକ ସ୍ଥିତି ବୁଝିଲେ । କହିଲେ - 'ତୁମେ ସବୁଦିଗରୁ ଭାବ, ଚିନ୍ତା କର । ଏ କ୍ଷେତ୍ରରେ ମଧ୍ୟ ଏମିତି ତରବର ହୋଇ ନିଷ୍ପତ୍ତି ନେଇଯିବା ଉଚିତ୍ ହେବ ନାହିଁ । ମତେ କାଲି କିମ୍ବା ସପ୍ତାହକ ଭିତରେ ଜଣାଇ ଦେଲେ ଚଳିବ ।'

ନନ୍ଦ କହିଲା- 'ଆପଣ ବାପାଙ୍କୁ ଚିଠି ଖଣ୍ଡେ ଦିଅନ୍ତୁ । ମୁଁ ବୋଉ ସାଙ୍ଗରେ କଥା ବାର୍ତ୍ତା ହେବି ।'

ନନ୍ଦ ଏବଂ ଶ୍ରଦ୍ଧାଙ୍କ ଜୀବନରେ ସେଇଟି ଥିଲା ସ୍ମରଣୀୟ ଦିନ ।

ଯଦୁବାବୁ ଶ୍ରଦ୍ଧାକୁ ବିବାହ ଦେବାର ସ୍ୱପ୍ନ ସହିତ ସ୍ମୃତିର ଦୂର ଦିଗବଳୟରେ ଦେଖୁଥିଲେ ନୂପୁରର ମୁହଁ । ସେ ମୁହଁରେ ଥିଲା ସନ୍ତୋଷ । ତାହା ହୁଏତ ଯଦୁବାବୁଙ୍କ ଅନ୍ତରର ପ୍ରତିଫଳନ ।

## ॥ ୨୭ ॥

ସିନ୍ଦୁରା ଫାଟିବାକୁ ତଥାପି କିଛି ସମୟ ଅଛି । ନନ୍ଦର ନିଦ ଭାଙ୍ଗିଲାଣି ଅନେକ ବେଳୁ । ଭାବିଲା ପାହାନ୍ତି ବୁଲା ମନକୁ ଆନନ୍ଦ ଦେବ । ସୁଲୁ ସୁଲୁ ପବନ ବହୁଥାଏ । ପାଗଟି ରତୁ ଲାଖି ନୁହେଁ ସିନା, ତାକୁ ଭାରି ଭଲ ଲାଗୁଥାଏ ।

ନନ୍ଦ ପ୍ରାତଃ କର୍ମ ସାରିଲା । ପାଇଜାମା ପଞ୍ଜାବୀ ବଦଳାଇଲା । ଏକା ଏକା ବାହାରି ପଡ଼ିଲା ।

ଭୁବନେଶ୍ୱର ଧୀରେ ଧୀରେ ବଦଳୁଛି । ସେ ଆଜି ଯେଉଁ ସର୍କିଟ୍ ହାଉସ୍‌ରେ ବସିଛି, ହୁଏତ ଆଉ କେତେ ବର୍ଷ ପରେ ସେଠି ଅନ୍ୟ କିଛି ହୋଇଥିବ । ସେ ଦେଖିଥିବା ଭୁବନେଶ୍ୱର ଷ୍ଟେସନର ଚେହେରା ବଦଳି ବଦଳି ଆସୁଛି । ସବୁ ପୁରୁଣା ସ୍ଥାନର ରୂପାନ୍ତର ଘଟୁଛି । ହାଟ ବଜାର, ଅନେକ ପୁରୁଣା ଅଫିସର ସ୍ଥାନାନ୍ତର ହେଉଛି ଧୀରେ ଧୀରେ ।

ନନ୍ଦ, ଏକଦା ଯେଉଁ ଅଫିସରୁ ନିରାଶ ହୋଇ ବାହୁଡ଼ିଥିଲା, ସେଇଟି ଭଙ୍ଗା ହେବ କି କଣ । ପରିତ୍ୟକ୍ତ ଅବସ୍ଥାରେ ପଡ଼ିଛି । ମନେ ପଡ଼ିଗଲା, କେତୋଟି ବର୍ଷ ତଳେ ଛାଡ଼ି ଆସିଥିବା ଅତୀତ । ସେ ଯଦି ସେଦିନ ସେଠି ଚାକିରୀ ପାଇ ଥାଅନ୍ତା ଏବଂ ଅଦ୍ୟାବଧି କ୍ଲର୍କ ବା କ୍ୟାସିୟର ଭାବରେ ଥାଆନ୍ତା, ତେବେ ଯଦୁବାବୁ କଣ ତାକୁ ଜୁଆଁଇ କରିବାକୁ ମନ ବଳାଇ ଥାଆନ୍ତେ ? ତା ପେଟ ଭିତରୁ ଓଠଯାଏ ଉତୁରି ଆସିଲା ବକଟେ ହସ ।

ଅନେକ ମୁହଁ ଝଲସି ଉଠିଲା, ଅନେକ ସ୍ୱର ଶୁଭି ଗଲା । ସେ ଦିନର ସେଇ ଦୁର୍ଦ୍ଦିନର ଅନ୍ଧାର ଭିତରେ ତା ଅନ୍ତର ଭିତରୁ ଯେଉଁ ଆଲୋକ ତାକୁ ବାଟ କଢ଼ାଇ ଗାନ୍ଧୀ ପାର୍କରୁ ଷ୍ଟେସନ ପ୍ଲାଟ ଫର୍ମଯାଏ ଆଣିଥିଲା ଏବଂ କେତୋଟି ସଂପର୍କ ଯୋଡ଼ିଦେଇଥିଲା, ତାହା ହିଁ ମଣିଷକୁ ଭଲପାଇବାର, ଅସହାୟ, ଅସମର୍ଥର ସାହା ହେବାର ସ୍ୱଭାବ ତା ଭିତରେ ସଞ୍ଚାରିତ କରିଛି ।

ନୂଆ ବିଧାନ ସୌଧ ତୋଳା ହେଉଛି । ସରି ଆସିଲାଣି ତାର କାମ । ସେ ଦିନର ଗାନ୍ଧୀ ପାର୍କଟି ବିଧାନ ସୌଧର ଅନ୍ତର୍ଗତ ହୋଇ ଯିବ । ସାମ୍ନାର ପଡ଼ିଆଟି ଆଉ ଏକ ନିର୍ମାଣ କଳ୍ପନାକୁ କୋଳ ପତାଇବ । ନନ୍ଦ ଅଟକି ଗଲା । ସୂର୍ଯ୍ୟ କିରଣ ପଡ଼ିଲାଣି । ରାସ୍ତାରେ

ଜନ ସମାଗମ ତଥାପି ପତଳା ଅଛି । ସେ ଆଗେଇଲା ନୂଆ ତୋଳା ହେଉଥିବା ବିଧାନ ସୌଧ ଆଡ଼କୁ ।

ଡ଼କ୍ଟର ଅଟୋ ଏଚ. କୋଏନ୍‌ବର୍ଗଙ୍କ ରିପୋର୍ଟ ମନେ ପଡ଼ିଲା । ସେ ଏଠାରେ ଗୋଟାଏ ଗାନ୍ଧୀ ସ୍ମାରକ ସ୍ତମ୍ଭ ନିର୍ମାଣର ସ୍ୱପ୍ନ ଦେଖିଥିଲେ । ତାଙ୍କର ସ୍ୱପ୍ନ ଥିଲା - ତାହାହିଁ ହେବ ନୂତନ ନଗରୀର ଆଧ୍ୟାତ୍ମିକ-କେନ୍ଦ୍ର ବିନ୍ଦୁ । ଏଇ ସ୍ୱପ୍ନ ଦେଖିବା ବେଳେ ତାଙ୍କର ଚିତ୍ତକୁ ଆକର୍ଷଣ କରିଥିଲା ଧଉଳି ପାହାଡ଼ ଓ ସେଠାରେ ଉତ୍‌କୀର୍ଣ୍ଣ ହୋଇଥିବା ଅଶୋକଙ୍କ ଅନୁଶାସନ । ସେ ସେହି ଅନୁଶାସନ ସହିତ କଳ୍ପନାକୁ ପ୍ରସାରିତ କରି ଦେଖି ନେଇଥିଲେ ତାର ସମ୍ମୁଖରେ ଏକ ଅଶୋକ ସ୍ତମ୍ଭ । ସେ ଲେଖିଥିଲେ ଅଶୋକ ତାଙ୍କ ଶାସନର ଶକ୍ତି ବା ଦମ୍ଭର ପ୍ରତୀକ ଭାବରେ ଏହି ସ୍ତମ୍ଭମାନ ତୋଳାଇ ନଥିଲେ । ଏହା ତାଙ୍କର ଆଦର୍ଶ ଓ ନୀତି ଶିକ୍ଷା କଥା ମନେ ପକାଇ ଦେବାଲାଗି ଭାରତର ବିଭିନ୍ନ ଅଞ୍ଚଳରେ ଛିଡ଼ା ହୋଇଥିଲା । ସେହିପରି ଗାନ୍ଧୀ ସ୍ମାରକ ସ୍ତମ୍ଭ ଆକାଶକୁ ତର୍ଜନୀ ଦେଖାଇ ଛିଡ଼ା ହେବ । ବିବେକ ଓ ଗାନ୍ଧୀ ପ୍ରବର୍ତ୍ତିତ ଆଦର୍ଶ କଥା ଚେତାଇ ଦେବା ହେବ ଏହି ସ୍ମାରକ-ସ୍ତମ୍ଭର ଅଭିପ୍ରାୟ । ଏହା ହେବ - ଶହେ ଫୁଟରୁ ଅଧିକ ଉଚ୍ଚ । ପୁଣି ଅତି ଦୃଢ଼ ଭାବରେ ନିର୍ମିତ ହେବ । ଏହା ଉପରେ ଅତି ଉଜ୍ଜ୍ୱଳ ଆଲୋକର ବ୍ୟବସ୍ଥା ରହିବ । ରାତିରେ ଜଳୁଥିବ । ଏହା ପ୍ରାଚୀନ ମନ୍ଦିରମାନଙ୍କ ଆଗରେ ଥିବା କାରୁକାର୍ଯ୍ୟ-ଖଚିତ ସ୍ତମ୍ଭ ପରି ସୁନ୍ଦର ଓ ଦୀପ ସ୍ତମ୍ଭ ଆକାରରେ ନିର୍ମିତ ହେବ । ହୁଏତ ଶ୍ରୀଜଗନ୍ନାଥ ମନ୍ଦିର ସମ୍ମୁଖରେ ଥିବା ଅରୁଣ ସ୍ତମ୍ଭ ତାଙ୍କୁ ଏପରି କଳ୍ପନା ଲାଗି ପ୍ରେରଣା ଦେଇଥିଲା ।

ସେ ଅଶୋକ ସ୍ତମ୍ଭର ନକଲ ବା ଅନୁକରଣରେ ସେହିଭଳି ସ୍ତମ୍ଭଟିଏ ଛିଡ଼ା କରାଇବା କଥା ଭାବୁ ନଥିଲେ । ସେ ଚାହୁଁଥିଲେ ଓଡ଼ିଶାର ପ୍ରତିଭାବାନ୍ ଶିଳ୍ପୀମାନଙ୍କ ସାଙ୍ଗକୁ ଭାରତର ବିଭିନ୍ନ ଅଞ୍ଚଳର ଶ୍ରେଷ୍ଠତମ କାରିଗରମାନଙ୍କୁ ଅଣାଇବେ । ଓଡ଼ିଶାରେ ମିଳୁଥିବା ଉତ୍କୃଷ୍ଟତମ ଶିଳାରେ ଏହା ନିର୍ମାଣ କରାଯିବ । ଗାନ୍ଧିଜୀଙ୍କ ଜୀବନର କେତୋଟି ଘଟଣା, ତାଙ୍କର କେତେକ ଉପଦେଶ ଏଥିରେ କଳାର କମନୀୟତା ଘେନି ଉତ୍‌କୀର୍ଣ୍ଣ ହେବ । ଏହାକୁ ଚାରୁତର କରାଇବା ଲାଗି ଶିଳ୍ପୀମାନଙ୍କୁ ସ୍ୱାଧୀନତା ଦିଆଯିବ । ଅଥଚ କଳିଙ୍ଗର କଳାକୁଶଳତାର ସ୍ୱକୀୟତା ଏଥିରେ ସ୍ପଷ୍ଟ ପ୍ରତିଫଳିତ ହେଉଥିବ । ସେ ଚିନ୍ତାକରୁଥିଲେ ଭୁବନେଶ୍ୱରର ନାଗରୀକମାନଙ୍କ ପାଇଁ ଏହି ସ୍ତମ୍ଭ ଜାଗ୍ରତ ପ୍ରହରି ପରି ଛିଡ଼ା ହେବ ।

ଡ଼କ୍ଟର ଅଟୋ ଏଚ୍. କୋଏନ୍‌ବର୍ଗ (Dr. Otto H. Koenigsberger) ଙ୍କ

ରିପୋଟ୍‌ରେ ଥିଲା - "Like the Asok Pillars, it is intended to be a symbol...... not of the taking over of adminstrative powers by a paticular party but as a memento, a warning finger pointing to the sky, a conscience in stone erected to remind citizens of Bhubaneswar of the teaching of Gandhiji under which their town was founded. ସେ ୧୯୪୮ ମସିହା ଡ଼ିସେମ୍ବର ମାସରେ ଏହି ରିପୋଟ ଦାଖଲ କରିଥିଲେ । କିନ୍ତୁ ତାଙ୍କର ଚିନ୍ତା, ତାଙ୍କର ପ୍ରସ୍ତାବ କ୍ରମେ, କେଜାଣି, ହୁଏତ ପ୍ରାସଙ୍ଗିକତା ହରାଇଛି !

ବିଧାନ-ସୌଧର ନିର୍ମାଣ କାର୍ଯ୍ୟ ଦ୍ରୁତ ଭାବରେ ଆଗେଇଛି । ସୂର୍ଯ୍ୟ କିରଣ ତାରି ଉପରେ ପଡ଼ିଛି । ନନ୍ଦ ଛିଡ଼ା ହେଲା କିଛି ସମୟ । ଭାବିଲା, ନିର୍ବାଚନ ରାଜନୀତି ଭିତରେ ଗାନ୍ଧୀବାଦ ନିଷ୍ପ୍ରଭ ହୋଇ ଆସିଲାଣି । ଦିନେ ହୁଏତ ଲିଭିଯିବ । ତାଙ୍କ ଆଦର୍ଶକୁ ଯଦି ରଖି ନହେବ, ତେବେ ସ୍ତମ୍ଭ ଓ ଫଟୋ ଭିତରେ ତାଙ୍କୁ ରଖି ଦେବାର ଅର୍ଥ ବା କଣ ? ନନ୍ଦର ଅନ୍ତର ଅଭିମାନରେ ଆଦ୍ର ହୋଇ ଆସିଲା । ତାହା ଅଶ୍ରୁ ରୂପରେ ବାହାରି ଆସିଲା ନାହିଁ । ସିନା, ଚିତ୍ତକୁ ଆନ୍ଦୋଳିତ କରି ପକାଇଲା । ଯଦି ମାନବ ସଭ୍ୟତାରେ ଗଣତନ୍ତ୍ର, ସ୍ୱାଧୀନତା, ଅହିଂସା, ମାନବାଧିକାର ସୁରକ୍ଷାର ଗୁରୁତ୍ୱ ରହିବ, ଗାନ୍ଧିଜୀଙ୍କୁ ପାସୋରି ହେବ କେମିତି ? ହଁ ତଥାଗତ ବୁଦ୍ଧ ଏ ପ୍ରସଙ୍ଗରେ ଅନ୍ୟ ଏକ ଦୃଷ୍ଟାନ୍ତ ! ଜୀବନରେ ସତ୍ୟର ପ୍ରୟୋଗ କରିଥିବା ବାପୁଜୀ 'ସତ୍ୟ'କୁ ହିଁ ତାଙ୍କର ଧର୍ମ ମାନି ନେଇଥିଲେ । ଭାରତ ସରକାର 'ସତ୍ୟମେବ ଜୟତେ' ନୀତିଟିକୁ ଶାସନର ପ୍ରତୀକ ଚିହ୍ନ ତଳେ ଥାପିଛନ୍ତି । ଯେଉଁ ଶାସନ ସତ୍ୟ ଉପରେ ପ୍ରତିଷ୍ଠିତ, ତାହାହିଁ ସୁଶାସନ । ପୁରୁଣା ବିଧାନ ସଭା ଓ ସଚିବାଳୟ ମଝିରେ ଅଛି ଗୋଟିଏ ଖୋଲା ପଡ଼ିଆ । ସ୍ୱାଧୀନତା ଦିବସରେ ଏଠି ଏପର୍ଯ୍ୟନ୍ତ ପ୍ୟାରେଡ଼୍ ଓ ଜାତୀୟ ପତକାକୁ ଅଭିବାଦନ କରାଯାଉଛି । ଏଇ ସ୍ଥାନଟି ହୁଏତ କିଛି ଦିନପରେ ଅନ୍ୟଭାବରେ ବ୍ୟବହୃତ ହେବ । କିନ୍ତୁ ଏଇଠି ସେଦିନର ଅନୁଭୂତିଟି ତା ମନରେ ତଥାପି ଉଜ୍ଜ୍ୱଳ ଭାବରେ ରହିଛି ।

ସେତେବେଳକୁ ବିଧାନ ସଭା କଟକରୁ ଉଠି ଆସିଥାଏ । ପୁରୁଣା ବିଶେଷଣଟି ନେବାକୁ ଯାଉଥିବା ବର୍ତ୍ତମାନର ବିଧାନ ସଭା ଭବନରେ ଅଧିବେଶନମାନ ବସୁଥାଏ । ସେଇ ସମୟର କଥା, ଜଣେ ସଭ୍ୟଙ୍କୁ କିଞ୍ଚିତ୍ ଦୂରରୁ ଚିହ୍ନାଇ ଦେଇ, ତାଙ୍କରି ବିଷୟରେ କଥାବାର୍ତ୍ତା ହେଉଥାନ୍ତି କେତେ ଜଣ ବ୍ୟକ୍ତି । ସେ କୁଆଡ଼େ ବିଧାନ ସଭା ନିର୍ବାଚନ ପାଇଁ ଠିକ୍

ସାତ ହଜାର ଟଙ୍କା ଖର୍ଚ୍ଚ କରିଛନ୍ତି । ନିର୍ବାଚନ ଖର୍ଚ୍ଚର ରିଟର୍ଣ୍ଣ ବା ବିବରଣ ଦାଖଲ କଲାବେଳେ ଠିକ୍ ହିସାବ ଦେଇଛନ୍ତି । କିନ୍ତୁ ଏଥିରେ ସେ ବୋଧହୁଏ ଜଣେ ବ୍ୟତିକ୍ରମ । କାରଣ ଏତିକି ମାତ୍ର ଖର୍ଚ୍ଚ କରି ଜଣେ କଦାପି ନିର୍ବାଚନ ଜିତିପାରିବ ନାହିଁ । ଅଥଚ ନିର୍ବାଚନ ଆଇନ୍‌ରେ ଏତିକି ମାତ୍ର ହିଁ ଖର୍ଚ୍ଚର ସୀମା ବୋଲି କୁହା ଯାଇଛି ।

ସେ ପୁଣି ପଚାରୁ ଥାଆନ୍ତି - 'ତେବେ କଣ କେମିତି କରା ଯାଉଛି ?'

ନିଜ ପ୍ରଶ୍ନର ଉତ୍ତର ନିଜେ ଦେଉ ଥାଆନ୍ତି- 'ଖର୍ଚ୍ଚ କରୁଛନ୍ତି ସାତ ହଜାରର ଚାରି ପାଞ୍ଚଗୁଣ । କିନ୍ତୁ କାଗଜ ପତ୍ରରେ ଖର୍ଚ୍ଚ ଦେଖାଉଛନ୍ତି ସାତ ହାଜର ବା ତା ଠାରୁ ସମାନ୍ୟ ଊଣା । ପୁଣି ସତ୍ୟ ପାଠ ବା ଶପଥ କରି କହୁଛନ୍ତି, ଯେଉଁ ହିସାବ ଦେଲେ, ତାହା ସତ୍ୟ !'

ସେମାନଙ୍କ ଭିତରୁ କେତେ ଜଣ ହସି ଉଠିଲେ । ଜଣେ କାବା ହୋଇ ଚାହିଁ ଥାଆନ୍ତି । ପଚାରୁ ଥାଆନ୍ତି - 'ତା ହେଲେ ତ ଆମ ବିଧାୟକ ମନ୍ତ୍ରୀ, ବାଚସ୍ପତି ସମସ୍ତେ ମିଛ ହିସାବ ଦେଇ, ତାହା ସତ୍ୟ ବୋଲି ଶପଥ ପାଠ କରିଥିବେ ?'

ଆଲୋଚନାଟି ଆରମ୍ଭ କରିଥିବା ଭଦ୍ରଲୋକ କହୁ ଥାଆନ୍ତି- 'ଖାଲି ବିଧାୟକ କାହିଁକି, ପାର୍ଲ୍ଲାମେଣ୍ଟ ନିର୍ବାଚନରେ ବି ସେଇଆ ହେଉଛି । ସେଠି ଏମ.ପି. ମାନଙ୍କ ଠାରୁ ପ୍ରଧାନ ମନ୍ତ୍ରୀଙ୍କ ଯାଏ ସମସ୍ତେ ସେହିପରି କରୁଥିବେ । ଉପାୟ କଣ ?'

ଦୁଇଜଣ ଏକାବେଳକେ କହି ପକାଇଲେ- 'ଉପାୟ ତ ବଡ଼ ସହଜ । ନିୟମକୁ ବଦଳାଇ ଦେଇ, ଯେତିକି ଖର୍ଚ୍ଚ ଯଥାର୍ଥ ବୋଲି ଅନୁଭବ କରାଯିବ, ସେତିକି ଖର୍ଚ୍ଚକୁ ସୀମା ରୂପେ ଧରି ନିଆଯିବ ।'

କଥାଟା ପ୍ରଥମେ ଉଠାଇବା ଭଦ୍ରଲୋକ କହୁଥାଆନ୍ତି- "ଏ ପ୍ରଶ୍ନ ଉଠିଥିଲା । ପୁରୁଷୋତ୍ତମ ଦାସ ଟଣ୍ଡନ ନେହେରୁଙ୍କୁ କହିଲେ- 'ଏହି ଖର୍ଚ୍ଚ ସୀମା ଦେବା ଦ୍ୱାରା ମିଥ୍ୟା ଲେଖିବାକୁ ସମସ୍ତଙ୍କୁ ବାଧ କଲା ଭଳି ହେବ । ହୁଏତ ଜଣେ ପ୍ରଧାନ ମନ୍ତ୍ରୀ ତାଙ୍କ ନିର୍ବାଚନରେ ଧାର୍ଯ୍ୟ ଖର୍ଚ୍ଚଠାରୁ ଅଧିକ ଖର୍ଚ୍ଚ କରିବେ, କିନ୍ତୁ ହିସାବ ଦେଲା ବେଳକୁ ନିୟମରେ ଥିବା ସୀମା ଅନୁସାରେ ଖର୍ଚ୍ଚ କରିଛନ୍ତି, ସେଥିରୁ ଅଧିକ ଖର୍ଚ୍ଚ କରି ନାହାନ୍ତି ବୋଲି ଶପଥ କରି ଲେଖିଦେବେ । ସରକାରୀ କର୍ମଚାରୀମାନେ ଏହା ଜାଣିବେ । ସେମାନେ ଜାଣନ୍ତୁ ବା ନ ଜାଣନ୍ତୁ, ଏପରି ସ୍ଥଳେ ସେମାନେ ମିଛ ଲେଖିବା ବେଳେ ବା ମିଥ୍ୟାର ଆଶ୍ରୟ ନେବା ବେଳେ ତାକୁ ରୋକିବା ପାଇଁ ଆପଣଙ୍କର ନୈତିକ ଦମ୍ଭ ଥିବ ତ ?' କିନ୍ତୁ ଟଣ୍ଡନ୍‌ଙ୍କ କଥା ଉପରେ ଗୁରୁତ୍ୱ ଦିଆଗଲା

ନାହିଁ । ଏହା ସବୁ ଆମର ଶୁଣିବା କଥା ।"

ନନ୍ଦର ମନେ ପଡ଼ିଯାଉଥାଏ ସେମାନଙ୍କର ଆଲୋଚନା । ଏଇ ବାଟେ ସେମାନେ ସେଦିନ କଥାବାର୍ତ୍ତା ହୋଇ ହୋଇ ଯାଉଥିଲେ । ସେ ଭଦ୍ର ଲୋକ ସେଦିନ ଯାହାଙ୍କୁ ଦେଖାଇ ଦେଇ କଥାବାର୍ତ୍ତା ହେଉଥିଲେ, ନନ୍ଦ ତାଙ୍କୁ ଜାଣେ । ସେ ଦେଶର ଜଣେ ବରିଷ୍ଠ ଶିକ୍ଷାବିତ୍ । କିନ୍ତୁ ରାଜ ନୀତି ତାଙ୍କୁ ଆରେଇଲା ନାହିଁ, ସେ ସେକ୍ଷେତ୍ରରୁ ଓହରି ଗଲେ । ନନ୍ଦ ଭାବିଲା ଯଦି ଦକ୍ଷ ଓ ସାଧୁ ଲୋକେ ରାଜନୀତିରୁ ଆଡ଼େଇ ହୋଇ ରହିବେ, ଏଥିରେ ନୀତି ଓ ଦକ୍ଷତା ରଖିବ କିଏ ? କାହା ପାଇଁ ଏ ଦେଶ... କିଏ ଯାକୁ ଚଳାଇବ ?'

ଗାନ୍ଧିଜୀ ୟଙ୍ଗ୍ ଇଣ୍ଡିଆ କାଗଜରେ ଜଣକ ପ୍ରଶ୍ନର ଉତ୍ତର ଦେଇ ଲେଖିଥିଲେ - Politics I hold to be a noble art which every good citizen must cultivate, ପୁଣି ଏଇ ପ୍ରସଙ୍ଗରେ, ସେ ସ୍ପଷ୍ଟ କହି ଦେଇଥିଲେ - I have not in mind the game that professional politicians play. ସେ ୧୯୪୬ ରେ ଏହା ଲେଖିଥିଲେ ।

ଉତ୍ତମ ନାଗରିକମାନେ ରାଜନୀତିକୁ ଗୋଟିଏ 'ପବିତ୍ର କର୍ମ'ମନେ କରି, ତାକୁ 'କଳା' ଭାବରେ ଆଚରଣ କରିବେ, ଏହା ଥିଲା ଆମ ବାପୁଜୀଙ୍କର ଇଛା । ରାଜନୀତିକୁ ପେଷା ଭାବରେ ଗ୍ରହଣ କରି ଚତୁର କୌଶଳ ଖେଳୁଥିବା ଲୋକଙ୍କ ଆଚରଣ ନିଆରା, ଆଦର୍ଶ ଅଲଗା । ତେବେ 'ଉତ୍ତମ ନାଗରୀକ' ଓ 'ପେଷାଦାର ରାଜନୀତିଜ୍ଞ' ବା ରାଜନୀତି ଜୀବୀମାନଙ୍କ ଭିତରେ କଣ କିଛି ପାର୍ଥକ୍ୟ ଅଛି ? ତେବେ କଣ ସେଥି ପାଇଁ ନିର୍ବାଚନରେ ଜିତି, ବିଧାନ ସଭାରେ ପାଞ୍ଚବର୍ଷ ରହିବା ପରେ ମଧ ସେହି ବିଜ୍ଞ ସାଧୁ ପୁରୁଷ ରାଜନୀତିରୁ ବାଟ ଭାଙ୍ଗି ଆଡ଼େଇ ହୋଇ ରହିଗଲେ ? ନନ୍ଦ ଦାସର ମନ କିଛି ବୁଝୁଥାଏ, ପୁଣି କିଛି କିଛି ବୁଝି ଅବୁଝା ହେଉଥାଏ ।

ବିଧାନ ସଭା, ରାଜ୍ୟସଭା, ଲୋକ ସଭା ପ୍ରଭୃତିର ବାହାରେ ଥାଇ ମଧ ରାଜନୀତି କରିହେବ । କୌଣସି ପଦ ପଦବୀ ପାଇଁ ଆକାଡ୍କ୍ଷା ନରଖି ମଧ ରାଜନୀତି କରିହେବ । ସମାର୍ଥ୍ୟ ଓ ଯୋଗ୍ୟତା ଅନୁସାରେ ନିଜର ଅର୍ଜନ ଉପରେ ନିର୍ଭର କରି ସ୍ୱଚ୍ଛନ୍ଦରେ ଚଳି ପାରିଲେ ଯଥେଷ୍ଟ । କାହାର ଦାନ, ଅନୁଗ୍ରହ, ଅନୁକମ୍ପାର ବାହୁଛାୟା ତଳେ ଥାଇ ରାଜନୀତି

କରିବା ବୃଥା । ଭାଗ୍ୟର ବିଡ଼ମ୍ବନା । ଜନମତକୁ ଶିକ୍ଷିତ ଓ ସଚେତନ ରଖିବାର ଉଦ୍ୟମ ମଧ୍ୟ ଏଦିଗରେ ଗୋଟାଏ ବଡ଼ ପଦକ୍ଷେପ । ଜନମତର ଜାଗ୍ରତ ପ୍ରହରୀ ଓ ପ୍ରତିନିଧି ହେବା ପାଇଁ ସମାର୍ଥ୍ୟ, ଯୋଗ୍ୟତା, ଦକ୍ଷତା ଅର୍ଜନ କରିପାରିବା ଲୋକ ଉତ୍ତମ ନାଗରିକ ଭାବରେ ରାଜନୀତି କରିବା କଥା ଚିନ୍ତା କରି ପାରେ । ଏଥିପାଇଁ ବିଧାୟକ ବା ସାଂସଦ ହେବା ଜରୁରୀ ନୁହେଁ । ନନ୍ଦ ଏମିତି ନାନା ଚିନ୍ତାରେ ଆପଣା ମନକୁ ଖେଳାଉଥିଲା । ପୁଣି ତା ମନରେ ପ୍ରଶ୍ନ ଉଠୁଥାଏ - ଏ ଦିଗରେ ସର୍ବ ନିମ୍ନ ଦାୟିତ୍ୱଟି କଣ ?

ମନ ଭିତରେ ବେଳେ ବେଳେ ଏମିତି ଅନେକ ଚିନ୍ତା ଲହଡ଼ି ପରି ଉଠି ଆସେ ଓ ପୁଣି ସେଇ ମନ ଭିତରେ ମିଳାଇ ଯାଏ । ବୁଢ଼ାବଳଙ୍ଗ ମୁହାଣଠାରେ ଚାନ୍ଦିପୁରରେ ସାଗର ସଞ୍ଚାଳର ଲୀଳା ତାର ମନକୁ କିଛି ସମୟ ପାଇଁ ଆଛନ୍ନ କରିଦେଲା । ଏମିତି ପ୍ରସଙ୍ଗ ନଥାଇ ଅନେକ ସ୍ମୃତି ବି ଅନାହୂତ ଭାବରେ ମନ ଭିତରକୁ ପଶିଆସେ, କିଛି କ୍ଷଣ ରହି ଚାଲିଯାଏ ।

ନନ୍ଦ ଭାବୁଥିଲା- 'ନିର୍ଭୀକ, ଦାୟିତ୍ୱ ସମ୍ପନ୍ନ, ବିବେକବାନ୍ ନାଗରିକଟିଏ ହେଲେ ମଧ୍ୟ ଯଥେଷ୍ଟ । ଦେଶର ଯେ କୌଣସି ସମସ୍ୟା ଉପରେ ବିଚାର ବିଶ୍ଳେଷଣ କରିପାରୁଥିଲେ, ସେ ବିଷୟରେ ନିର୍ଭିକ ଚିନ୍ତାଶୀଳ ମତ ଦେବା ଆଜିର ଆବଶ୍ୟକତା । ଏପରି ନାଗରୀକ ବହାରିଲେ ତାଙ୍କରି ବଳରେ ଭଲ ଭଲ ନେତା ଉତୁରିବେ । ଶାସକ ଦାୟିତ୍ୱରେ ଯେଉଁମାନେ ରହୁଛନ୍ତି, ସେମାନେ ସଜାଡ଼ି ହୋଇଯିବେ । ନନ୍ଦ ତା ଜୀବନରେ ଅନେକ କଟୁତିକ୍ତ ଅନୁଭୂତି ଅଙ୍ଗେ ନିଭାଇଛି । ସେଗୁଡ଼ିକ ମନେ ପଡ଼ିଗଲା ।'

ସାଧୁ ସଚ୍ଚୋଟ କର୍ମଚାରଟିଏ ନିଷ୍ଠାପର ଭାବରେ ତାର ଦାୟିତ୍ୱ ତୁଲାଇବା ବେଳେ କେତେ ବାଧା ପ୍ରତିରୋଧର ସମ୍ମୁଖୀନ ହୁଏ, ସେଇ ଅଭିଜ୍ଞତା ଓ ଅନୁଭୂତିରେ ନନ୍ଦର ମନ ବାରମ୍ବାର ଜର୍ଜରିତ ହୋଇଛି । ଦୂର ଦୂରାନ୍ତକୁ ଘନ ଘନ ବଦଳି, ବହୁ ଗୁରୁତ୍ୱ ପୂର୍ଣ୍ଣ ଲୋକଙ୍କର ପ୍ରତିକୂଳ ମନୋଭାବ ଓ ମନ୍ତବ୍ୟର ସାମନା କରିବାକୁ ପଡ଼ିଛି । ସେ କେତେ ବେଳେ ବେତ ପରି ନଇଁ ଯାଇଛି ତ କେତେ ବେଳେ ନାଗ ପରି ଫଣା ଟେକିଛି । କେଉଁଠି ଖୁବ୍ ସମ୍ମାନ ଓ ଆଦର ମିଳିଛି ତ କେଉଁଠି ନିନ୍ଦା ଭର୍ତ୍ସନା ଶୁଣିଛି । ତିକ୍ତତା ସୃଷ୍ଟି ହୋଇଛି । କର୍ମ କ୍ଷେତ୍ରକୁ ସେ ଧର୍ମକ୍ଷେତ୍ର ଭାବରେ ଗ୍ରହଣ କରିନେଇ ସବୁ ପରିସ୍ଥିତିରେ ଅବିଚଳିତ ରହି କର୍ତ୍ତବ୍ୟ ତୁଲାଇ ଆସିଛି । ତା ନିଜର ବିବେକହିଁ ତାକୁ ସାନ୍ତ୍ୱନା ଦେଇଛି । ଧୈର୍ଯ୍ୟ ଦେଇଛି ଶକ୍ତି ଦେଇଛି ।

ସେଦିନ ଜଣେ ହିତାକାଙ୍କ୍ଷୀ କହିଲେ- 'ତୁମେ ନିଜେ ସାଧୁତା ରକ୍ଷା କରିଚାଲ । କିନ୍ତୁ ଅନ୍ୟମାନଙ୍କୁ ସାଧୁକରିବାକୁ ଚେଷ୍ଟା କର ନାହିଁ । ସମସ୍ତଙ୍କଠାରୁ ସାଧୁତା ଆଶା କର ନାହିଁ । ମନୁଷ୍ୟର ସ୍ୱଭାବ ଓ ପ୍ରକୃତିକୁ ବଦଳାଇବା ଭାରି କଷ୍ଟ । ତମେ ନିଜର ନିଷ୍ଠା ଓ ସାଧୁତାକୁ ରକ୍ଷା କରି କରି ଚାଲୁଥିଲେ ଯେତିକି ବିରୋଧ ଆସିବ, ତାକୁ ହୁଏତ ସମ୍ଭାଳି ନେଇ ପାରିବ, କିନ୍ତୁ ସମଗ୍ର ବ୍ୟବସ୍ଥାକୁ ସୁଧାରି, ସାଧୁତାର ପରିମଣ୍ଡଳ ସୃଷ୍ଟି କରିବାକୁ ବାହାରିଲେ ବହୁ ସମସ୍ୟାକୁ ନିମନ୍ତ୍ରଣ କରିବସିବ । ସବୁ ଦିଗରୁ ଯୁଦ୍ଧକୁ ଆହ୍ୱାନ କର ନାହିଁ । ଅଭିମନ୍ୟୁ ପାଲଟି ଯିବ ।'

ନନ୍ଦ ଭାବେ, ଅଭିମନ୍ୟୁର ସାଧନା ଓ ଶକ୍ତି ତାର କାହିଁ ? କାହିଁ ଅବା ତାର ସେହି ମହାନ୍ ପୃଷ୍ଠଭୂମି ! ପୁଣି କିଏ ଯେପରି ଅନ୍ତର ଭିତରୁ ଚେତାଇ ଦିଏ- 'ଲଢୁ ଲଢୁ ଶକ୍ତି ବଢ଼ି ବଢ଼ି ଯିବ । ତୋର ପୃଷ୍ଠଭୂମି ତୋର ଆତ୍ମା । ଆତ୍ମ ଶକ୍ତି ଜାଗ୍ରତ ହେଲେ ବାହ୍ୟ ଶକ୍ତି ତୋତେ ପରାଭୂତ କରିବା ସହଜ ହେବ ନାହିଁ ।'

ନନ୍ଦ ଅନ୍ୟମନସ୍କ ଭାବରେ ହାତକୁ ଅନାଇଲା, ଘଣ୍ଟା ଛଅ ଛାଡ଼ି ଆସିଛି । ସୂର୍ଯ୍ୟର କୋମଳତା ନାହିଁ । ତାର ଦୀପ୍ତି ବଢୁଛି ଧୀରେ ଧୀରେ । ମନେ ପଡ଼ିଗଲା ସେହି ଆର୍ଷ ବାଣୀ- 'ସୂର୍ଯ୍ୟ ଆଲୋକ ଦେଖ ସେ ସୃଷ୍ଟିର ଆଦିମ କାଳରୁ ଚାଲୁ ଚାଲୁ ଦିନେ ହେଲେ ବି ଅଟକି ଯାଇ ନାହାନ୍ତି । ଗତିରୁ ହିଁ ଅମୃତ ମିଳେ । ଚାଲିବାରେ ସ୍ୱାଦୁଯୁକ୍ତ ଫଳ ଲାଭହୁଏ । ତେଣୁ ଚାଲ, ଆଗେଇ ଆଗେଇ ଚାଲ ।'

'ସୂର୍ଯ୍ୟସ୍ୟ ପଶ୍ୟ ଶ୍ରେମାଣଂ ଯୋନ ତନ୍ଦ୍ରୟତେ ଚରନ୍

ଚରୈବତି ଚରୈବତି

ଏହା ବି ହୁଏତ ସତ୍ୟ- 'ଚରନ୍ ବୈ ମଧୁ ବିନ୍ଦତି, ଚରନ୍ ସ୍ୱାଦୁ- ମୁଦୁମ୍ବରମ୍ ।' ତେଣୁ ପରାମର୍ଶ ହେଲା - 'ଚରୈବତି ଚରୈବତି ।'

ନନ୍ଦ ବାହୁଡ଼ିଲା । ପ୍ରଭାତ ଭ୍ରମଣର ଦ୍ୱିତୀୟ ପର୍ବ- ପ୍ରତ୍ୟାବର୍ତ୍ତନ । ଏପଟୁ କିଛି ସମୟ ବଞ୍ଚାଇ ଉପର ଓଳି କଟକ ଯିବାକୁ ହେବ ।

ନନ୍ଦ ତାର ମନେ ମନେ ଫେରନ୍ତି ବାଟରେ ଦିନକର ଯୋଜନା କରି କରି ଯାଉଥାଏ ।

## ॥ ୨୮ ॥

ସେତେବେଳକୁ ଶିତୁଳି ପଡ଼ିଗଲାଣି । ନନ୍ଦ ପ୍ରଭୁପାଦ ବାବୁଙ୍କ ଗେଟ୍ ପାଖରେ ଅଟକିଲା । ଜଣେ ବାବାଜୀ ଗୋପୀଯନ୍ତ୍ର ବଜାଇ ଗୀତ ବୋଲୁ ଥାଆନ୍ତି -

ଆରେ ବାଇବର
ବାଟ ବସା ଖଣ୍ଡି ଦମ୍ଭ କର ।
ସବୁ ବୋଲୁଥାଉ ମୋର ମୋର
ପିନ୍ଧିଲା ବସନ ନୋହେ ତୋର
ଘରର ଘରଣୀ ଯାହାକୁ କରିଛୁ
ସେ ତ ହୋଇ ଯିବ ସାତ ପର
ଆରେ ବାଇବର ।

ଜୀବନର ମୂଳ ଆଧ୍ୟାତ୍ମିକତା ନୁହେ, ପାର୍ଥିବତା । ମନୁଷ୍ୟ ପୃଥିବୀରେ ଜନ୍ମ ହୋଇ ଏଇଠି ଦିହକ ବିତାଏ । ପାର୍ଥିବ ଜୀବନକୁ ଉପଯୋଗ କରେ, ଉପଭୋଗ କରେ ପାର୍ଥିବ ଯଶ ଓ ସମ୍ପଦ । ତାକୁ କର୍ମପ୍ରବଣ କରେ ପାର୍ଥିବ ସମ୍ପର୍କ ଓ ଦାୟିତ୍ୱବୋଧ । ତଥାପି ପାର୍ଥିବତା ପ୍ରତି ବୈରାଗ ବ୍ୟଞ୍ଜକ, ସଂଗୀତ ଓ ସଂସାର ବିରାଗୀ ସାଧୁସନ୍ଥଙ୍କ ପ୍ରତି ଭକ୍ତିଭାବ ଓ ଆଦର ଭାରତୀୟ ସମାଜର ଗୁଣ ଓ ସ୍ୱଭାବ ଏହା ସ୍ପଷ୍ଟ ଲକ୍ଷ୍ୟ କରଯାଏ । ପୁଣି ଦେଖାଯାଏ ଭାରତୀୟ ସାହିତ୍ୟ, ସଂସ୍କୃତି, ଦୃଷ୍ଟିକୋଣ ଉପରେ ବସିଛି ଆଧ୍ୟାତ୍ମିକତାର ମୋହର ।

ଲୋକଟିଏ ଘର ଭିତରୁ ପିତଳ ଥାଳିରେ କିଛି ଚାଉଳ ଓ ପରିବା ଧରି ଆସିଲା । ବାବାଜୀଙ୍କୁ ଦେଲା । ସେ ତାଙ୍କ କାନ୍ଧରେ ପକାଇଥିବା ଝୁଲାରେ ସେତକ ରଖି,ଦାତାଙ୍କର ମଙ୍ଗଳ କମାନା କଲେ । ଗୀତ ଗାଇ ଗାଇ ଚାଲିଗଲେ ।

ନନ୍ଦ ପଚାରିଲା- 'ସାର୍ ଅଛନ୍ତି ?'

ସେ ଲୋକଟି ଫାଟକ ପାଖରୁ ନନ୍ଦକୁ ପାଛୋଟି ନେଲା ବୈଠକ ଘରକୁ । ସେଠାରେ ବସିବାକୁ ଅନୁରୋଧ କରି, ପଚାରିଲା- 'ଚା ଆଣିବି ନା ସରବତ ?'

ନନ୍ଦ ଅନୁମାନ କରିନେଲା, ପ୍ରଭୁପାଦ ବାବୁ ଅଛନ୍ତି । ସେ କହିଲା- 'କେବଳ ପାଣି ଗିଲାସେ ଦିଅ ।' ଲୋକଟି ଭିତରକୁ ଯିବା ଆଗରୁ ପୁଣି ପଚାରିଲା- 'ବାବୁଙ୍କୁ କଣ କହିବି ?'

ନନ୍ଦ କହିଲା- 'ମୁଁ ତାଙ୍କ ସ୍କୁଲର ଜଣେ ପୂର୍ବତନ ଶିକ୍ଷକ, ଦେଖା କରିବାକୁ ଆସିଛି ବୋଲି କହିବ ।'

ଲୋକଟି ନମସ୍କାର କଲା । ପଚାରିଲା- 'ଏବେ ଇସ୍କୁଲରେ ନାହାନ୍ତି ?' ନନ୍ଦ ଅଳ୍ପ ହସି, ମୁଣ୍ଡ ହଲାଇ ନାହିଁ କଲା ।

ଅତି ଅଳ୍ପ ସମୟ ଭିତରେ ଗୋଟିଏ ଟ୍ରେ'ରେ ଜଳଖିଆ ଓ ପାଣି ଆସିଗଲା । କିନ୍ତୁ ପ୍ରଭୁପାଦ ବାବୁ ତଥାପି ଆସି ନଥାନ୍ତି । ଆସିଥିବା ଲୋକଟି ସେଣ୍ଟର ଟେବୁଲ୍‌ରେ ଖାଦ୍ୟ ପରଷି ଦେଇ, ଖାଇବା ପାଇଁ ନନ୍ଦକୁ ନିବେଦନ କଲା । ସେ ନନ୍ଦକୁ ବୈଠକ ଖାନାରେ ବାସାଇଦେଇ ଯାଇଥିବା ଲୋକ ନୁହେ, ଆଉ ଜଣେ ଲୋକ । ବୋଧହୁଏ ପ୍ରଭୁପାଦଙ୍କ ପାଚକ । ତାର ବ୍ୟବହାର ବଡ଼ ମଧୁର । ନନ୍ଦ ଖାଇବା ଆରମ୍ଭ କଲା ପର୍ଯ୍ୟନ୍ତ ସେ ଅପେକ୍ଷା କଲା । ତା ପରେ 'ବାବୁ ଆସୁଛନ୍ତି, ମୁଁ କଫି ନେଇ ଆସେ' ବୋଲି କହି ଭିତରକୁ ଗଲା ।

କିଛି ସମୟ ପରେ ପ୍ରଭୁପାଦ ବାବୁ ପହଞ୍ଚିଗଲେ । ନନ୍ଦକୁ ଦେଖିଦେଇ ଭାରି ଖୁସି ହୋଇଗଲେ । କହିଲେ- 'ଆଜି ଆପଣଙ୍କ ସ୍କୁଲରୁ ଫେରିଲି । ଆପଣଙ୍କ କଥା ମନେ ପଡୁଥିଲା । କିନ୍ତୁ ଆପଣଙ୍କ ସହିତ ଏମିତି ପ୍ରୀତି ପ୍ରଦ ସାକ୍ଷାତ ଆକସ୍ମିକ ଭାବରେ ମିଳିଯିବ ବୋଲି କଳ୍ପନା ସୁଦ୍ଧା କରି ନଥିଲି ।' ପ୍ରଭୁପାଦଙ୍କ କଥା ଓ ଚଳଣିରେ ପ୍ରାଚ୍ୟ-ପାଶ୍ଚାତ୍ୟ ଢ଼ଙ୍ଗର ଏକ ମଧୁର ସମନ୍ୱୟ ଫୁଟି ଉଠେ । ତାଙ୍କ କଥା ଶୁଣି , ନନ୍ଦର ଅନ୍ତରରେ କୃତ କୃତ୍ୟ ଭାବ ସଂଚାର ହେଲା ।

ନନ୍ଦ କହିଲା- 'ଆପଣ ମନେ ପକାଇଛନ୍ତି, ଏହା ମୋର ପରମ ସୌଭାଗ୍ୟ । ଆପଣଙ୍କ ଭଳି ମହାନ୍ ଲୋକ... ' ସେ ଆଉ କିଛି କହି ପାରିଲା ନାହିଁ । ପ୍ରଭୁପାଦ ବାବୁ ତା ହାତକୁ ବିନୟ ଭଙ୍ଗିରେ ଧରି ନେଇ କହିଲେ- 'ନନ୍ଦବାବୁ ଆପଣ ଜଣେ ବିଚାରବନ୍ତ ଲୋକ । ଅନୁଗ୍ରହ କରି ଶବ୍ଦର ଅପପ୍ରୟୋଗ କରନ୍ତୁ ନାହିଁ । ଯେଉଁମାନେ ପ୍ରକୃତରେ ମହାନ୍, ଏହାଦ୍ୱାରା ସେମାନଙ୍କ ପ୍ରତି ଅସମ୍ମାନ ହେବ ।' ନନ୍ଦ ନୀରବ ରହି, ତାଙ୍କର ବିନୟ ଓ ମହାନୁଭବତା ଅନୁଭବ କରୁଥାଏ । ପ୍ରଭୁପାଦ ଶୋଫାରେ ଆଉଜି ପଡ଼ି କିଛି ସମୟ ବସି ରହିଲେ । ତା ପରେ ଦୀର୍ଘ ନିଶ୍ୱାସ ଛାଡ଼ି ଆରମ୍ଭ କଲେ- 'ନନ୍ଦବାବୁ ଆପଣ ମୋର ଗୋଟିଏ ସଂକଟ ସମୟରେ ଆସି ପହଞ୍ଚି ଯାଇଛନ୍ତି । ମୁଁ ଏବେ ଗୋଟାଏ କିଂ କର୍ତ୍ତବ୍ୟ ବିମୂଢ଼ ଅବସ୍ଥାରେ ପଡ଼ିଛି ।'

ନନ୍ଦ ଏପର୍ଯ୍ୟନ୍ତ ପ୍ରଭୁପାଦ ବାବୁଙ୍କୁ ସ୍ଥିତଧୀ ବୋଲି ଭାବିଥିଲା । ସେ କେବେ ହେଲେ ତାଙ୍କୁ ବିଚଳିତ ହେବାର ଦେଖି ନାହିଁ । କିନ୍ତୁ ତାଙ୍କ ଚେହେରା ଓ କଥାରୁ ମନେ ହେଉଥିଲା, ସେ କୌଣସି କାରଣରୁ ସାମାନ୍ୟ ବିଚଳିତ ଅଛନ୍ତି । ସେ ତାଙ୍କୁ କିଛି ନ ପଚାରି କେବଳ ପଚାରିବା ଦୃଷ୍ଟିରେ ଚାହିଁ ରହିଲା ।

ପ୍ରଭୁପାଦବାବୁ କହିଲେ- 'ମୁଁ ଏବେ ନିଜକାମର ଯଥାର୍ଥତାକୁ ସନ୍ଦେହ କରୁଛି । ସ୍କୁଲଟିଏ କରି ଭୁଲ୍ କରିଛି କି ଠିକ୍ କରିଛି ଜାଣି ପାରୁନାହିଁ । ଅନେକ ସମୟରେ ଭାବୁଛି ଏଥିରେ ମୋର ଯେତିକି ଶକ୍ତି ସାମର୍ଥ୍ୟ ଖଟାଇଛି, ସେଥିରେ ଅନାଥାଶ୍ରମଟିଏ କରିଥିଲେ ବରଂ ଭଲ ହୋଇ ଥାଆନ୍ତା । ପୁଣି ଏତିକି ଅର୍ଥ ଓ ଶ୍ରମ ଉପଯୋଗରେ ଶାରୀରିକ ବିକଳାଙ୍ଗ ଓ ଅକ୍ଷମମାନଙ୍କ ପାଇଁ ମଧ୍ୟ କିଛି ଗୋଟାଏ କରି ହୋଇ ଥାଆନ୍ତା ।'

ନନ୍ଦ ଅନେକ ସମୟରେ ଭାବେ, ସେଇ ସ୍କୁଲ 'ପଲ୍ଲୀଶ୍ରୀ ଶିକ୍ଷା ନିକେତନ, ତା ଜୀବନର ଗୋଟିଏ ଅଂଶ ।' ପ୍ରଭୁପାଦବାବୁଙ୍କ କଥା ତା ମନକୁ ଦୋହଲାଇ ଦେଲା । ସେ କହିଲା- 'ଆପଣ ଯେଉଁ ସ୍କୁଲଟିକୁ ଠିଆ କରାଇଛନ୍ତି, ତାର ତୁଳନା ନାହିଁ । ଅନ୍ୟ ଯେଉଁ ଦୁଇଟି ଅନୁଷ୍ଠାନ କଥା କହିଲେ, ତାହା ସ୍କୁଲର ଶାଖା ଅନୁଷ୍ଠାନ ଭାବରେ ପ୍ରତିଷ୍ଠା କରାଯାଇ ପାରେ । ସ୍କୁଲର ସମର୍ଥ ଓ ଇଚ୍ଛୁକ ପିଲାଏ ସମାଜରେ ଅସମର୍ଥ, ଅନାଥମାନଙ୍କ ପାଇଁ ଶାରୀରିକ ଶ୍ରମ କରି ଅର୍ଥ ଅର୍ଜନ କରି ଦାନ କରିବେ । ଭବିଷ୍ୟତରେ ସେମାନଙ୍କ କଲ୍ୟାଣ ପାଇଁ ଆର୍ଥିକ ସାହାଯ୍ୟ ଓ ସହଯୋଗ ପାଇଁ ଅଙ୍ଗିକାରବଦ୍ଧ ହେବେ । ସେମାନଙ୍କ ମନକୁ ଏଭଳି ଗଢ଼ି ଦିଆଯିବ ଯେ, ଯାହା  ଫଳରେ କେତେଜଣ ପିଲା ସ୍ୱତଃ ପ୍ରବୃତ୍ତ ହୋଇ ଜଣ ଜଣକ ସହିତ ଆତ୍ମୀୟ ସଂପର୍କ ସ୍ଥାପନ କରିବେ । ମୂଳରୁ ସେମାନଙ୍କୁ ନିଜ ନିଜ ବଳରେ ଛିଡ଼ା କରାଇ ଦେବାର ଦାୟିତ୍ୱ ନେଇଯିବେ ।'

ପ୍ରଭୁପାଦ ନନ୍ଦ କଥାକୁ ଶୁଣୁ ଥାଆନ୍ତି କି ନାହିଁ ଜଣା ପଡୁ ନଥାଏ । ସେ ଯେପରି କି ବହୁ ଦୂରକୁ ନିର୍ଲିପ୍ତ ଅଥଚ ନିବଦ୍ଧ ଦୃଷ୍ଟିରେ ଅନାଇ ରହି ଥାଆନ୍ତି ।

ନନ୍ଦ ଟିକିଏ ଶଙ୍କି ଗଲା । ତାଙ୍କୁ ବାଧିଲା ପରି କିଛି କଥା ବାହାରି ପଡ଼ିଲା କି? ପୁଣି ତରବର ହୋଇ କହି ପକାଇଲା - 'ଅନୁଗ୍ରହ କରି କ୍ଷମା କରିବେ, ଯଦି କିଛି ଭୁଲ କଥା କହି ଦେଇଥାଏ ।'

ପ୍ରଭୁପାଦ ବାବୁ ନନ୍ଦ କଥାକୁ ବୋଧହୁଏ ପୂରା ଶୁଣି ପାରି ନଥିଲେ ।

ତାଙ୍କର ମନ ଥିଲା ଅତ୍ୟନ୍ତ ନିମଜ୍ଜମାନ । କହିଲେ-'ମୁଁ ଅବଶ୍ୟ ସେ ସଭାରେ ନଥିଲି, ତେବେ ଶୁଣିଛି

ସେ ପଦେ କଥା କହି, ପୁଣି ଅନ୍ୟ ମନସ୍କ ଓ ନୀରବ ରହିବାର ଲକ୍ଷ୍ୟ କରି ନନ୍ଦ ଭାବୁଥାଏ- 'କୋଉ ସଭା, କଣ ଶୁଣିଛନ୍ତି ?' କିନ୍ତୁ କିଛି ନପଚାରି ତୁନି ହୋଇ ବସିଥାଏ ।

ସେ କହିଲେ- '୧୯୩୪ ଜୁନ୍ ମାସର କଥା, ଗାନ୍ଧିଜୀ ଓଡ଼ିଶା ଆସି ଥାଆନ୍ତି । ପଦଯାତ୍ରା ସମୟର କଥା । ସେତେବେଳକୁ ଆଇନ୍ ଅମାନ୍ୟ ଅନ୍ଦୋଳନ ବନ୍ଦ ଥାଏ । ଜଣେ ତାଙ୍କୁ ଏହାର ଯଥାର୍ଥତା ବିଷୟ ପଚାରିବା ସଙ୍ଗେ ସଙ୍ଗେ କହିଲେ- ଏହା ଏହି ଅନ୍ଦୋଳନର ବିଫଳତା ବୋଲି ମନରେ ପ୍ରଶ୍ନ ଉଠୁଛି । ଗାନ୍ଧିଜୀ ଏହାର କଣ ଜବାବ୍ ଦେଇଥିଲେ ଜାଣନ୍ତି ?'

ନନ୍ଦ ମନେ ମନେ ଭାବୁଥାଏ, 'ଆଛା କଥା, ଇଏ ଶୁଣିଲେ । ମୁଁ କେମିତି ଜାଣିବି ?' ନୀରବରେ ଅପେକ୍ଷା କରିଥାଏ, ପ୍ରଶ୍ନକର୍ତ୍ତାଙ୍କ ଠାରୁ ଉତ୍ତରଟି ଶୁଣିବା ଲାଗି ।

ପ୍ରଭୁପାଦ ସତକୁ ସତ ନିଜେ ହିଁ ଉତ୍ତର ଦେଲେ- 'ଗାନ୍ଧିଜୀ କହିଥିଲେ, ସତ୍ୟାଗ୍ରହର ଅଭିଧାନରେ ବିଫଳତା ବୋଲି କୌଣସି ଶବ୍ଦ ନାହିଁ । ପ୍ରତ୍ୟେକ ପଦକ୍ଷେପରେ ସେ ଯେଉଁ ଅଭିଜ୍ଞତା ହାସଲ କରେ, ତଦନୁଯାୟୀ, ନିଜକୁ ପ୍ରସ୍ତୁତ କରିଥାଏ । ସତ୍ୟାଗ୍ରହୀର ଅଗ୍ରଗତି ଠିକ୍‌ଜଣେ ପର୍ବତାରୋହୀର ଅଗ୍ରଗତି ଭଳି । ପର୍ବତାରୋହୀ ଯାତ୍ରା କଲାବେଳେ- ଯେପରି କେତେକ ପାଦ ଆରୋହଣ କରିବା ପୂର୍ବରୁ ତାହାକୁ ବହୁଥର ପଛକୁ ହଟି ଆସିବାକୁ ପଡ଼ିଥାଏ, ସତ୍ୟାଗ୍ରହୀକୁ ମଧ୍ୟ ସେହିପରି କରିବାକୁ ପଡ଼ିଥାଏ ।'

ନନ୍ଦ ଏହାର ପୂର୍ବାପର ସଂଗତି ବୁଝି ପାରିଲା ନାହିଁ । କେବଳ ନୀରବରେ ପ୍ରଭୁପାଦବାବୁଙ୍କ ଆଡ଼କୁ ଚାହିଁ ରହିଥାଏ ପୂରାଘଟଣାଟା ଶୁଣିବା ପାଇଁ । ସେ ପୁଣି କିଛି କ୍ଷଣ ନୀରବ ରହି ଗୋଟିଏ ଦୀର୍ଘ ନିଃଶ୍ୱାସ ପକାଇଲେ । ତାଙ୍କର ମୁହଁରୁ ବାହାରି ଆସିଲା- 'ସ୍କୁଲରେ ଶିକ୍ଷକମାନେ ଦୁଇଟି ଦଳରେ ବିଭକ୍ତ ।'

ନନ୍ଦର ଛାତି ଭିତରଟା ଦାଉଁ କରି ହୋଇଗଲା । ପୁଣି ମନଶ୍ଚକ୍ଷୁରେ ଉଦ୍‌ଭାସିତ ହେଲା ଷ୍ଟାଫକମନ୍ ରୁମ୍‌ରେ ସ୍ଥାପିତ ସରସ୍ୱତୀଙ୍କର ସେଇ ସୁନ୍ଦର ବିରାଟ ଛବି ଏବଂ ସ୍ମୃତି ପଟରେ ଝଲସିଉଠିଲା ସେଇ ଛବି ତଳେ ଥିବା ଶ୍ଳୋକ -

ଜ୍ଞାନଂ ଦେହି ସ୍ମୃତିଂ ଦେହି ବିଦ୍ୟାଂ ବିଦ୍ୟାଧିଦେବତେ ।
ପ୍ରତିଷ୍ଠାଂ କବିତାଂ ଦେହି ଶକ୍ତିଂ ଶିଷ୍ୟପ୍ରବୋଧିକାମ୍ ।।
ସ୍ମୃତିଶକ୍ତିଃ ଜ୍ଞାନ ଶକ୍ତିଃ ବୁଦ୍ଧି ଶକ୍ତି ସ୍ୱରୂପିଣୀ ।
ପ୍ରତିଭା କଳ୍ପନା ଶକ୍ତିଃ ଯା ଚ ତସ୍ୟୈ ନମୋ ନମଃ ।।

ସ୍ନେହ ପ୍ରବଣ, କର୍ମ ଚଞ୍ଚଳ ସହକର୍ମୀମାନଙ୍କର ମୁହଁଟିମାନ ଦିଶିଗଲା । କିଏ ଗ୍ଲୋବ୍‌ଟିଏ, ମ୍ୟାପ୍‌ଟିଏ ଧରି କ୍ଲାସ୍‌କୁ ଯାଉଛନ୍ତି ତ କିଏ ଲାଇବ୍ରେରୀରେ ଡ଼ିକ୍‌ସିନାରୀ ଧରି କେଉଁ କେଉଁ ଶବ୍ଦର ଅର୍ଥମାନ ଦେଖୁଛନ୍ତି । କିଏ ବ୍ଲାକ୍ ବୋର୍ଡ଼କୁ ଡ଼ଷ୍ଟରରେ ପୋଛି ପୋଛି ଚକ୍‌ଟିଏ ଧରି ମନରେ ଆଙ୍କି ଯାଉଛନ୍ତି କଣ ଲେଖିବେ ବୋଲି ତ କିଏ ଷ୍ଟାଫ୍ କମନ୍‌ରୁମ୍ ଭିତରେ ବସି ପିଲାଙ୍କ ଖାତା ସଂଶୋଧନ କରୁଛନ୍ତି । ପୁଣି କିଏ ପିଲାଙ୍କୁ ଧରି ଖେଳ ପଡ଼ିଆରେ ଖେଳାଉଛନ୍ତି ତ କିଏ ବଗିଚା କାମ ଶିଖାଉ ଶିଖାଉ ମଜା ମଜା ଗପ ସହିତ ଚାଷବାସ ବିଷୟରେ ଶିକ୍ଷଣୀୟ କଥା କହୁଛନ୍ତି । ନନ୍ଦ, ତାର ମନ ଭିତରେ ଏମାନଙ୍କୁ ଭାଗ ଭାଗ କରି ଦୁଇଟି ଦଳରେ ଛିଡ଼ା କରାଇ ବିବାଦର ରେଖା ଟାଣିବା କଥା କଳ୍ପନା କରି ପରିଲା ନାହିଁ ।

ନନ୍ଦ ମନେ ମନେ ଖୋଜୁଥାଏ ସେହି ଦୃଢ଼ ଦକ୍ଷ ଅଥଚ ସ୍ନେହପ୍ରବଣ ଗୋକୁଳି ବାବୁଙ୍କୁ । ଭାବୁଥାଏ - 'ସେ ଅଛନ୍ତି ତ ?' ତାର ଭାବନା କେତେବେଳେ ବାକ୍ୟଟିଏ ହୋଇ ପାଟିରୁ ବାହାରି ଆସିଲା । ତା କଥା ପଦକ ପ୍ରଭୁପାଦବାବୁଙ୍କ କାନରେ ବି ପଡ଼ିଲା । କିନ୍ତୁ ତଥାପି ତାଙ୍କ ମୁହଁରେ ସେଇ ହତାଶା ସେମିତି ଥାଏ । ସତେ ଯେମିତି ଖଣ୍ଡେ ବଉଦ ତାଙ୍କର ସ୍ୱଭାବ ସୁଲଭ ସରସତାକୁ ଘୋଡ଼ାଇ ରଖିବାକୁ ଅଟକି ଯାଇଛି । ଜମା ଘୁଞ୍ଚୁ ନାହିଁ । ପୁଣି ସେହି ବଉଦର ବହପ ସଞ୍ଚରି ଯାଇଛି ତାଙ୍କ ମନକୁ ଓ ସେଇଠୁ ଚହଲି ଚହଲି ଆସି ଛୁଇଁ ଦେଉଛି ତାଙ୍କର ସଦା ପ୍ରଫୁଲ୍ଲ ସ୍ୱରକୁ । ସେ ତଥାପି ହସଟିଏ ଚହଟାଇ ଦେଲେ ଅଧର ଓ ମୁହଁରେ । କହିଲେ - 'ଅଛନ୍ତି ।' ମାତ୍ର ଏଇ ଗୋଟିଏ ଶବ୍ଦ କହି ଅଟକି ଗଲେ ।

ନନ୍ଦ ଭାବିଲା ଗୋକୁଳିବାବୁଙ୍କ ଭଳି ସ୍ନେହଶୀଳ ଅଥଚ ଦକ୍ଷ, ବିଚକ୍ଷଣ ପ୍ରଧାନ ଶିକ୍ଷକ କଣ ସତରେ ଅବସ୍ଥାଟାକୁ ଆୟତ୍ତ କରି ପାରୁ ନାହାନ୍ତି ? ମନଟା ତାର ଗୋଳେଇ ଘାଣ୍ଟି ହେଲା । ଗାଁର ଅନେକ ଅଭିଭାବକ, ବହୁ ପୁରାତନ ଛାତ୍ରଛାତ୍ରୀଙ୍କ ମୁହଁ ଦିଶିଯାଉଥାଏ । ସ୍କୁଲ ଘର, ବଗିଚା, ପୋଖରୀ, କର୍ମଚାରୀମାନଙ୍କ କଥା ମନକୁ ଘାରୁଥାଏ । ସତେ ଅବା ମନ ତାର କହୁଥାଏ- 'ତୁ ଯାଉନୁ, ଦେଖିଆସିବୁ ଘଟଣାଟା କଣ ! ଚେଷ୍ଟାକରିବୁ ସମସ୍ୟାଟିକୁ

ବୁଝି ସମାଧାନ କରିଦେବା ଲାଗି ।'

ପ୍ରଭୁପାଦବାବୁ ସେହି ନୀରବ ମୁହୂର୍ତ୍ତରେ ନନ୍ଦର ମୁହଁକୁ ଦେଖି ତାର ମନ ବିଢ଼ି ନେଲେ । ସେ ଭାବୁ ଥାଆନ୍ତି, ନନ୍ଦ ଯଦି କୌଣସି ଗୋଟିଏ ପୋଜିସନ୍‌ରେ କଟକ ଆସିଯାଆନ୍ତା, ବଡ଼ ଭଲ ହୁଅନ୍ତା । ପୁଣି ଭାବୁଥାନ୍ତି, ସେ ହୁଏତ ଦିନେ କଲେକ୍ଟର ହେବ । ଆସିପାରେ, କଟକର ଜିଲ୍ଲାପାଳ ଭାବରେ । ତା ଯଦି ହୁଏ ପଲ୍ଲୀଶ୍ରୀ ଶିକ୍ଷା ନିକେତନର ଭାଗ୍ୟ ବଦଳି ଯିବ । ସେ ତାଙ୍କ ସ୍ୱପ୍ନକୁ ସାକାର କରିବାରେ ଭାଗନେବ । ଅବଶ୍ୟ, ଏବେ ବି ଯେଉଁମାନେ ତଳରୁ ଉପରଯାଏ ବିଭିନ୍ନ ପଦାଧିକାରୀ ଅଛନ୍ତି, ସମସ୍ତେ ତାଙ୍କୁ ଶ୍ରଦ୍ଧା ଓ ସମ୍ମାନ କରନ୍ତି । ତାଙ୍କ କଥାର ଖାତିର୍ ଅଛି । କିନ୍ତୁ ନନ୍ଦ କଥା ନିଆରା ।

ନନ୍ଦ କହିଲା- 'ଗୋକୁଳି ବାବୁତ ବଡ଼ ଦକ୍ଷ ଓ ସାଧୁ ସ୍ୱଭାବର ଲୋକ ।'

ପ୍ରଭୁପାଦ ବାବୁ କହିଲେ- 'ସେଥିରେ ତିଳାର୍ଦ୍ଧ ସଂଦେହ ନାହିଁ । କିନ୍ତୁ ଅନେକ ଲୋକ ଭାବୁଛନ୍ତି ସେ ଯୁଗୋପଯୋଗୀ ନୁହନ୍ତି । ମୁଁ ଅବଶ୍ୟ, ଏପର୍ଯ୍ୟନ୍ତ ଗୋକୁଳିବାବୁଙ୍କ କଥା ହିଁ ଗ୍ରହଣ କରି ଆସିଛି ।'

ନନ୍ଦ ଭାବୁଥାଏ, ଗୋକୁଳିବାବୁ ତ କେବେ ବି ଅସଙ୍ଗତ ପ୍ରସ୍ତାବ ଦେଇ ନଥିବେ । ପୁଣି ତାଙ୍କ ପକ୍ଷରେ କୌଣସି ବିଧିବର୍ଜିତ ପଦକ୍ଷେପ ନେବା ମଧ ସମ୍ଭବ ନୁହେଁ । ତେବେ କାରଣଟା କଣ ହୋଇଥାଇ ପାରେ ?

'ହୋଇଗଲାଣି ବେଶ୍ କିଛି ଦିନ' - ପ୍ରଭୁପାଦ ବାବୁ ଘଟଣାଟି ବର୍ଣ୍ଣନା କଲେ- 'ଜଣେ ଶିକ୍ଷକ ସ୍କୁଲର ଗୋଟିଏ ଝିଅକୁ ଭଲ ପାଇଲେ କି କଣ । ଆଉ ଜଣେ ଶିକ୍ଷକ ଝିଅର ବାପାଙ୍କ ପାଖରେ ସେହି ଶିକ୍ଷକଙ୍କ ତରଫରୁ ପ୍ରସ୍ତାବ ନେଇ ପହଞ୍ଚିଲେ । ଝିଅର ବାପା ହଁ ନାହିଁ କିଛି କହିଲେ ନାହିଁ । ସେ ଆସି ପ୍ରଧାନ ଶିକ୍ଷକଙ୍କ ପରାମର୍ଶ ମାଗିଲେ । ବେଶ୍ । ମୁଁ ଏତିକି ଶୁଣିଛି । ତା ପରେ କାହା ମନରେ କଣ ଖେଳିଲା । କଣ ସବୁ ସେଠି ଗୁଞ୍ଜରଣ ବା ଗୁଜବ ଚାଲିଲା ଜାଣି ନାହିଁ । ହୁଏତ ସେଠାରେ କିଛି ହୋଇ ନଥାଇ ପାରେ । କିନ୍ତୁ ଗୋକୁଳି ବାବୁ ଚୁପ୍ ଚାପ୍ ମୋ ପାଖରେ ଆସି ପହଞ୍ଚିଲେ ।' ଏତିକି ମାତ୍ର କହି ପ୍ରଭୁପାଦ ବାବୁ ଗମ୍ଭୀର ହୋଇଗଲେ । ହାତ ପାହାନ୍ତାରେ ଥିବା ବେଲ୍‌ର ବୋତାମ ଟିପିଲେ । ବରାଦ୍ କଲେ - 'କଫି ।'

ତାଙ୍କ ଆଦେଶକୁ କାନେଇବା ପରି କିଏ କେଉଁଠି ଥିଲା । ସଙ୍ଗେ ସଙ୍ଗେ କାଚ୍ଚୁ ଦୁଇ ପ୍ଲେଟ୍ ଆଣି ରଖିଦେଲା । ସେଥିରୁ ନେଇ ଖାଉଖାଉ କଫି ଆସିଗଲା । କଫି ପିଇସାରି ପ୍ରଭୁପାଦ ବାବୁ ସୋଫାରୁ ଉଠିଗଲେ ଗୋଟିଏ ଇଜି ଚେୟାର୍ ଉପରକୁ । ପ୍ରଶସ୍ତ ବୈଠକ କକ୍ଷ । ସ୍ଥାନେ ସ୍ଥାନେ ପଡ଼ିଛି ସୋଫା, ରକିଙ୍ଗ୍ ଚେୟାର୍, ଇଜି ଚେୟାର, ଆର୍ମଚେୟାର, ଡ଼ିଭାନ୍ । କାନ୍ଥରେ ଟଙ୍ଗା ହୋଇଛି ମହାତ୍ମାଗାନ୍ଧୀଙ୍କର ଗୋଟିଏ ବିରାଟ ଚିତ୍ର । ସେ ଲମ୍ବା ବାଡ଼ିଟିଏ ଧରି ପଦକ୍ଷେପ ନେଉଛନ୍ତି । ଅଣ୍ଟାରେ ଘଣ୍ଟାଟି ଝୁଲୁଛି । ଶିଳ୍ପୀଗୁରୁ ନନ୍ଦଲାଲ୍‌ଙ୍କର କଳ୍ପନା । ତଳେ ହୁଏତ ଲେଖା ହୋଇ ଥାଆନ୍ତା - 'ଏକ୍‌ଲା ଚଲୋ ରେ...'

ପ୍ରଭୁପାଦ ବାବୁ ବର୍ଣ୍ଣନା କଲେ- ''ସେ ଦିନ ଏଇଠି ଗୋକୁଳି ବାବୁ ବସିଥିଲେ । ବଡ଼ ବିବ୍ରତ ଦିଶୁ ଥାଆନ୍ତି । କହିଲେ, 'ଆମ ଭଳି ଶିକ୍ଷକମାନଙ୍କ ଆଗରେ ଅନେକ ଆଦର୍ଶ ଅଛି । ଦୃଷ୍ଟାନ୍ତ ଅଛି । ଅର୍ଜୁନ ବି ଜଣେ ଗୁରୁ । ନୃତ୍ୟ ବିଦ୍ୟା ଶିକ୍ଷା ଦେଇଥିଲେ ରାଜକନ୍ୟା ଉତ୍ତରାଙ୍କୁ । ରାଜା ବିରାଟ ଜାଣି ନଥିଲେ ଉତ୍ତରାଙ୍କ ନୃତ୍ୟଗୁରୁ ବୃହନ୍ନଳା ହିଁ ଅର୍ଜୁନ । ଜାଣିଲେ । ପ୍ରସ୍ତାବ ଦେଲେ- ଅର୍ଜୁନ ଉତ୍ତରାଙ୍କ ପାଣି ଗ୍ରହଣ କରନ୍ତୁ । କିନ୍ତୁ ଅର୍ଜୁନ କହିଲେ- ଉତ୍ତରାମୋର ଶିଷ୍ୟା, କନ୍ୟା ପରି । ତାକୁ ମୋର ବଧୂ ଭାବରେ ହିଁ ଗ୍ରହଣ କରିବି ।'' ଏତିକି କହି ପ୍ରଭୁପାଦ ବାବୁ ନୀରବ ରହିଲେ ।

ନନ୍ଦ ଘଟଣାଗୁଡ଼ିକ ଗଅଣ୍ଠେଇ ନେଲା ମନେ ମନେ । ସବୁ କଥା ଅନୁମାନ କରି ନେଲା । ବୁଝିଲା । ତଥାପି ତା ମନକୁ ଉଙ୍କୁଥିଲା ଗୋଟିଏ ପ୍ରଶ୍ନ- 'ତାପରେ ?'

ପ୍ରଭୁପାଦ ବାବୁ କହିଲେ- 'ମୁଁ ମାନି ନେଲି ପ୍ରଧାନ ଶିକ୍ଷକଙ୍କ ପରାମର୍ଶ । କାହାକୁ କିଛି କହିଲି ନାହିଁ । ମୋର ଜଣେ ବନ୍ଧୁଙ୍କର ଗୋଟିଏ- କାରଖାନାରେ ସେଇ ଶିକ୍ଷକଙ୍କୁ ନିଯୁକ୍ତ କରାଇ ଦେଲି । ସେ ଆମ ସ୍କୁଲରେ ଯେତିକି ଦରମା ପାଉଥିଲେ, ତାଠାରୁ ଏଠାରେ ଦରମା ଅଧିକ । ପୁଣି କଟକରେ ରହିବେ । ତେଣୁ ଖୁସିରେ ଏଠି ରହିଲେ । ସ୍କୁଲରେ ତାଙ୍କୁ ନେଇ ଉପୁଜିଥିବା ସମସ୍ୟା ଏକ ପ୍ରକାର ସମାଧାନ ହୋଇଗଲା । ହଁ, ଆପଣଙ୍କ ମନରେ ପ୍ରଶ୍ନ ଉଠିପାରେ, ସେ ବିବାହ ପ୍ରସଙ୍ଗରେ । ତାହା ମଧ୍ୟ ମୁଁ କରାଇ ଦେଲି । ସେମାନେ ସୁଖରେ ଅଛନ୍ତି । ତଥାପି, ସେ ସେଠି ଯେଉଁ ଅସନ୍ତୋଷ ଓ ଗୋଷ୍ଠୀ ଗଠନର ହାଉଆ ସୃଷ୍ଟି କରି ଆସିଥିଲେ, ତାହାର ପ୍ରଭାବ ଲିଭିଲା ନାହିଁ । ଗୋକୁଳି ବାବୁ ମୂଳରୁ ଧରି ପାରିଲେ ନାହିଁ ଯେ, ତାଙ୍କ ପ୍ରତି କେତେ ଜଣ ଶିକ୍ଷକଙ୍କ ଅସହିଷ୍ଣୁତା ଜନ୍ମି ଧୀରେ ଧୀରେ ଶାଖା ମେଲାଉଥିଲା । ଏବେ କେତେ ଜଣ ଶିକ୍ଷକ ତାଙ୍କୁ ସାମାନ୍ୟ ଅବଜ୍ଞା କରୁଛନ୍ତି । ତାର ପ୍ରଭାବ ପଡୁଛି କିଛି

କିଛି ଛାତ୍ରଙ୍କ ଉପରେ । ତାହା ପୁଣି ପ୍ରଭାବିତ କରୁଛି ଗାଁର ଓ ଅଞ୍ଚଳର ଆଉ କେତେ ଜଣଙ୍କୁ । ଅଳ୍ପ ଦିନ ତଳେ ଆଉ ଗୋଟିଏ ଘଟଣାରେ କ୍ଷୁବ୍ଧ ହୋଇ ଗୋକୁଳି ବାବୁ ଇସ୍ତଫା ଦେଇଛନ୍ତି ।'

ନନ୍ଦ ସ୍ତବ୍ଧ ହୋଇଗଲା । କହିଲା- 'ମୁଁ ଭାବି ପାରୁ ନାହିଁ ଏତେ ସୁନ୍ଦର ପବିତ୍ର ଅନୁଷ୍ଠାନଟିରେ ଇଏ କଣ ସବୁ ଘଟି ଯାଉଛି ଓ ଘଟିବାକୁ ଯାଉଛି ।'

ପ୍ରଭୁପାଦ ବାବୁ ସେଇ ନୂଆ ସମସ୍ୟାଟି ବର୍ଣ୍ଣନା କଲେ - "ଗୋଟିଏ ମାସର ଘଟଣା । ଖୁଦୁରୁକୁଣୀ ପହିଲି ପାଳିରେ କେତେକ ପିଲା ସ୍କୁଲ ହତା ଭିତରେ ପଶିଲେ । ଫୁଲ ଓ କିଛି ଡ଼ାଳ ନେଇ ଚାଲି ଯାଇଥିଲେ ଚଳି ଥାଆନ୍ତା । କିନ୍ତୁ ସେମାନେ ଦୁଇ ତିନୋଟି ଦଳର ପିଲା । ବାଦ ବୁଦିଆରେ ଫୁଲ ଓ ଡ଼ାଳ ଭାଙ୍ଗିବାରେ ଫୁଲ ବଗିଚାଟିକୁ ଧ୍ୱସ୍ତ ବିଧ୍ୱସ୍ତ କରିପକାଇଲେ । ଫୁଲ ତୋଳିବା ଓ ବାକ୍ସ, ଦେବଦାରୁ ଡ଼ାଳ ଭାଙ୍ଗିବାର ପ୍ରତି ଯୋଗିତା ଚାଲିଲା ପିଲାଙ୍କ ଭିତରେ । ଏହା ଖୁଦୁରୁକୁଣୀ ପହିଲି ପାଳି ପୂର୍ବଦିନ ସଂଧ୍ୟାର ଘଟଣା । ଗୋକୁଳି ବାବୁ ସେ ଦିନ ନଥିଲେ । ସକାଳେ ଆସିଲେ । ତାଙ୍କ କହିବା ଅନୁସାରେ ପ୍ରାୟ ୮ଟାରୁ ୯ଟା ଭିତରର କଥା । ବଗିଚାର ଏଇ ଅବସ୍ଥା ଦେଖି ତାଙ୍କ ମନ ଦିଖଣ୍ଡ ହୋଇଗଲା । ରାଗ ବି ଲାଗିଲା । ଚଉକିଦାରକୁ ଡ଼ାକି ଗାଳିଦେଲେ । ଅନ୍ୟମାନେ କହୁଛନ୍ତି ଭୟଙ୍କର ଗର୍ଜନ କରି, 'କାହା ଅନୁମତିରେ ପିଲାମାନଙ୍କୁ ବଗିଚା ଭିତରକୁ ଛଡ଼ା ଗଲା' ବୋଲି ଚଉକିଦାରକୁ ଝିଙ୍ଗାସିଲେ । ସେତେବେଳକୁ ତାଙ୍କ ପଛରେ ଜଣେ ଶିକ୍ଷକ ଆସି ଛିଡ଼ା ହୋଇଗଲେଣି । ସେ ବଡ଼ ଦମ୍ଭ ଓ ଦୃଢ଼ତାର ସହିତ କହିଲେ - 'ମୋ ଅନୁମତିରେ ।' ଗୋକୁଳିବାବୁ ପଛକୁ ଅନାଇଲେ । ସମ୍ଭାଳି ପାରିଲେ ନାହିଁ । ତୁରନ୍ତ ଅଫିସ ଭିତରକୁ ଆସି ଟେବୁଲ ଉପରେ ମୁଣ୍ଡରଖି ବସିଗଲେ । ପିଲାଏ ଆସି ନଥିଲେ । କେତେ ଜଣ ଶିକ୍ଷକ, ସ୍କୁଲ କିରାନୀ ଓ ପିଅନ ଥିଲେ । ସେମାନଙ୍କ ଭିତରୁ ଜଣେ ଗୋକୁଳି ବାବୁଙ୍କ ପାଖରେ ଯାଇ ଛିଡ଼ା ହେଲେ । କିଛି କହିବାକୁ ସାହସ କଲେ ନାହିଁ । ଫେରି ଆସିଲେ । ସେମାନେ ସେଇ ଶିକ୍ଷକଙ୍କୁ କାଇଛି କଲେ । ତାଙ୍କର ଏପରି କହିବା ଉଚିତ ହେଲା ନାହିଁ ବୋଲି କହିଲେ ।"

ନନ୍ଦ ବଡ଼ ଉତ୍କଣ୍ଠା ଓ ମର୍ମବେଦନା ଭିତରେ ଶୁଣି ଯାଉଥାଏ । ପ୍ରଭୁପାଦ ଟିକିଏ ନୀରବ ହୋଇ ଯିବାରୁ , ପଚାରିଲା- 'ସେଇଠୁ ?'

ପ୍ରଭୁପାଦ ବାବୁ କହିଲେ- 'ସେ ଶିକ୍ଷକ ଜଣକ ଓଲଟି ଯୁକ୍ତି କରି ଦୃଢ଼ତା ଦେଖାଇ

କହିଲେ, ସେ ଯାହା କରିଛନ୍ତି ଠିକ୍ କରିଛନ୍ତି । ସେପରି ନ କହିଥିଲେ ବିଚରା ଚୌକିଦାର ପ୍ରତି ଅନ୍ୟାୟରେ ଦଣ୍ଡାଦେଶ ହୋଇ ଥାଆନ୍ତା । ଏଇ ବଗିଚା ତ ସେଇ ପିଲାଏ କି ସେମାନଙ୍କ ଭାଇ ଭଉଣୀମାନେ ବଢ଼ାଇଛନ୍ତି । କଣ ହୋଇଗଲା  ସେଇଠୁ ସେମାନେ ଫୁଲ କି ଡ଼ାଳ କେତୁଟା ନେଇଗଲେ ? ମୁଁ ସ୍କୁଲକୁ ଆସୁଥିଲି । କେତେ ଜଣ ପିଲା ଫୁଲ ଦିଟା ନେବାକୁ ବଡ଼ ବିକଳ ହୋଇ ମୋର ଅନୁମତି ମାଗିଲେ । ମୁଁ ଚଉକୀଦାରକୁ କହିଦେଲି । ସେମାନେ ଫୁଲ ତୋଳୁଥିଲେ, ଏତିକି ବେଳେ, ସେମାନଙ୍କ ପରେ ପରେ ଆଉ କେତେ ଜଣ ପଶି ଯାଇଥିବେ, ଯା ବୋଲି ହେଡ୍‌ମାଷ୍ଟଙ୍କର ଏପରି ଅଭଦ୍ର ଭାବରେ ଗର୍ଜନ ତର୍ଜନ କରିବା କଣ ଦରକାର ଥିଲା ? ଏ ସ୍କୁଲ କଣ ତାଙ୍କର ? ଆମେ କିଛି କରୁନୁ ? ଯାହା ନାଁରେ ମନ  ତା ନାଁରେ ପ୍ରେସିଡ଼େଣ୍ଟଙ୍କୁ କହିବେ । କୌଶଳ କରି ଭଲ ଭଲ ଶିକ୍ଷକଙ୍କୁ ବିଦା କରିଦେବେ,  ସାମାନ୍ୟ ସାମାନ୍ୟ କଥାରେ କର୍ମଚାରୀମାନଙ୍କୁ ଧଡ଼କାଇବେ, ଛାତ୍ରମାନଙ୍କୁ ଦଣ୍ଡ ଦେବେ, ଏଗୁଡ଼ାକ କଣ ଭାରି ଭଲ କଥା ? ଯା ସବୁ ଆଉ ଚଳିବନି । ତାଙ୍କ କଥାରୁ କେତେ ପଦ ଗୋକୁଳି ବାବୁଙ୍କ କାନରେ ବି ପଡ଼ିଲା ।'

ନନ୍ଦ ପଚାରିଲା - 'କିଏ ସେହି ଶିକ୍ଷକ ?'

ପ୍ରଭୁପାଦ କହିଲେ- 'ଛାଡ଼ନ୍ତୁ ନନ୍ଦବାବୁ, ବଡ଼ ଆଶା ନେଇ ତାଙ୍କୁ ଆଣିଥିଲି । ସେ ଏମ.ଏ. ଏମ୍.ଇଡ଼ି । ତାଙ୍କର ଯୋଗ୍ୟତା ଦେଖି ବାଛିଥିଲି । ମନରେ ଯୋଜନା ଥିଲା ହାଇସ୍କୁଲକୁ ହାଇୟର ସେକେଣ୍ଡାରୀ କରାଇବି । ତେଣୁ ଧୀରେ ଧୀରେ ଉଚ୍ଚ ଶିକ୍ଷିତ ଶିକ୍ଷକ ରଖୁଥିଲି । ଆପଣ ଯିବା ପରେ ପରେ ତାଙ୍କୁ ଆଣିଥିଲି । ସେପରି ଆଉ ଦୁଇଟି ପଦ ଖାଲି ହେବା ପରେ, ସେହି ସ୍ଥାନରେ ଉଚ୍ଚ ଶିକ୍ଷିତ ଯୋଗ୍ୟତା ସମ୍ପନ୍ନ ଶିକ୍ଷକ ନିଯୁକ୍ତ ହୋଇଥିଲେ । ସେ ସବୁ ମୋର ଅଯୋଗ୍ୟତା ନନ୍ଦ ବାବୁ, ମୁଁ ଆଉ ଲୋକ ଚିହ୍ନି ବାଛି ପାରୁନି । ସେ ରୁମାଲରେ ମୁହଁ ପୋଛିଲେ ।

ନନ୍ଦ ଗୋକୁଳି ବାବୁଙ୍କ ବିଷୟରେ ଜାଣିବାକୁ ବ୍ୟଗ୍ରତା ପ୍ରକାଶ କଲା । କିନ୍ତୁ ଯାହା ଶୁଣିଲା, ସେଥିରେ ମନ ତାର ଦବି ଦବି ଗଲା । ଗୋକୁଳି ବାବୁ କଟକ ଚାଲି ଆସିଲେ ସେହି ଦିନ । ଇସ୍ତଫା ପତ୍ର ପ୍ରଭୁପାଦ ବାବୁଙ୍କ ହାତରେ ଦେଇ ଦେଲେ। କଥା କହି ପାରୁ ନଥିଲେ  । କେବଳ କାନ୍ଦ କାନ୍ଦ ସ୍ୱରରେ ତାଙ୍କୁ କିଛି ନ ପଚାରିବାକୁ କହିଲେ । ଇସ୍ତଫା ପତ୍ରରେ ମଧ୍ୟ କିଛି କାରଣ ଲେଖା ନଥିଲା । ପ୍ରଭୁ ପାଦ ବାବୁ ତାଙ୍କ ଇସ୍ତାଫା ପତ୍ରକୁ 'ଛୁଟିଦରଖାସ୍ତ ଭାବରେ ଗ୍ରହଣ କଲି' ବୋଲି କହି କିଛି ଦିନ ପାଇଁ ଘରକୁ ଯାଇ ମନ ପରିବର୍ତ୍ତନ କରି ଆସିବାକୁ

ପରାମର୍ଶ ଦେଲେ । ପରେ ସବୁ ଘଟଣା ବୁଝିଲେ । ତାଙ୍କୁ ବହୁତ ବୁଝା ସୁଝା କରାଇ ସ୍କୁଲକୁ ଆଣିଲେ । ଅବସ୍ଥା ସୁଧୁରିଲା ବୋଲି ଅନେକ ଲୋକ ବିଶ୍ୱାସ କରି ଯାଇଛନ୍ତି । କିନ୍ତୁ ତାହା ହୋଇ ନାହିଁ ।

ସେଦିନ ଜଣେ ଶିକ୍ଷକ ଏକାନ୍ତରେ ତାଙ୍କୁ ଭେଟିଲେ । ପ୍ରସଙ୍ଗ ଟାଣି ଆଣିଲେ ଗୋକୁଳି ବାବୁଙ୍କ କଥା ପକାଇବାକୁ । ତାଙ୍କ ବିଷୟରେ ଏଣୁ ତେଣୁ ପଦେ ଅଧେ କହି ଦେଲେ । ସେ କୁଆଡ଼େ ଆଉ ପାଠ ପଢ଼ାଉ ନାହାନ୍ତି । ରୁଟିନ୍‌ରେ ତାଙ୍କ ନାଁରେ ଯେଉଁ ପିରିୟଡ଼ଟି ଅଛି, ତାକୁ ନିୟମିତ ଭାବରେ ନେଉ ନାହାନ୍ତି । ସେ ତାଙ୍କ କ୍ଲାସକୁ ଆଜି ଜଣକୁ ପଠାଇଲେ, କାଲି ଆଉ ଜଣକୁ ପଠଉଛନ୍ତି । ପିଲାଏ ତାଙ୍କ ପଢ଼ାରେ ସନ୍ତୁଷ୍ଟ ନୁହନ୍ତି । 'ଅବଶ୍ୟ, ତାଙ୍କର କିଛି ଭଲ ଗୁଣ ବି ଅଛି' ବୋଲି ମଧ ଚଲାକିରେ ପଦେକଥା ମଝିରେ କହିଦେଲେ ।

ପ୍ରଭୁପାଦ ପରେ ବୁଝିଲେ, ଏ ପ୍ରକାର ଅକ୍ଷେପ ମୂଳରେ କଣ ଅଛି । ଜଣେ ପିଲା ପରୀକ୍ଷା ହଲରେ କପି କରୁଥିଲା । ସେଠି ଏଇ ଶିକ୍ଷକ ଥିଲେ । ଦେଖୁଥିଲେ । କିଛି କହିଲେ ନାହିଁ । ସେଥିରୁ ଆଉ କେତେ ଜଣ ବଳ ପାଇଗଲେ । କେତେ ଜଣ ପାଖ ପିଲାଙ୍କ ଖାତାକୁ ଅନାଇଲେ । ଅନାଉ ଅନାଉ ପ୍ରଶ୍ନର ଉତ୍ତର ବି ପଚାରିଲେ । ଭଲ ପଢ଼ା ପଢ଼ି କରିଥିବା ପିଲାଏ, ପରୀକ୍ଷା ହଲରେ ଉତ୍ତର ଲେଖିବା ବେଳେ ହଇରାଣ ହେଲେ । ଏହି ସମୟରେ ପ୍ରଧାନ ଶିକ୍ଷକ ପରୀକ୍ଷା ହଲରେ ପହଞ୍ଚି ଗଲେ । ସବୁ ଚୁପ୍ ଚାପ୍ । କିନ୍ତୁ ତାଙ୍କ ଆଖିରେ ତ୍ରୁଟିଟା ପଡ଼ି ଯାଇଥିଲା । ସେ ସେଠାରେ କିଛି ନ କହି ମନେ ମନେ ଅସନ୍ତୁଷ୍ଟ ହେଲେ । ପରୀକ୍ଷା ହଲ୍‌ରେ ଏପଟ ସେପଟ ବୁଲିଲେ । ପିଅନ୍ ଦ୍ୱାରା ଆଉ ଜଣେ ଶିକ୍ଷକଙ୍କୁ ଡ଼କାଇ ଆଣିଲେ । ଏହା ଫଳରେ, ସେଇ ସାର୍ ଜଣକ ଅପମାନିତ ବୋଧ କଲେ । ଏହା ଛଡ଼ା ଗୋକୁଳିବାବୁ ଆଉ ଗୋଟିଏ ବିପଦ ନିଜ ମୁଣ୍ଡକୁ ଆଣିଥିଲେ ।

କେତେ ଜଣ ଶିକ୍ଷକ ପଇସା ନେଇ ଟିଉସନ୍ ଆରମ୍ଭ କରିଦେଲେ । ଏଇ ପ୍ରଥାଟି ସ୍କୁଲରେ ନଥିଲା । କିନ୍ତୁ ସେମାନେ ଗୋପନରେ ଟିଉସନ କଲେ । ମାଟ୍ରିକ୍ ପରୀକ୍ଷା ବେଳେ ପରୀକ୍ଷାର୍ଥୀମାନଙ୍କ ପାଇଁ କୋଚିଙ୍ଗ୍ କ୍ଲାସ୍ ହେଲା । ସେତିକି ବେଳେ ଏଇ ଟିଉସନ୍ କଥାଟି ଜଣା ପଡ଼ିଲା । ଗୋକୁଳି ବାବୁ ଶିକ୍ଷକମାନଙ୍କ ବୈଠକ ଡ଼କାଇଲେ । ସେଇଠି କଥା ପଡ଼ିଲା । କେତେ ଜଣ ଘରୋଇ ଟିଉସନ୍ ସପକ୍ଷରେ ମତ ଦେଲେ । ପୁରୁଣା ଶିକ୍ଷକମାନେ ଏହାର

ବିରୋଧ କଲେ । ଗୋକୁଳି ବାବୁ ପ୍ରଧାନ ଶିକ୍ଷକ ଭାବରେ ନିଷ୍ପତ୍ତି କଲେ - 'ଘରୋଇ ଟିଉସନ୍ ବନ୍ଦ ।' କିନ୍ତୁ ପିଲାଙ୍କୁ ଯେକୌଣସି ସମୟ ବା ସ୍ଥାନରେ ପାଠ ପଢ଼ାଇପାର । ମାତ୍ର ସେଥିପାଇଁ ପଇସା ନେଇ ପାରିବ ନାହିଁ ।

ଖୁଦୁରୁକୁଣୀ ବେଳର ଗଣ୍ଡଗୋଳ ପୂର୍ବରୁ ବି ବିଭିନ୍ନ ସମୟର ଏପରି କିଛି କିଛି ଛୋଟ ଛୋଟ ଘଟଣା ଘଟିଥିଲା । ଜଣେ ଶିକ୍ଷକ ଏହାର ସୁଯୋଗ ନେଇ ଗଣ୍ଡଗୋଳ ଭିଆଇ ଦେଇଥିଲେ ।

ପ୍ରଭୁପାଦବାବୁ କେତେ ଜଣ ଶିକ୍ଷକଙ୍କୁ ସ୍କୁଲରୁ ବିଦା କରିଦେବା କିମ୍ବା ଅନ୍ୟତ୍ର କିଛି କାମ ଧନ୍ଦା ଯୋଗାଇ ଦେବା କଥା ବେଳେ ବେଳେ ଭାବୁଛନ୍ତି । କିନ୍ତୁ ହଠାତ୍ କିଛି କରିପକାଇବା ଉଚିତ୍ ହେବ ନାହିଁ ବୋଲି ସମୟକୁ ଅପେକ୍ଷା କରିଛନ୍ତି ।

ନନ୍ଦ ଭାବୁଥିଲା ଗୋକୁଳିବାବୁଙ୍କ କଥା, ସ୍କୁଲ ପାହାଚ କି ପାଚେରୀରେ ଘାସଟିଏ ଦେଖିଲେ ଉପାଡ଼ି ଦିଅନ୍ତି । କୋଉଠି କବାଟ କି କାନ୍ଥରେ ଉଇ ଲାଗିଥିବାର ଦେଖିଲେ ଝାଡ଼ି ଦିଅନ୍ତି । ପିଲାଏ ଆସିବା ବେଳେ ବାଟରେ ବର୍ଷାରେ ତିନ୍ତି ଯାଇଥିଲେ କି ଖରାରେ ଝାଳ ବୋହି ପଡ଼ିବାର ଦେଖିଲେ ପକେଟରୁ ରୁମାଲ କାଢ଼ି ପୋଛି ପକାନ୍ତି । ସହକର୍ମୀମାନଙ୍କ ବିପଦ ଆପଦରେ ଠିଆ ହୁଅନ୍ତି । ସ୍କୁଲର ପିଲାଏ କେମିତି ପଢ଼ିବେ, ଭଲ ମଣିଷ ହୋଇ ଉତୁରିବେ, ସ୍କୁଲଟି ଚଳିଯିବାକୁ ସ୍କୁଲର ଆୟ କେମିତି କୁଳେଇବ, ସେଥିକି ବରାବର ଦୃଷ୍ଟି ଦେଇଥାଆନ୍ତି । କିନ୍ତୁ ଆଜି ସିଏ ସେଇ ସ୍କୁଲ ପାଇଁ ଜଣେ ଅବାଞ୍ଛିତ ବ୍ୟକ୍ତି ହୋଇ ଆସୁଛନ୍ତି !

ପ୍ରଭୁପାଦ ବାବୁ କହିଲେ- 'ସ୍କୁଲର ସମସ୍ତ ଖର୍ଚ୍ଚ ଓ ଦାୟିତ୍ୱ ମୁଁ ନିଜେ ନେଉଛି ବୋଲି ରକ୍ଷା ରକ୍ଷଣ । ଯଦି ସରକାରୀ ଅନୁଦାନ ଆଣି ଥାଆନ୍ତି , ଲୋକମାନଙ୍କଠାରୁ ଚାନ୍ଦା ଉଠାଇ ଥାଆନ୍ତି; ତେବେ ଅବସ୍ଥା ଅସମ୍ଭାଳ ହୁଅନ୍ତାଣି । ଶିକ୍ଷକ ଓ ପ୍ରଧାନ ଶିକ୍ଷକଙ୍କ ବିବାଦକୁ ଘେନି ନାନା କାଣ୍ଡ ଘଟନ୍ତାଣି । ଏବେ ବାହାର ଲୋକଙ୍କଠାରୁ ଆରମ୍ଭକରି ସ୍କୁଲ ପିଲାଏ ଓ ଶିକ୍ଷକମାନେ ମୋରି ପାଖକୁ ଆସୁଛନ୍ତି । ମୁଁ ସେମାନଙ୍କୁ ବୋଧଶୋଧ ଦେଇ ସମ୍ଭାଳି ନେଉଛି । କିନ୍ତୁ ମୁଁ ଏଥି ପାଇଁ କେତେ ସମୟ ଦେଇ ପରିବି ? ସ୍କୁଲଟା ତ ମୋ ଭାତ ଥାଳି ନୁହେଁ, ଏହା ଅତ୍ୟନ୍ତ ଦରକାରୀ ଓ ଗୋଟିଏ ମହତ କାର୍ଯ୍ୟ ବୋଲି ଏଥିରେ ହାତ ଦେଇଥିଲି । ସେଥିପାଇଁ ଅନେକ ଦିନ ଧରି ଯୋଜନା କରିଛି । ଗୋଟାଏ ଭଲ କାମ ଭାବି ଏଥିରେ ନାନା ଦିଗରୁ

ଚିନ୍ତା କରିଛି । ଯେତେବେଳେ ଦେଶର ବିଭିନ୍ନ ରାଜ୍ୟରେ କୃଷି ବିଶ୍ୱବିଦ୍ୟାଳୟ କଥା ଚିନ୍ତା କରା ଯାଉଥିଲା, ସେତେବେଳେ ପ୍ରଥମେ ମୋର ଇଚ୍ଛା ହୋଇଥିଲା ମୋ ଗାଁରେ ଗୋଟାଏ କୃଷି ବିଦ୍ୟାଳୟ ଖୋଲିବି । ସେଇ ଅନୁସାରେ ଚାଷ ଜମି, ଫାର୍ମ ପୋଖରୀ ପ୍ରଭୃତି ସ୍କୁଲ ସହିତ ଯୋଡ଼ିବାର ଚିନ୍ତା କରିଥିଲି । କିନ୍ତୁ ବିଭିନ୍ନ କାରଣରୁ ସେ ଯୋଜନା ଛାଡ଼ି, ବର୍ତ୍ତମାନର ସ୍କୁଲଟି ଗଢ଼ାଗଲା । ଭାବିଲି ବଡ଼ କାମଟିଏ କରି ଦେଲି । ପ୍ରଥମେ ବେଶ୍ ଶାନ୍ତି ପାଉଥିଲି, ଏଇ କାମ ପାଇଁ । କିନ୍ତୁ ପରେ ଏପରି ଗୋଟିଏ ଗୋଟିଏ ସମସ୍ୟା କୁଢ଼େଇ ହୋଇ ପଡ଼ିବ ବୋଲି କଳ୍ପନା କରି ନ ଥିଲି' । ପ୍ରଭୁପାଦ ବାବୁ ଏତକ କହି ଦେଇ, କିଛି ସମୟ ନୀରବ ରହିଲେ । ମନ ଭିତରେ ତାଙ୍କର ଖେଳି ଯାଉଥାଏ, ଅନେକ ଦିନ ତଳର ଅନୁଭବ ।

ମହାତ୍ମା ଗାନ୍ଧୀ ଅହ ମ୍ମଦାବାଦରେ ସାବରମତୀ ଆଶ୍ରମ ଓ ଗୁଜୁରାଟ ବିଦ୍ୟାପୀଠ ପ୍ରତିଷ୍ଠା କରିଥିଲେ । ଗୁଜୁରାଟ ବିଦ୍ୟାପୀଠର ଉଦ୍‌ଘାଟନ ଉତ୍ସବରେ ସେ କହିଥିଲେ- "ମୁଁ ଅନେକ ବଡ଼ କାମ କରିଛି, ଯେଉଁଥି ପାଇଁ ମୁଁ ଗୌରବ ଅନୁଭବ କରେ । ଏମିତି ବି କିଛି ଅଛି, ଯେଉଁଥି ପାଇଁ ଅନୁତାପ ମଧ୍ୟ କରେ । ସେଥି ମଧ୍ୟରୁ ଅଧିକାଂଶକୁ ବିରାଟ ଦାୟିତ୍ୱ ବୋଲି କୁହାଯାଇ ପାରେ । କିନ୍ତୁ, ମୁଁ ତିଳେ ମାତ୍ର ଅତିରଞ୍ଜନ ନ କରି କହିବାକୁ ଚାହେଁ ଯେ, ଆଜିର ଏଇ କାମଟି ସହିତ କୌଣସି କାମକୁ ତୁଳନା କରି ହେବ ନାହିଁ ।"ସେଦିନ ସେ ବଣିକ ପୁତ୍ର ହୋଇ ଜଣେ ଋଷି ପୁତ୍ର ଭଳି କାର୍ଯ୍ୟ କରିଛନ୍ତି ବୋଲି ଅନ୍ତଃ କରଣରେ ଅନୁଭବ କରିଥିଲେ । ଏହା ୧୯୨୦ ନଭେମ୍ବର ୧୫ ତାରିଖର ଘଟଣା । ଏହାର ଚାଳିଶ ବର୍ଷ ପରେ ପ୍ରଭୁପାଦ ବାବୁଙ୍କୁ ସେହି ଭାବନା ପ୍ରଭାବିତ କରିଥିଲା । ଗୁଜୁରାଟ ବିଦ୍ୟାପୀଠର ପ୍ରତୀକ (emblem) ଦେହରେ ଲେଖାଥିଲା - 'ସା ବିଦ୍ୟା ଯା ବିମୁକ୍ତୟେ ।' ପ୍ରଭୁପାଦ ବାବୁ କିଛି ସମୟ ପାଇଁ ନିଜ ଭାବନା ଭିତରେ ନିଜେ ନିମଜ୍ଜିତ ରହିଗଲେ । ନନ୍ଦର ଭାବନା ନେଉଥିଲା ଭିନ୍ନ ମୋଡ଼ ।

ନନ୍ଦ ଭାବୁଥିଲା, ବିଦ୍ୟାଳୟଟିଏ ବସାଇବା ଅପେକ୍ଷା ତାକୁ ଚଳାଇବା ସହସ୍ର ଗୁଣେ କଷ୍ଟକର । ଜନ ସେବା ତହୁଁ ବଳି କଷ୍ଟ । ଏହା ବଡ଼ ଦୁର୍ଗମ ଦୁରତିକ୍ରମ୍ୟ ବାଟ । ସେ କାନ୍ଥ ଘଣ୍ଟାକୁ ଅନାଇଲା । ଏଠି ତିନି ଚାରି ଘଣ୍ଟା ବସିଗଲାଣି । ପ୍ରଭୁପାଦ ବାବୁ ବୁଝିଗଲେ, ନନ୍ଦ ଯିବାକୁ ଚାହୁଁଛି । ବରାଦ ଦେଲେ-'ନନ୍ଦବାବୁଙ୍କ ପାଇଁ ଖାଇବାକୁ ବାଢ଼ ।' ତାହାପରେ ନନ୍ଦ ହାତକୁ ଗୋଟିଏ ଖବରକାଗଜ ବଢ଼ାଇ ଦେଇ କହିଲେ - 'ଏଥିରେ ଏଇ ଲେଖାଟି ଉପରେ

ଟିକିଏ ଆଖି ପକାନ୍ତୁ ।'

ଲେଖାର ଗୋଟିଏ ଅଂଶରେ ଚିହ୍ନ ଦିଆଯାଇଛି । ନନ୍ଦ ସେଇ ଅଂଶଟି ଆଗ ପଢିଲା । ସେଥିରେ ଲେଖା ଅଛି - 'ଆମ ଅର୍ଥ ନୀତି କୃଷିଭିତ୍ତିକ । ସେଇ ମୂଳ ଭିତ୍ତିଉପରେ ଛିଡା ହୋଇଛି ଆମର ଧର୍ମ, ରାଜନୀତି, କଳା, ସଂସ୍କୃତି ଇତ୍ୟାଦି । ଏଗୁଡାକ ସୁପର - ଷ୍ଟ୍ରକଚର । ପୁଣି ଏଇ ମୂଳ ଭିତ୍ତିକୁ ଗଢିଥିବା ଗୋଷ୍ଠୀଟି ହେଲେ କୃଷି-ଶ୍ରମିକ ! ଅଥଚ ସେମାନଙ୍କ ପ୍ରତି ସମାଜର ଘୋର ଅବଜ୍ଞା ଓ ଅବିଚାରର ଅନ୍ତ ନାହିଁ । ଜମିମାଲିକ ଜମି ଚାଷକରେ ନାହିଁ । ପୁଞ୍ଜି ଖଟାଏ । ଦେଖିବାକୁ ଗଲେ ଏମାନଙ୍କ ଦ୍ୱାରା ଆମ କୃଷି ଉତ୍ପାଦନରେ ବାଧାପଡେ । କୃଷି ଅର୍ଥନୀତି ଦୁର୍ବଳ ହୁଏ । ଅଥଚ ସମାଜ ଉପରେ ଏମାନଙ୍କର ଅଖଣ୍ଡ ପ୍ରଭାବ ! ଏମାନେ ଏକ ପ୍ରକାର ପୁଞ୍ଜିପତି । ଏମାନେ ଦେଉଳ ତୋଳାନ୍ତି, ମେଳଣ ଉତ୍ସବ ଆଦି ଧର୍ମକାର୍ଯ୍ୟ କରାନ୍ତି । ଧର୍ମ ଓ ନିଜର ସୁବିଧା ପାଇଁ ତିଆରି କରିଥିବା ନୈତିକତାର ଆଢୁଆଳରେ ନିଜର ସବୁତକ ସୁବିଧା ସମାଜ ନାଁରେ ହାସଲ କରନ୍ତି । ଏମାନଙ୍କ ଭିତରୁ କେହି କେହି ବିଦ୍ୟାନୁଷ୍ଠାନ ମଧ୍ୟ କରାଇଥାନ୍ତି । କିନ୍ତୁ ସବୁ ଭିତରେ ଅଛି ସେମାନଙ୍କର ପୁଞ୍ଜିବାଦୀ ଲକ୍ଷ୍ୟ, ଲକ୍ଷଣ ଓ ମନୋବୃତ୍ତି । ଏବେ ରାଜତନ୍ତ୍ର, ଜମିଦାରୀ, ସରବରାକାରୀ, ମକଦ୍ଦମୀ ଆଦି ପ୍ରାଚୀନ ଫିଉଡାଲ୍ ପ୍ରଥା ଲୋପ ପାଇବା ପରେ ସୁଦ୍ଧା ଏମାନଙ୍କର ପ୍ରତିପତ୍ତି କି ମନୋବୃତ୍ତି ବଦଳି ନାହିଁ । ସମ୍ପତ୍ତି ଅଛି । କିନ୍ତୁ ପ୍ରଭୁତ୍ୱ ଯାଇଛି । ସେଇ ହରାଇଥିବା ପ୍ରଭୁତ୍ୱକୁ ପାଇବା ଲାଗି ଏମାନେ ରାଜନୀତି ଆଡକୁ ଧାଡିବାନ୍ଧିଲେଣି । ଏମାନଙ୍କ ଦ୍ୱାରା ପ୍ରତିଷ୍ଠିତ ଓ ପରିଚାଳିତ ଶିକ୍ଷାନୁଷ୍ଠାନଗୁଡିକୁ ସେଥିରେ ବ୍ୟବହାର କରାଯାଉଛି । ଏଥିପ୍ରତି ଜନସଚେତନତା ଜାଗ୍ରତ ହେବା ଆବଶ୍ୟକ ।'

ଲେଖାଟିର ଶୀର୍ଷକ ଓ ଲେଖକଙ୍କ ନାଁ ଉପରେ ନଜର ପଡିବା ମାତ୍ରେ, ନନ୍ଦ ବିସ୍ମିତ ହୋଇଗଲା । ଲେଖାଟିର ଶୀର୍ଷକ - 'ପୁରୁଣା ବୋତଲ' । ଲେଖକ - ସବ୍ୟସାଚୀ ମହାପାତ୍ର । ନନ୍ଦ ଭିତରେ ଉତ୍କଣ୍ଠା ଓ ବ୍ୟାକୁଳତା - 'ଇଏ ତାର ସାଙ୍ଗ ସବ୍ୟସାଚୀ ନୁହେଁତ ? କେଉଁଠି ତାକୁ ପାଇବ ?' ତାର ମନୋଭାବ ମନଭିତରେ ସଂଯତ ରଖି କହିଲା- ଅବଶ୍ୟ ଏଥିରେ କୌଣସି ନିର୍ଦ୍ଦିଷ୍ଟ ବ୍ୟକ୍ତିଙ୍କ ପ୍ରତି ଆକ୍ଷେପ ନାହିଁ । କାହାରି ନାଁ କେଉଁଠି ଲେଖାଯାଇ ନାହିଁ । ତଥାପି ଲେଖାରେ ତୀବ୍ରତା ଅଛି । କିନ୍ତୁ ଏଇ ଲେଖକ ପ୍ରକୃତରେ କିଏ ?'

ପ୍ରଭୁପଦ ବାବୁ କହିଲେ - 'ଏଇ ଲେଖକ ଜଣେ ସତର୍କ ଓ ବଳିଷ୍ଠ ସାମ୍ବାଦିକ । ଗୋଟିଏ ଖବରକାଗଜରେ କାମ କରନ୍ତି । ଚାକିରୀ କରିବା ଭିତରେ ଆଇନ୍ କଲେଜରେ ପଢି ଡିଗ୍ରୀଟିଏ ହାସଲ କରିଛନ୍ତି । ସେଇ ସମୟରେ ଆମ ସ୍କୁଲର ଜଣେ ଶିକ୍ଷକ ମଧ୍ୟ ଆଇନ୍ ପଢୁଥିଲେ । ଇଏ ତାଙ୍କର ସହପାଠୀ । ଏଇ ଖବରଟି ମଧ୍ୟ ମୋ ପାଖକୁ ସ୍ୱତଃ ତା ବାଟରେ ଆସିଛି । କିନ୍ତୁ ମୁଁ ଏସବୁ କଥାକୁ ମନଭିତରକୁ ନିଏ ନାହିଁ । ସେପରି ଭାବିଲେ ଜୀବନରେ କିଛି କରିହେବ ନାହିଁ । ତେବେ, ଲୋକଙ୍କ ଦୃଷ୍ଟିକୋଣ ମତେ ବେଳେ ବେଳେ ସଚେତନ କରିଦିଏ । ମୋର ସୀମା ଦେଖାଇ ଦିଏ ।'

ଖାଇ ବସିବାବେଳେ ନନ୍ଦ ମନେ ପକାଉଥିଲା, ତା ଶିକ୍ଷକ ଜୀବନର ସ୍ମୃତି । ହଷ୍ଟେଲରେ ଅଳ୍ପ ପିଲା ଓ କେତେ ଜଣ ଶିକ୍ଷକ ରହୁଥିଲେ । ସମସ୍ତେ ଏକାଠି ଖାଇ ବସନ୍ତି । ସେତିକି ବେଳେ ଉଚ୍ଚାରଣ କରାଯାଏ - "ସହନାମବତୁ ସହନୌ ଭୁନକ୍ତୁ ସହବୀର୍ଯ୍ୟଂ କରବାବହୈ" ଇତ୍ୟାଦି ପୁଣି ଗୋକୁଳି ବାବୁ ଭାଷଣ ଦେଲାବେଳେ ଛାତ୍ର ଛାତ୍ରୀଙ୍କୁ ବୁଝାଉଥିଲେ କଠୋପନିଷଦ୍‌ର ବାର୍ତ୍ତା - 'ଉଠ, ଜାଗ, ତୁମର ପ୍ରାପ୍ୟ ଯାହା ଲାଭ କରିଛ, ତାହା ଅବଗତ ହୁଅ । ହୃଦୟଙ୍ଗମ କର । ଖଣ୍ଡାଧାରରେ ବାଟ ଚାଲିବା ଯେମିତି କଷ୍ଟ, କବିଙ୍କ ମତରେ ଏ ପଥ ସେହିପରି ଦୁର୍ଗମ ଓ ଦୂରତିକ୍ରମ୍ୟ' । ନନ୍ଦ ନୀରବରେ ଖାଉଥିଲା । ଖାଉ ଖାଉ ଭାବୁଥିଲା - 'ପ୍ରଭୁପାଦବାବୁ ତ ଅନ୍ୟ ଜମିଦାରମାନଙ୍କ ପରି ନୁହଁନ୍ତି । ତାଙ୍କ ତ୍ୟାଗ ଓ ନିଷ୍ଠାକୁ ନବୁଝି ନଜାଣି ଯଦି ସତରେ ଖବରକାଗଜର ଏହି ଲେଖାରେ ପରୋକ୍ଷରେ ହେଲେ ବି ଆକ୍ଷେପ କରାଯାଇଥାଏ, ତେବେ ତାହା ଅତ୍ୟନ୍ତ ଗର୍ହିତ ଓ ଅନ୍ୟାୟ ।'

ପ୍ରଭୁପାଦ ବାବୁ ପଚାରିଲେ- 'କଣ ଭାବୁଛନ୍ତି ?' ନନ୍ଦ ତାଙ୍କରି କଥା ତ ଭାବୁଥିଲା, କଣ ବା ଉତ୍ତର ଦେବ ! ସେ କହିଲା - 'ଆପଣ ଏକ ପ୍ରକାର ଖଣ୍ଡା ଧାରରେ ଚାଲିଛନ୍ତି । ପୁଣି ଆପଣ ନିଜେ ହିଁ ନିଜ ପାଇଁ ଏଇ ବାଟଟିକୁ ବାଛି ନେଇଛନ୍ତି !'

 କ୍ଷୁରସ୍ୟ ଧାର ନିଶିତା ଦୂରତ୍ୟୟ ।
ଦୁର୍ଗଂପଥସ୍ତତ୍ କବୟୋ ବଦନ୍ତି ।

ପ୍ରଭୁପାଦ୍‌ବାବୁ ମନେ ପକାଉଥିଲେ ଏହି ଆର୍ଷ ବାଣୀ । ଏହାର ପୂର୍ବାପର ସଂଗତି ଓ ମୂଳ ଅର୍ଥ ଯାହା ହେଉ ପଛେ, ଏହା ଥିଲା - ସତର୍କ ରହିବାର ସନ୍ଦେଶ ।

ଡ୍ରାଇଭରକୁ କୁହାଯାଇଥିଲା, ଦୁଇଘଣ୍ଟା ଭିତରେ ହୋଟେଲରେ ଖିଆପିଆ ସାରି

ଫେରି ଆସିବାକୁ । ସେ ଅନେକ ବେଳୁ ଆସି ଯାଇଛି । ନୂଆ ଆଦେଶକୁ ଅପେକ୍ଷା କରି କରି ଷ୍ଟିଅରିଙ୍ଗ ଚକ୍ର ଉପରେ ମୁଣ୍ଡଟି ରଖି ଘୁମାଇ ପଡ଼ିଛି ।

ନନ୍ଦ ପ୍ରଭୁପାଦ ବାବୁଙ୍କ ଚିନ୍ତାର ଓଜନକୁ ହାଲୁକା କରିବା ପାଇଁ କହିଲା- 'ସାର୍ ଇଏ ଆପଣଙ୍କର ଭାଲୁ-ଡ୍ରାଇଭରର ବଂଶଧର ।' ସେ ନନ୍ଦକୁ ବିଦାୟ ଦେବାକୁ ଗାଡ଼ି ପର୍ଯ୍ୟନ୍ତ ଆସିଥିଲେ । ତା କଥା ଓ ଡ୍ରାଇଭର ଘୁମାଇବା ଦେଖି ହସିଦେଲେ ସିନା, ସେ ହସରେ ବିଷର୍ଣ୍ଣତା ଥିଲା । କହିଲେ- 'ବହୁ ଦିନ ତଳର କଥା ମନେ ପକାଇ ଦେଲେ । ଜୀବନରେ ଯେତିକି ବାଟ ମାଡ଼ି ଆସିଲିଣି, ଆଉ ସେତେ ବାଟ ବାକୀ ନାହିଁ । କିନ୍ତୁ ବେଶୀ ନହେଲେ ବି କିଛି କାମ ଅଛି ସାରିଯିବା ପାଇଁ । ମୁଁ ପିଲା ଦିନେ ଫୁଟ୍‌ବଲ ଖେଳରେ ଗୋଲ୍ କିପର ହେଉଥିଲି ଏବଂ ଭଲ ଗୋଲ୍‌କିପର ଭାବରେ ମୋର ସୁନାମ ଥିଲା । ଏବେ ଫୁଟବଲ୍ ଖେଳୁ ନାହିଁ ସିନା, ମୋତେ ଅନୁରୂପ ଭୂମିକା ନିର୍ବାହ କରିବାକୁ ପଡୁଛି ।'

ନନ୍ଦକୁ ଗାଡ଼ି ପାଖେ ବେଶୀ ସମୟ ଛିଡ଼ା ହେବାକୁ ନଦେଇ, ସେ ତା ପିଠିରେ ହାତ ମାରି ଦେଇ କହିଲେ, 'ହଉ ବସନ୍ତୁ ଏମିତି ବେଳେ ବେଳେ ଅନୁଗ୍ରହ କରି ଆସୁଥିବେ ।'

ନନ୍ଦ ନମ୍ର ନମସ୍କାର କରି ଗାଡ଼ିରେ ବସିଲା । ଡ୍ରାଇଭର ଗାଡ଼ି ଷ୍ଟାର୍ଟ କରି ତାକୁ ଆନାଇଲା । ଜାଣିବାକୁ ଚାହୁଥିଲା- 'ପୁଣି କୁଆଡ଼େ ?'

ନନ୍ଦର ମନେ ପଡିଯାଉଥାଏ, ତାର ସେଇ ବିଚକ୍ଷଣ ବେପରୁଆ ସାଙ୍ଗ ସବ୍ୟସାଚୀ । କାନରେ ବାଜିଯାଉଥାଏ ତାର କଥା, ଆଖିଆଗରେ ସତେ ଅବା ଭାସି ଯାଉଥାଏ ତାର ଚେହେରା..... ପୁଣି ଦିଶି ଯାଉଥାଏ ଶ୍ରଦ୍ଧାର ସୁନ୍ଦର ଚାହାଣି, ହସ ହସ ଓଠ, ବ୍ରୀଡାବନତ ମୁହଁ ।

## ॥ ୨୯ ॥

"ବେଦ କହୁନାହିଁ ତୁମେ ପାପୀ ଏବଂ ଅମୁକ ଅମୁକ କାମ କଲେ ତୁମେ ମୁକ୍ତ ହେବ । ସେ କହୁଛି ତୁମେ ବ୍ରହ୍ମ, ଅର୍ଥାତ୍ ଗୁଣ ଦୋଷରୁ ଭିନ୍ନ..." ଯଦୁବାବୁ ମନଯୋଗ ଦେଇ ପଢୁଥାନ୍ତି । ବେଶ୍ ଭଲ ଲାଗୁଥାଏ ବିନୋବାଜୀଙ୍କ ଲେଖାଟି । ପୁଣି ଆଉ ଗୋଟିଏ ସ୍ଥାନରେ ସେ ବର୍ଣ୍ଣନା କରିଛନ୍ତି ତାଙ୍କର ଅଭିଜ୍ଞତା - ଆମେ ପଦଯାତ୍ରାରେ ସାମଗାନ କରି କରି ଚାଲିଥିଲୁ । ଯେଉଁ ମନ୍ତ୍ରଟି ବୋଲୁଥିଲୁ, ତାର ଅର୍ଥ ହେଲା-

ବସନ୍ତ ରମଣୀୟ

ଗ୍ରୀଷ୍ମ ରମଣୀୟ
ବର୍ଷା-ଶରଦ୍-ହେମନ୍ତ-ଶିଶିର ରମଣୀୟ ।

ଯାତ୍ରାରେ ଏହି ଗୀତ ବହୁତ ବୋଲା ହେଲା । ସାମଗାନକୁ ଆଧାର କରି ଆମ ପଦଯାତ୍ରା ଚାଲିଥିଲା । ଯେତେବେଳେ ମୂଷଳ ଧାରାରେ ମେଘ ବରଷୁଥିଲା, ଆମେ ଆମ ଗାନରେ ପ୍ରକାଶ କରୁଥିଲୁ -

ଆକାଶରୁ ଆମ ଉପରେ ଖୁବ୍ ବରଷୁ
ଆମର ଗତି ଆମର ବେଗ ଅକୁଣ୍ଠିତ ରହୁ
ଆମ ଇଛା-ଶକ୍ତି ହଜାର ଗୁଣ ବଢ଼ିଯାଉ ।

ଏପରି ବେଦର ଆନନ୍ଦ ଉପଭୋଗ କରି କରି ଆମର ଯାତ୍ରା ଆନନ୍ଦରେ ଚାଲିଲା । ଯଦୁବାବୁ ବେଦ ପଢ଼ିନାହାନ୍ତି । କିନ୍ତୁ ବେଦ ବିଷୟରେ କିଛି କିଛି ଆଲୋଚନା ପଢ଼ିଛନ୍ତି । ସେଦିନ ବିନୋବାଙ୍କ ଲେଖାଟି ତାଙ୍କୁ ବହୁତ ଆମୋଦ ଦେଉଥିଲା । ସେତିକିବେଳେ ଫୋନ୍ ଆସିବାର ଶବ୍ଦ କାନରେ ପଡ଼ିଲା ।

ଉମା ଖବର ଦେଲେ - 'ବୁଦ୍ଧଦେବ ବାବୁ ଡାକୁଛନ୍ତି ।'

ଡାକ୍ତର ବୁଦ୍ଧଦେବ ରଥ ହିନ୍ଦୁ ନୁହନ୍ତି କି ବୌଦ୍ଧ ନୁହନ୍ତି । ସେ କହନ୍ତି, ତାଙ୍କର ଧର୍ମ- 'ସେବା ଧର୍ମ' । ତାଙ୍କ ପାଇଁ ଗୌତମ ବୁଦ୍ଧ, ଯୀଶୁ ଖ୍ରୀଷ୍ଟ ଓ ମହାତ୍ମା ଗାନ୍ଧୀ ହେଉଛନ୍ତି ଭକ୍ତିଭାଜନ ଦେବ-ପୁରୁଷ । ଏମାନଙ୍କୁ ଦେବତା କହିବାରେ ତାଙ୍କର ଆପତ୍ତି ନାହିଁ, କିନ୍ତୁ କାହାରିକି ଦେବତା ବୋଲି ମାନିବାକୁ ସେ ରାଜି ନୁହନ୍ତି ଏଇଥିପାଇଁ ଯେ : ତାଙ୍କ ପାଖରେ ପୂଜାଧ୍ୱଜା ପାଇଁ ସମୟ ନାହିଁ କି ଧୈର୍ଯ୍ୟ ନାହିଁ । ତଥାପି ଜନସେବା, ରୋଗୀ ସେବା, ପରୋପକାରକୁ ଯଦି ପୂଜା ବୋଲି ଧରି ନିଆଯିବ, ତେବେ ସେଥିରେ ତାଙ୍କର ନିଷ୍ଠା ଓ ଯତ୍ନର ତୁଳନା ବିରଳ !

'ମୁଁ ନନ୍ଦିଘୋଷ ରଥ କି ତାଳଧ୍ୱଜ ରଥ ନୁହେଁ, ବୁଦ୍ଧ ରଥ...' ସେପଟୁ କହୁଥିଲେ ବୁଦ୍ଧଦେବ ବାବୁ ।

ଯଦୁବାବୁ କହିଲେ - 'ହଉ ତୋର ବାଣୀ କ'ଣ ଶୁଣା ।'

'ବୁଦ୍ଧ କଣ କହିଥିଲେ ମନେ ଅଛି ?'

'କେତେ କଥା ତ କହିଥିଲେ, କୋଉ କଥା ପଚାରୁଛୁ ?'

'ନାଇଁ ମ ତୋରି ପାଇଁ ପଦେ କହିଥିଲେ...'

ସାଧାରଣତଃ ବୁଦ୍ଧଦେବ ବାବୁ ଫୋନ୍‌ରେ ଦୀର୍ଘ ଆଳାପ କରନ୍ତି ନାହିଁ । ସେ ଦିଗରେ ସେ ସଚେତନ । କିନ୍ତୁ ସେଦିନ ବୋଧହୁଏ କିଛି ଗୋଟିଏ ଖୁସି ମିଜାଜ୍‌ରେ ଥିଲେ । ହୁଏତ କିଛି ସମୟ ଗପିବାକୁ ମନ ବଳାଇଥିଲେ । ଯଦୁବାବୁ ପ୍ରିୟ ବନ୍ଧୁ ବୁଦ୍ଧଦେବଙ୍କୁ 'ବୁଦ୍ଧୁଦେବ' ବୋଲି ଥଟ୍ଟାରେ ଡାକିଲେ ସୁଦ୍ଧା ମନେ ମନେ 'ବୁଦ୍ଧିଦେବ' ଭାବି ତାଙ୍କ ସହିତ ଭଲରେ ମନ୍ଦରେ ପରାମର୍ଶ କରନ୍ତି । କିନ୍ତୁ ସେ ମଧ୍ୟ ସେଦିନ ଅନ୍ୟତ୍ର ନିମଗ୍ନ ଥିଲେ । କହିଲେ - 'ହଉ, କଣ କହିଥିଲେ ସଂକ୍ଷେପରେ କୁହ ।'

ବୁଦ୍ଧଦେବ କହିଥିଲେ - "ମୁଁ ସାଧୁମାନଙ୍କର ପରିତ୍ରାଣ ଓ ପାପୀମାନଙ୍କୁ ସଦ୍‌ବୁଦ୍ଧି, ସଦ୍‌ଦୃଷ୍ଟି ଦେବାକୁ ଓ ଧର୍ମଚକ୍ର ପ୍ରବର୍ତ୍ତନ ପାଇଁ ବାରମ୍ବାର ଆସିବି ।" ସେପଟୁ ଟେଲିଫୋନ୍‌ରେ କହୁଥାନ୍ତି ଡାକ୍ତର ବୁଦ୍ଧଦେବ ରଥ ।

'ତା ହେଲେ ଆମର ପରିତ୍ରାଣ ପାଇଁ ବୁଦ୍ଧଦେବ ଆସିବେ ?' ଯଦୁବାବୁ ହସି ହସି କହିଲେ ।

'ନାହିଁରେ ସଦ୍‌ବୁଦ୍ଧି ଦେବାକୁ ଯିବେ... ଆଜି ଘରେ ରହିବୁ ତ ?' ବୁଦ୍ଧଦେବ ପଚାରିଲେ ।

ଯଦୁବାବୁ ଭାରି ଖୁସି ହୋଇଯାଇ କହିଲେ- 'ସ୍ୱାଗତମ୍ ! ତୁ ଆସିବୁ, ମୁଁ ରହିବି ନି - ଏକଥା କ'ଣ ସମ୍ଭବ ? କେତେବେଳେ ପହଞ୍ଚିବୁ କହ । ଏଇଠି ପୂରା ସମୟ ଖିଆପିଆ ଗପସପରେ କଟାଇବା ପାଇଁ ପ୍ରସ୍ତୁତ ହୋଇ ଆସିବୁ ।'

ଏ ଭିତରେ କେତୋଟି ବର୍ଷ ବିତି ଗଲାଣି । ବୁଦ୍ଧଦେବ ବାବୁ ଯେଉଁ ସଂସ୍ଥାଟି ଗଢ଼ିବା ବିଷୟରେ ପରାମର୍ଶ କରିବାକୁ ଆସିଥିଲେ, ସେଇ ସଂସ୍ଥାଟି ବେଶ୍ ଭଲରେ ଚାଲିଛି । ଖୁବ୍ ସୁନାମ ଅର୍ଜିଛି । ଡାକ୍ତର ବୁଦ୍ଧଦେବ ରଥ, ଡାକ୍ତର ସାମୁଏଲ୍ ଦୁଙ୍ଗୁ ଓ ଯଶୋଦାଙ୍କ ନିଷ୍ଠା ଏବଂ ଯତ୍ନର ଫଳ - ସେହି ଅନୁଷ୍ଠାନ । ସେମାନେ ତାର ନାମ ରଖିଛନ୍ତି- 'ଗୋକୁଳମ୍' ।

ଯେଉଁଦିନ ବୁଦ୍ଧଦେବ ସାମୁଏଲ୍‌ଙ୍କୁ ତାଙ୍କ ଦୁଃଖ କହିଥିଲେ, ସେଦିନ ସାମୁଏଲ୍ ବି ତାଙ୍କ ବାପାଙ୍କ କଥା କହିଥିଲେ । ଅବଶ୍ୟ ଦୁଃଖ ଓ ସମସ୍ୟା ଥିଲା ସଂପୂର୍ଣ୍ଣ ଭିନ୍ନ ।

ସାମୁଏଲ୍ ତାଙ୍କ ପିତାମହଙ୍କ ନାଁ ଜାଣନ୍ତି ନାହିଁ । ପୁଣି ଜାଣି ବି ନାହାନ୍ତି ଆପଣାର ବଂଶ କି କୁଳ ବିଷୟରେ ।

ସେ ଅନେକ ବର୍ଷ ତଳର କଥା ।

ଯେତେବେଳେ ପିତାମାତାଙ୍କୁ ହରାଇ ଦୁଃଖିଆଟି ଏଇ ସମୁଦ୍ର କୂଳରେ ଲହଡ଼ି ଆଡ଼କୁ ଅନାଇ କେତେବେଳେ କାନ୍ଦୁଥିଲା, କେତେବେଳେ ଏଣେ ତେଣେ ବୁଲୁଥିଲା, ସେତେବେଳେ ତାର ବୟସ ଥିଲା, ତିନି କି ଚାରି ବର୍ଷ । କେବଳ ଖନେଇ ଖନେଇ ନିଜର ନାଁଟି କହି ପାରୁଥିଲା । ତା ପାଇଁ ବାପାଙ୍କ ନାଁ - 'ବାପା' । ବୋଉ ନାଁ - 'ବୋଉ' । ଜଣେ ଖ୍ରୀଷ୍ଟିୟାନ୍ ଭଦ୍ରଲୋକ ତାକୁ ପାଳିଥିଲେ । ଶ୍ରଦ୍ଧାରେ ତାକୁ ଡାକୁଥିଲେ - 'ଦୁଃଖୁ' । ପୁଣି, ସେ ନିଜେ ଥିଲେ ଅବିବାହିତ । ଭଲ ରୋଜଗାର ଥିଲା । କେତେଜଣ ଆଶ୍ରିତ ଥିଲେ ପାଖରେ । ସେମାନେ ହିଁ ଥିଲେ ତାଙ୍କର ପରିବାର । ସେହି ପରିବାରରେ ଦୁଃଖିଆ ବଢ଼ିଲା ଓ ପଢ଼ିଲା । ତା ନାଁ ହୋଇଗଲା- 'ବେଞ୍ଜାମିନ ଦୁଃଖୁ' । ତା ପାଠକୁ ଚାହିଁ ଗୋଟିଏ କମ୍ପାନୀରେ କ୍ଲର୍କ ତଥା ଟାଇପିଷ୍ଟ ଚାକିରୀ ପାଇଲା । ସେ ଖ୍ରୀଷ୍ଟ ଧର୍ମତ ଗ୍ରହଣ କରିଥିଲା, ଖ୍ରୀଷ୍ଟିୟାନ ଝିଅଟିଏ ବି ବିବାହ କରିଥିଲା । ସାମୁଏଲ ଦୁଃଖୁ ବେଞ୍ଜାମିନ୍‌ଙ୍କ ପୁଅ । ଖୁବ୍ ମେଧାବୀ ଛାତ୍ର ଥିଲେ । ସେ ମାନସିକ ରୋଗର ଡାକ୍ତର ।

ବୁଦ୍ଧଦେବଙ୍କର ଏକମାତ୍ର ସନ୍ତାନ - 'ଦେବକୀ' । ସେ ସୁଶ୍ରୀ । ଭଲ ଚିତ୍ର ଆଙ୍କନ୍ତି । ଚମତ୍କାର ବୀଣା ବଜାନ୍ତି । ସେ ସବୁ ତାଲିମ୍ ସହିତ ମନକଥା ପ୍ରକାଶ କରିବାର ତାଲିମ୍ ପାଇଥିଲେ ମୂକ ବଧିର ବିଦ୍ୟାଳୟରୁ । ବିବାହ କରିଥିଲେ ଜଣେ ଡାକ୍ତରୀ ଛାତ୍ରଙ୍କୁ । ସେ ଛାତ୍ର ସ୍ୱଇଚ୍ଛାରେ ଦେବକୀଙ୍କୁ ବିବାହ କରିବାକୁ ପ୍ରସ୍ତାବ ଦେଇଥିଲେ- ତାଙ୍କର ସୌନ୍ଦର୍ଯ୍ୟ ଓ ବୀଣାବାଦନରେ ମୁଗ୍ଧ ହୋଇ । ବୁଦ୍ଧ ଦେବଙ୍କ ଆର୍ଥିକ ସହାୟତା ଓ ପ୍ରଚେଷ୍ଟାରେ ବିଦେଶକୁ ଯାଇଥିଲେ ଅଧିକ ଜ୍ଞାନ ଅର୍ଜନ ପାଇଁ । ଜ୍ଞାନ ହୁଏତ ଅର୍ଜନ କରିଥିବେ, କିନ୍ତୁ ବିବେକ ହଜାଇ ଦେଲେ ।

ଦେବକୀଙ୍କର ପୁଅ ଦିବ୍ୟେନ୍ଦୁ ଶେଖରର, ଡାକ ନାଁ ଦେବୁ । ଛୋଟ ପିଲାଟିଏ । ବାପା ତାର ବିଦେଶରେ । ସେଇଠି ତାଙ୍କର ଚିକିତ୍ସା ବ୍ୟବସାୟ । ସେ ଦେଶକୁ ଫେରିବାକୁ

ଚାହୁଁ ନାହାନ୍ତି କି ନିଜେ ସ୍ତ୍ରୀ ପିଲାଙ୍କୁ ନେବାକୁ ଇଛା କରୁନାହାନ୍ତି । ବୁଦ୍ଧଦେବ ଯାହା ବୁଝିଲେ, ତାହା ନିଜ ଝିଅକୁ କହିପାରିଲେ ନାହିଁ । ତଥାପି ଝିଅଟି ଡିପ୍ରେସନ୍ ହେତୁ ପ୍ରାୟ ବିଷର୍ଣ୍ଣ ରହୁଥିଲା । ସାମୁଏଲ୍ ତାର ଚିକିତ୍ସା କରୁଥିଲେ ।

ଦେବକୀ ମନପରିବର୍ତ୍ତନ ପାଇଁ ବାପାଙ୍କ ସହିତ ପୁରୀରେ ରହୁଥିଲେ । ମଝିରେ ମଝିରେ ସେମାନଙ୍କ ପାଖକୁ ଆସୁଥିଲେ ସାମୁଏଲ୍ ଦୁଃଖୁ ଓ ତାଙ୍କର ସହକର୍ମୀ ଶାନ୍ତା ଦେବୀ ।

ଦିନେ ଛୁଆଟିକୁ କାଖରେ ଧରି ସମୁଦ୍ର କୂଳରେ ବୁଲୁବୁଲୁ ଦେବକୀଙ୍କର ମନ କଣ ହେଲା କେଜାଣି, ପାଖରେ ଛିଡ଼ା ହୋଇଥିବା ଗୋଟିଏ ସ୍ତ୍ରୀ ଲୋକର କାଖକୁ ଛୁଆଟିକୁ ବଢ଼ାଇ ଦେଇ ସମୁଦ୍ର ଲହଡ଼ି ସହିତ ଖେଳିବାକୁ ଆଗକୁ ଆଗକୁ ଆଗେଇ ଗଲେ ଏବଂ ଅତି କ୍ଷୀପ୍ର ବେଗରେ ଭିତରକୁ ଟାଣି ହୋଇ ହୋଇ ଗଲେ- ଆଖି ପିଛୁଡ଼ାକେ । ସେହି ସ୍ତ୍ରୀ ଲୋକଟି ଅସହାୟ ଭାବେ ଖୁବ୍ ଜୋରରେ ଚିତ୍କାର କରି ସଂଜ୍ଞାହୀନ ହୋଇ ପଡ଼ିଗଲା । ଛୁଆଟି ତା ପାଖରେ କାନ୍ଦୁଥାଏ । ଯୋଗକୁ ଶାନ୍ତାଦେବୀ ସେତେବେଳେ ସେଇ ପାଖାପାଖି ବୁଲୁଥିଲେ । ତାଙ୍କ ଦୃଷ୍ଟିପଡ଼ିଲା ସେଇ ଛୁଆଟି ଉପରେ । ଧାଇଁ ଆସିଲେ । ତେଣେ କିଏ ଜଣେ ମହିଳା ସମୁଦ୍ରର ଅନ୍ତର କରେଣ୍ଟରେ ଟାଣି ହୋଇଯିବାର ଦାରୁଣ ଦୃଶ୍ୟଦେଖି କେତେଜଣ ମଧ କାତର ଓ ସ୍ତବ୍ଧ ହୋଇ ଛିଡ଼ା ହୋଇଥିଲେ ।

ଯେତେବେଳେ ବହୁବାର ଆତ୍ମହତ୍ୟା କରିବାକୁ ଉଦ୍ୟମ କରି ବ୍ୟର୍ଥ ହୋଇଥିବା, ସେଇ ନାରୀଟି ଅଚେତ ଅବସ୍ଥାରେ ପଡ଼ିଥାଏ, ସେତେବେଳେ ସମୁଦ୍ର ଗର୍ଭକୁ ଭାସିଯାଇଥିବା ମହିଳାଙ୍କୁ ଉଦ୍ଧାର କରିବାର ଉଦ୍ୟମ ଚାଲିଥାଏ । ତାଙ୍କର ପିତା ଡାକ୍ତର ବୁଦ୍ଧଦେବ ରଥ ପହଞ୍ଚିଯାଇ, ଶାନ୍ତାଦେବୀଙ୍କ ଜିମା ନାତି ଓ ତା ପାଖରେ ଥିବା ସଂଜ୍ଞାହୀନା ନାରୀଟିକୁ ଛାଡ଼ିଦେଇ, ସାମୁଏଲ ସାହେବଙ୍କ ସହିତ ଦେବକୀର ଉଦ୍ଧାର ପାଇଁ ବ୍ୟାକୁଳ ପ୍ରୟାସ କରୁଥାନ୍ତି । କିନ୍ତୁ ବହୁ ଉଦ୍ୟମ ଖଟାଇଲେ ସୁଦ୍ଧା ସେଦିନ ଝିଅର କିଛି ପତ୍ତା ମିଳିଲାନାହିଁ । ଉଦ୍ୟମ ଚାଲିଥାଏ । ପୁଣି ପୂଛାପୂଛି ମଧ ହେଉଥାଏ ଏହି ଉଦ୍ଦେଶ୍ୟରେ । ଦୁଇଦିନ ପରେ ଦେବକୀର ଶରୀର ମିଳିଲା । କିନ୍ତୁ ସେଥିରେ ପ୍ରାଣ ନଥିଲା ।

ଦେବଶୁକୁ କାଖକୁ ନେଇଥିବା ସେହି ଅଜଣା ନାରୀଟି ଅଚେତ ଅବସ୍ଥାରୁ ଚେତା ପାଇବା ପରେ ମଧ ସ୍ମୃତି ଶକ୍ତି ହରାଇଥିଲା । ତାର ଢଳଢଳ ନିରୀହ ଚାହାଁଣୀ ଓ ସ୍ନେହ ପାଇଲାପରି ସୁନ୍ଦର ମୁହଁଟିକୁ ଦେଖି ଶାନ୍ତାଦେବୀଙ୍କର ତା ପ୍ରତି ଆତ୍ମୀୟତା ଆସିଯାଇଥିଲା ।

ଅପାପବିଦ୍ଧ ଶିଶୁ ଦେବୁ ମଧ ତାକୁ ଭଲ ପାଇଯାଇଥିଲା । ସେ ଯେତେବେଳେ ଶାନ୍ତାଦେବୀଙ୍କ କଥାମାନି ଦେବୁଟିକୁ କାଖରେ ଧରି ସନ୍ତାନହରା ପିତା ବୁଦ୍ଧଦେବ ବାବୁଙ୍କ ସାମ୍ନାକୁ ଆସିଲା, ବୁଦ୍ଧଦେବ ବାବୁ ସେତେବେଳେ ଗଦ୍‌ଗଦ ହୋଇ ଉଠିଆସି ତା ପାଖରେ ଛିଡ଼ା ହେଲେ । କହିଲେ - 'ମା ଯଶୋଦା ମୋର, ତୋତେ ଏଇ ଛୁଆଟି ଲାଗିଲା । ତାକୁ ପୁଅପରି ପାଳିବୁ । ମୋତେ ବି ତୋର ପୁଅ ପରି ଦେଖିବୁ ।'

ସେ ନାରୀଟି ନିଜ ଭିତରେ ବି ଅବ୍ୟକ୍ତ ଯନ୍ତ୍ରଣା ଅନୁଭବ କରୁଥିଲା । ତାହା ତା ମରାଳ କଣ୍ଠର କମ୍ପନ ଓ ମୁଖମଣ୍ଡଳରେ ଭାବ ବିସ୍ଫୋରଣ ଦେଖିଲେ ହୁଏତ କେତେକାଂଶରେ ଅନୁମାନ କରିହେବ । ଶାନ୍ତା ଦେବୀ ତାକୁ ସମ୍ଭାଳି ନେଲେ । ସାମୁଏଲ୍ ଥାନ୍ତି ବୁଦ୍ଧଦେବଙ୍କ ପାଖେ ପାଖେ ।

ସେଇ ଦୁଃଖ, ସେଇ ମାନସିକ ସ୍ଥିତିକୁ କ୍ରମେ କ୍ରମେ ଅତିକ୍ରମ କରିଗଲେ ବୁଦ୍ଧଦେବ ଓ ଯଶୋଦା । ସେମାନେ ସାମୁଏଲ ଦୁଃଖୁ ଓ ଶାନ୍ତାଦେବୀଙ୍କ ପାଖରେ ଭିନ୍ନ ଭିନ୍ନ ଭାବରେ ଋଣୀ ।

ଡାକ୍ତର ବୁଦ୍ଧଦେବ ରଥ ଯେଉଁଦିନ ତାଙ୍କର ନାତି ଦିବ୍ୟେନ୍ଦୁ ଶେଖରକୁ ସ୍କୁଲକୁ ପଠାଇବା ଲାଗି ସ୍ଥିର କଲେ, ସେଦିନ ଆସିଥିଲେ ସାମୁଏଲ୍ ସାହେବଙ୍କ ଘରକୁ । କଥା ପ୍ରସଙ୍ଗରେ ସେ ତାଙ୍କ ଋଣ ସ୍ୱୀକାର କଲାବେଳେ ଶାନ୍ତାଦେବୀ କହିଲେ- 'ଋଣଟା ଶୁଝିବେ ନି ? ସୁଧ ମୂଳ ସହିତ ତ ଅନେକ ହୋଇଯିବଣି !'

ଶାନ୍ତା ଦେବୀଙ୍କ ଥଟ୍ଟା, ବୁଦ୍ଧଦେବ ବାବୁ ଓ ସାମୁଏଲ୍ ସାହେବଙ୍କୁ ଆମୋଦିତ କଲା ।

ସାମୁଏଲ୍ କହିଲେ - 'ଡକ୍ଟର ରଥ, ଆପଣଙ୍କ କଥା ଭାବୁଥିଲି । ମିସେସ୍ ରଥଙ୍କ ଆକସ୍ମିକ ବିୟୋଗ ପରେ ଦେବକୀଟି ଥିଲା ଆପଣଙ୍କର ପ୍ରାଣ । ସେ କିନ୍ତୁ ଆପଣଙ୍କୁ ଏକା ଛାଡ଼ିଦେଇ ଯାଇ ନାହିଁ । ଆପଣଙ୍କୁ ଦେଇଯାଇଛି ଆପଣଙ୍କ ବଂଶଜ ସ୍ୱରୂପ ନାତିଟିକୁ ଏବଂ ତା ସାଙ୍ଗରେ ତାରି ଭଳି ଝିଅଟିଏ ।'

ବୁଦ୍ଧଦେବ ବାବୁ ସାମୁଏଲଙ୍କ ହାତକୁ ଧରି ଛିଡ଼ା ହୋଇଥାନ୍ତି । କହିଲେ- 'କଣ କହିବାକୁ ଚାହୁଁଛନ୍ତି ?'

ସାମୁଏଲ୍ କହିଲେ - 'ଯଶୋଦା କେବେ ହୁଏତ କଣ ପଢ଼ିଥିଲା ଭୁଲି ଯାଇଥିଲା । କିନ୍ତୁ ଶାନ୍ତାର ଚେଷ୍ଟାରେ ଏବଂ ଆପଣଙ୍କ ସହଯୋଗ ଓ ସମର୍ଥନରେ ମାଟ୍ରିକ୍ ପାଶ୍ କଲାଣି । ଟାଇପ୍-କରି ଶିଖିଛି । ଗୋଟିଏ ଅଫିସ ଚଳାଇବାର ସାମର୍ଥ୍ୟ ହାସଲ କଲାଣି । ଏବେ ସେ ଯେକୌଣସି ଜାଗାରେ ଚାକିରୀ କରିପାରିବ । ଆମ କ୍ଲିନିକ୍‌ରେ ମଧ୍ୟ କାମ କରିବା ଭଳି ତାଲିମ୍ ତାର ଅଛି । କିନ୍ତୁ ମୁଁ ଭାବୁଛି... ।' ସେ ଏତିକି କହି ଅଟକି ଗଲେ ।

ବୁଦ୍ଧଦେବ ଉତ୍ସାହ ଓ ବ୍ୟଗ୍ରତାର ସହିତ ପଚାରିଲେ- 'କଣ ଭାବୁଛନ୍ତି' ?

'ମୋର ଇଚ୍ଛା ଅସହାୟ ପିଲାମାନଙ୍କ ପାଇଁ ଗୋଟିଏ ଘର... a very sweet home for homeless children...କେମିତି ହୋଇପାରିଲେ ଭଲ ହୁଅନ୍ତା' -ସାମୁଏଲ ରହିରହିକା ହୃଦୟ ଢାଳି ଏଇ କେତେପଦ କହିଲେ ।

ସେଇଦିନ ଡାକ୍ତର ବୁଦ୍ଧଦେବ ରଥ ମନସ୍ଥ କରିନେଲେ ଅନୁଷ୍ଠାନଟିଏ ଗଢ଼ିବାକୁ । ଯଦୁବାବୁ ତାର କାଗଜପତ୍ର କରିବାରେ ଓ ତାକୁ ବିଧିବଦ୍ଧ ଭାବରେ ରେଜେଷ୍ଟ୍ରିଭୁକ୍ତ ଟ୍ରଷ୍ଟ କରିବାରେ ସାହାଯ୍ୟ ସହଯୋଗ କଲେ ଏବଂ ପ୍ରଥମେ ଦଶହଜାର ଟଙ୍କାର ଚେକ୍‌ଟିଏ ଦେଇଥିଲେ । ପୁଣି ପରେ ଆଉ ୧୫ହଜାର ଟଙ୍କା ଦେବାର ପ୍ରତିଶ୍ରୁତି ଦେଲେ । ସାମୁଏଲ ଦୁଃଖୁ ଓ ବୁଦ୍ଧଦେବ ବାବୁ ସେମାନଙ୍କର ସମସ୍ତ ଗଚ୍ଛିତ ଆୟର ଅର୍ଦ୍ଧାଧିକ ଦାନକଲେ ଓ ପ୍ରତିମାସରେ ସେମାନଙ୍କ ଆୟର ଏକଚତୁର୍ଥାଂଶ ଦାନ କରିବାର ପ୍ରତିଶ୍ରୁତି ଲିପିବଦ୍ଧ କଲେ । ଶାନ୍ତାଦେବୀ ତାଲିମ୍ ଦେଲେ ଯଶୋଦାକୁ- କେମିତି ଅନୁଷ୍ଠାନଟିଏ ଚଳାଇବାକୁ ଓ ବଢ଼ାଇବାକୁ ହୁଏ । ସେ ଦୁହିଁଙ୍କର ଦକ୍ଷତା ଓ ତତ୍ପରତା ମିଶି ସଂସ୍ଥାଟି ବଢ଼ିଉଠିଛି । ବିଭିନ୍ନଆଡୁ ସାହାଯ୍ୟ ସହଯୋଗ ମିଳୁଛି ।

ଯଦୁବାବୁ 'ଗୋକୁଳମ୍'କୁ ଅଳ୍ପ କେତେଥର ଯାଇଛନ୍ତି । କିନ୍ତୁ ସେ ଗଲାବେଳେ ଯଶୋଦା ନଥାନ୍ତି ।

## ।। ୩୦ ।।

ଜୀବନରେ ଶାନ୍ତିଟିକିଏ ପାଇଲେ, ଶକ୍ତି ଓ ଉତ୍ସାହ ସଞ୍ଚୟ କରି କର୍ମରେ ପ୍ରବୃତ୍ତ ହେବାକୁ ଚାହୁଁଥିବା ମଣିଷଟି ହୁଏତ ଶାନ୍ତି ପାଏନାହିଁ । କିନ୍ତୁ କୈଶୋରରେ ପିତୃବିୟୋଗ, ଯୌବନରେ ପତ୍ନୀ କଷ୍ଟ, ପରିଣତ ବୟସରେ ଏକମାତ୍ର ସନ୍ତାନ ଦେବକୀର ଭାଗ୍ୟ ବିପର୍ଯ୍ୟୟ

ଓ ଆତ୍ମହତ୍ୟା ପରି ଦୁଃଖଦ ପରିସ୍ଥିତିରେ ଘାଣ୍ଟି ଚକଟି ହୋଇ ସୁଦ୍ଧା ନିଜକୁ ଆପଣାର ନିରୂପିତ କର୍ତ୍ତବ୍ୟ କର୍ମ ନିକଟରେ ସମର୍ପଣ କରିଦେଇ ତହିଁରୁ ଶାନ୍ତି ପାଉଥିଲେ ଡାକ୍ତର ବୁଦ୍ଧଦେବ ରଥ । ତପସ୍ୱିନୀ ପରି ବିଧବା ଜନନୀ ତାଙ୍କର ତାଙ୍କୁ ମଣିଷ କରିବା ପାଇଁ ଜୀବନରେ ଯେଉଁ ତ୍ୟାଗ ଓ ସଂଗ୍ରାମ କରିଛନ୍ତି ତାହା ମନେପଡ଼ିଲେ, ସେ ଭାବବିଭୋର ହୋଇଯାଆନ୍ତି । ତାଙ୍କରି ଚେହେରା ଓ ଉତ୍ସାହ ଭରା କଥା ମନେପଡ଼ିଲେ ତାଙ୍କୁ ଶାନ୍ତି ମିଳେ, କର୍ମ ପ୍ରେରଣା ମିଳେ । ନିଜର ଦୁଃଖ କଷ୍ଟକୁ ଆଡ଼େଇ ଦେଇ, କେବେ ଅବା ନିଜ ଭିତରେ ଚାପିଦେଇ ହସଖୁସିରେ ସବୁରି ସାଥିରେ ମିଶିଥାନ୍ତି ବୁଦ୍ଧଦେବ ବାବୁ ।

ଋଗ୍‌ବେଦରେ ଯଜମାନଙ୍କ ପ୍ରାର୍ଥନାରେ ଅଛି - 'ମୋର ରାତିଦିନ ସର୍ବଦା ମଧୁମୟ ହେଉ । ମାତା ପରି ପୋଷଣ କରୁଥିବା ପୃଥିବୀର ଧୂଳି ମୋ ପାଇଁ ମଧୁମୟୀ ହେଉ । ପିତା ପରି ପାଳନ କରୁଥିବା ଦ୍ୟୁଲୋକ ମୋ ପାଇଁ ଅମୃତମୟ ହେଉ ।'

ମଧୁ ନକ୍ତ ମୁତୋଷସୋ
ମଧୁମତ୍ ପାର୍ଥିବଂ ରଜଃ
ମଧୁ ଦ୍ୱୌରସ୍ତୁ ନଃ ପିତା....

କିନ୍ତୁ ରୋଗୀମାନଙ୍କର ପ୍ରାର୍ଥନା ଥିଲା ଆମକୁ ବୁଦ୍ଧଦେବ ବାବୁଙ୍କ ଭଳି ଜଣେ ସହୃଦୟ ଡାକ୍ତର ମିଳନ୍ତୁ । ବନ୍ଧୁମାନଙ୍କର କାମନା ଥିଲା- ବୁଦ୍ଧଦେବପରି ଜଣେ ମନ ସହିତ ମନ, ପ୍ରାଣ ସହିତ ପ୍ରାଣ ମିଶାଇ ପାରିବା ଭଳି ସାଙ୍ଗ ଆମକୁ ମିଳୁଥାଉ । ତାଙ୍କର ଉପସ୍ଥିତି ଓ କଥାବାର୍ତ୍ତା ପରିସ୍ଥିତିକୁ ମଧୁମୟ କରେ । ଭୟାର୍ତ୍ତକୁ ଅଭୟ ଦିଏ, ବେଦନାର୍ତ୍ତର ବେଦନା ଉପଶମ କରେ । ସମୁଦ୍ର ନଚାହିଁଲେ ବି ନଦୀମାନେ ଆସି ତା ସହିତ ମିଶିବା ଭଳି, ତାଙ୍କ ଚାହିଁବା ନଚାହିଁବାର ଅପେକ୍ଷା ନରଖି ଆୟର ବହୁଧାର ସ୍ରୋତ ତାଙ୍କପାଖକୁ ଚାଲିଆସେ ! ଯଶୋଦା ନାମଟି ବାହାରି ଆସିଥିଲା ତାଙ୍କରି ଭାବପ୍ରବଣ ହୃଦୟର ଅଭ୍ୟନ୍ତରରୁ ।

ବୁଦ୍ଧଦେବ ବାବୁ ହୁଏତ୍ ସେଇ ପରିସ୍ଥିତି, ସେଇ ଭାବାବେଗ ଭିତରେ ଥିବାବେଳେ ଭାବୁଥିଲେ ଦେବକୀଠାରୁ ଗ୍ରହଣ କରିଥିବା ପୁଅଟିକୁ ଯଶୋଦାର ମମତା ଓ ଯତ୍ନଦେଇ ବଢ଼ାଇବା ପାଇଁ ଏଇ ନାରୀଟିକୁ ପରମପିତା ତାଙ୍କ ପାଖକୁ ପଠାଇଛନ୍ତି । କିନ୍ତୁ ସେହି ଉଚ୍ଚାରଣ ଶାନ୍ତାଦେବୀଙ୍କୁ ଗୋଟାଏ ଚିନ୍ତାରୁ ମୁକ୍ତି ଦେଇଥିଲା ।

ଶାନ୍ତା ଦେବୀଙ୍କ ନିରନ୍ତର ଚେଷ୍ଟା ଓ ଯତ୍ନ ଫଳରେ ସେଇ ନାରୀଟିର ମାନସିକ

ସ୍ୱାସ୍ଥ୍ୟ କ୍ରମେ ଉନ୍ନତି ଲାଭକରି ଆସିଲା । ସେ ତା ଜୀବନର ଅନେକ ଘଟଣା ଦୁର୍ଘଟଣା ତାଙ୍କ ଆଗରେ ପ୍ରକାଶ କରିଦେଲା । ଅନ୍ତରାଳରେ ରହି ଚିକିତ୍ସାରେ ସାହାଯ୍ୟ କରୁଥିବା ସାମୁଏଲ୍ ସାହେବ ସୁଦ୍ଧା ଗୋପନୀୟତା ଦୃଷ୍ଟିରୁ ତାହା ଜାଣିଲେ ନାହିଁ । ଚିକିତ୍ସାରେ ପରାମର୍ଶ ପାଇଁ ଯେତିକି ଜାଣିବା କଥା ମାତ୍ର ସେତିକି ଜାଣି, ସେକଥା ମନେ ରଖିବାକୁ ଚାହିଁଲେ ନାହିଁ । ଶାନ୍ତା ଦେବୀ ଭାବୁଥିଲେ ତାର ପିତୃଦତ୍ତ ନାମଟିକୁ ବଦଳାଇ ଦେଇ ତାକୁ ଅତୀତଠାରୁ ବିଚ୍ଛିନ୍ନ କରି ଏକ ନବଜନ୍ମ ବା ନୂତନ ଜୀବନାକାଂକ୍ଷା ଦେଇ ସଂପୂର୍ଣ୍ଣ ନୂତନ ଦିଗନ୍ତ ଆଡ଼କୁ ଅଗ୍ରସର ହେବାର ପଥ ବତାଇ ଦେବେ । ସେ ସେଦିନ କହିଥିଲେ 'ଶ୍ରୀମତୀ ନାୟକ, ଆଜିଠାରୁ ତୁମର ନାମ ହେଲା ଯଶୋଦା ଦେବୀ । ପିତୃମାତୃ ଦତ୍ତ ନାମ ଓ ସ୍ୱାମୀଙ୍କ ସାଙ୍ଗିଆ ଭୁଲି ଯାଅ ଏବଂ ଭୁଲି ଯାଅ ସେ ଅତୀତ ଜୀବନକୁ । ଯେପରି ସନ୍ନ୍ୟାସ ଗ୍ରହଣ କଲାପରେ ସନ୍ନ୍ୟାସୀମାନେ ପୂର୍ବାଶ୍ରମଠାରୁ ସମସ୍ତ ସଂପର୍କ ତୁଟାଇ, ପୂର୍ବର ନାମ, ପରିଚୟ, ସମ୍ପର୍କୀୟ ଆଦିଙ୍କୁ ପାଶୋରି ଦିଅନ୍ତି, ସେହିଭଳି ତୁମେ ବି ଏଇ ସଂକଳ୍ପ ନିଅ ।''

ତଥାପି ମନେପଡ଼େ ସେଇ ଅଭୁଲା ମୁହୂର୍ତ୍ତଟି, ଯେତେବେଳେ ଗୋଟିଏ ଅନୁରୋଧ ତା ହୃଦୟକୁ ଯେତିକି ଆଶ୍ୱସ୍ତ କରିଥିଲା, ତହୁଁ ଅଧିକ ମଳି ପକାଉଥିଲା । ସେଇ ଦେବୀ ପ୍ରତିମ ନାରୀ କହିଥିଲେ 'ଭଉଣୀ ଏଇ ଗର୍ଭସ୍ଥ ସନ୍ତାନଟି ମୋର । ଏତିକି ଅନୁରୋଧ ମୋର ରକ୍ଷା କରିବ । ତାକୁ ମୋରି କୋଳରେ ସମର୍ପି ଦେବ । ସେ ପୁଅ ହେଉ ବା ଝିଅ ହେଉ ମୋରି ସନ୍ତାନର ପରିଚୟ ନେଇ ବଢ଼ିବ । ତୁମେ ତା ବିଷୟରେ ନିଶ୍ଚିନ୍ତ ହୋଇଯିବ । ତାକୁ ବଢ଼ାଇ ମଣିଷ ଭଳି ମଣିଷ କରିବାର ଦାୟିତ୍ୱ ମୋର । ଧର୍ମକୁ ସାକ୍ଷୀ ରଖି କହୁଛି ଭଉଣୀ । ଏହା ଅନ୍ୟଥା ହେବ ନାହିଁ ।' ତା'ପରେ ନିଜ ସନ୍ତାନର ପରିଚର୍ଯ୍ୟାକାରିଣୀ ଭାବରେ ଅଧିକ ଦିନ ରହି ପାରିଲା ନାହିଁ ସେ । ଦିନେ ସମସ୍ତଙ୍କ ଅଗୋଚରରେ ସେଇ ଜାଗାଟି ଛାଡ଼ିଦେଇ ଚାଲି ଆସିଲା । କେତେ ବାର ଆପଣା ହାତରେ ଆପଣାର ଜୀବନ ଦୀପ ଲିଭାଇ ଦେବାର ଚେଷ୍ଟା କରିଛି । ବିଫଳ ହୋଇଛି । ପୁରୁଷ ସମାଜ ପ୍ରତି ବିରକ୍ତି, ଘୃଣା ଓ ଅବିଶ୍ୱାସ ତା ହୃଦୟରେ ଜମାଟ ବାନ୍ଧି ଯାଇଥିଲା । ତେଣୁ ବୁଦ୍ଧଦେବ ବାବୁ ଓ ସାମୁଏଲ୍ ଦୁଃଖୁଙ୍କ ପରି ମହତ୍ ଲୋକଙ୍କୁ ମଧ୍ୟ, ସେ ଦେଖିଲେ ଆଡ଼େଇ ହୋଇ ଯାଉଥିଲା । କ୍ରମେ ତାର ମନ ସ୍ୱାଭାବିକ୍ ହୋଇ ଆସିଲା । ସମସ୍ତଙ୍କ ସହିତ ଚଳିବାର ଅଭ୍ୟାସ ପଡ଼ିଗଲା । ବୁଦ୍ଧଦେବବାବୁଙ୍କୁ 'ବାପା' ବୋଲି ଡାକିଲା । ସାମୁଏଲ୍ ସାହେବ୍‌ଙ୍କୁ 'ଭାଇ' ବୋଲି ଡାକିଲା । ଶାନ୍ତା ଦେବୀ ଥିଲେ ତାର ଅତି ଆପଣାର 'ଅପା' ।

ଶାନ୍ତା ଦେବୀଙ୍କ ତାଲିମ ଓ ନେତୃତ୍ୱରେ ମିଳିଛି ନୂତନ ନାମ ସହିତ ନୂତନ ବ୍ୟକ୍ତିତ୍ୱ ଏବଂ ସମ୍ମାନିତ ସ୍ଥିତି । ପାଠ ଓ ସାର୍ଟିଫିକେଟ୍ ହାସଲ ହୋଇଛି ସେଇ ନାମରେ । ସେଦିନର ସେହି ଅସହାୟା ନାରୀ, ସଂପ୍ରତି ଯଶୋଦା ଦେବୀ; ଜଣେ ସମ୍ମାନିତା ମହିଳା ।

ଯଶୋଦା ଦେବୀଙ୍କର ମାର୍ଜିତ, ମାପଚୁପ୍ କଥା ଓ ଚଳଣି ସହିତ କର୍ମନିଷ୍ଠା, ତତ୍ପରତା, ବେଶଭୂଷା ସବୁଥିରେ ତାଙ୍କର ବ୍ୟକ୍ତିତ୍ୱର ବିମ୍ବ ଉଦ୍‌ଭାସିତ ।

ସେ କେତେବେଳେ କେଉଁ ବିବିକ୍ତ ମୁହୂର୍ତ୍ତରେ ନୀରବରେ କିଛି ଭାବିବା ବେଳକୁ କାନରେ ବାଜିଯାଏ ଶାନ୍ତାଦେବୀଙ୍କର ସ୍ୱର- 'no... no looking back. ଆଗକୁ ଅନାଅ, ଆଗକୁ ମାଡ଼ି ଚାଲ । ଏଇ ଅନୁଷ୍ଠାନ ତୁମର ପରିଚୟ, ତୁମର ବର୍ତ୍ତମାନ ଓ ଭବିଷ୍ୟତ । ଅତୀତକୁ ଅନାଅ ନାହିଁ । ଭୁଲିଯାଅ ତାକୁ ଏକ ସ୍ୱପ୍ନ ଓ ଦୁଃସ୍ୱପ୍ନ ଭଳି ।

ପିତୃପ୍ରତିମ ବୁଦ୍ଧଦେବ ବାବୁ ଡାକନ୍ତି - 'ମା ଯଶୋଦା' । ସାମୁଏଲ୍ ସାହେବ ବି ସେଇ ଡାକଟିକୁ ବାଛି ନେଇଛନ୍ତି । ଶାନ୍ତା ଦେବୀ କେବେ ଡାକନ୍ତି 'ଯଶୋଦା ବହେନ୍', କେବେ ଡାକନ୍ତି 'ଯଶୋଦା ଦେବୀ' । ଗୋକୁଳମ୍‌ର ଅନ୍ୟମାନେ ତାଙ୍କୁ ଡାକନ୍ତି 'ମା' । କିନ୍ତୁ ଦେବୁର 'ଯଶୋଦା ମା' ଡାକଟି ତାକୁ ଭାରି ଭଲଲାଗେ । ତା ପାଇଁ ଅନ୍ତର ଭିତରୁ ବାତ୍ସଲ୍ୟ ଉଛୁଳି ଆସେ । ତାରି ଭିତରେ ସେ ଦେଖନ୍ତି ଆପଣାର ଆତ୍ମଜାର ମୁହଁ । କିନ୍ତୁ ଟିକିଏ ବଡ଼ ହେଲେ ଦେବୁ ବୋର୍ଡ଼ିଂ ସ୍କୁଲରେ ରହି ପଢ଼ିବ ବୋଲି ବୁଦ୍ଧଦେବ ବାବୁ ସ୍ଥିର କରି ସାରିଛନ୍ତି ।

ଗୋକୁଳମ୍ ପ୍ରତିଷ୍ଠା ହେବା ପରଠାରୁ, ଯଶୋଦା ତାର ସମସ୍ତ ଦାୟିତ୍ୱ ନେଇଛନ୍ତି । ସେ ତା ଟ୍ରଷ୍ଟବୋର୍ଡ଼ର ସେକ୍ରେଟାରୀ । ଏହି ଦାୟିତ୍ୱ ତାଙ୍କର ବ୍ୟକ୍ତିତ୍ୱକୁ ଅଧିକ ବଳିଷ୍ଠ କରିଛି । ଶାନ୍ତାଦେବୀ ଟ୍ରେଜରର୍ । ଏଇ ଦୁହେଁ ଟ୍ରଷ୍ଟଟିକୁ ଚଳାଇବାରେ ମୁଖ୍ୟ ଭୂମିକା ନିର୍ବାହ କରନ୍ତି । ଡାକ୍ତର ବୁଦ୍ଧଦେବ ରଥ, ଡାକ୍ତର ସାମୁଏଲ୍ ଦୁଃଖୁ ଏହାର ଚେୟାରମ୍ୟାନ ଓ ଭାଇସ୍-ଚେୟାର ମ୍ୟାନ୍ । ଏହାଛଡ଼ା ଆଉ କେତେଜଣ ପୃଷ୍ଠପୋଷକ ଅଛନ୍ତି । ସେମାନଙ୍କ ଭିତରେ ଯଦୁନାଥ ମହାପାତ୍ର ଜଣେ । କିନ୍ତୁ ଯେତେବେଳେ ଯଦୁବାବୁ ଗୋକୁଳମ୍ ଆସିବାକୁ ଖବର ଦିଅନ୍ତି, ସେହି ସମୟତକ ଶାନ୍ତାଦେବୀ ଯଶୋଦାକୁ ଅନ୍ୟ କାମରେ ବାହାରକୁ ପଠାଇ ଦିଅନ୍ତି । କିନ୍ତୁ ଯଶୋଦା ବା ଯଦୁବାବୁ ଏହା ଜାଣିନଥିଲେ ।

ସେଦିନ ଅୟନାନ୍ତ । ସୂର୍ଯ୍ୟନାରାୟଣଙ୍କର ଅୟନ ବା ମାର୍ଗ ପରିବର୍ତ୍ତନର ଦିନ । ମକର ସଂକ୍ରାନ୍ତିଠାରୁ ମିଥୁନ ସଂକ୍ରାନ୍ତି ପର୍ଯ୍ୟନ୍ତ ଛଅ ରାଶିରେ ଥିବାବେଳେ, ସୂର୍ଯ୍ୟ ବିଷୁବ

ରେଖାର ଉତ୍ତର ଆଡ଼କୁ ଗତି କରୁଥାନ୍ତି । ଏହି ପଥ ବା ଅୟନରେ ଯିବାର ସମୟଟି ଉତ୍ତରାୟଣ କାଳ । ଏହାର ଅୟନ ବା ମାର୍ଗର ଶେଷ ସୀମାଟି ଅୟନାନ୍ତ । କିନ୍ତୁ ମାର୍ଗ ବା ରାସ୍ତା ବଦଳି ଯାଏ ସିନା ଯାତ୍ରା ଶେଷ ହୁଏନାହିଁ । କର୍କଟ ରାଶିଠାରୁ ଧନୁ ପର୍ଯ୍ୟନ୍ତ ଛଅ ରାଶି, ଏହି ସମୟରେ ସୂର୍ଯ୍ୟ ବିଷୁବ ରେଖାର ଦକ୍ଷିଣ ଆଡ଼କୁ ଗତି କରୁଥାଆନ୍ତି । ଏହି ସମୟଟି ଦକ୍ଷିଣାୟନ କାଳ । ଏହି ଗତି ଉତ୍ତରରୁ ଦକ୍ଷିଣକୁ, ଦକ୍ଷିଣରୁ ଉତ୍ତରକୁ ଚାଲିଥାଏ । ସମୟ ଚକ ଅଟକି ଯାଏ ନାହିଁ । ଅୟନାନ୍ତ କେବଳ ମାର୍ଗ ପରିବର୍ତ୍ତନର ଗୋଟିଏ ଶଙ୍କୁ । ସନ୍ଧିକାଳ । ସେଦିନ ଯଦୁବାବୁଙ୍କ ଗାଡ଼ି ଗୋକୁଳମ୍‌ର ଫାଟକ ପାଖରେ ଅଟକିଲା । ସାଙ୍ଗରେ ଶ୍ରଦ୍ଧା । ଦୁହେଁ ଭିତରକୁ ଗଲେ ।

ଗୋଟିଏ ଗଛମୂଳେ ପିଲା କେତୋଟି ସିଲଟ ଖଡ଼ି ଧରି ଲେଖାପଢ଼ା କରୁଥିଲେ । ଗୋଟିଏ ପିଲା ଓଦାଳନାରେ ସିଲଟଟିକୁ ପୋଛି ଦେଇ ଶୁଖାଇବା ପାଇଁ ଆଗପଛ କରି ହଲାଉ ଥାଏ ଓ ବୋଲୁଥାଏ -

ନଈ ପାଣି ନଈକୁ ଯା
କୂଅ ପାଣି କୂଅକୁ ଯା
ମୋ ସିଲଟ ଶୁଖି ଯା ।

ଯଦୁବାବୁ ପିଲାଟି ପାଖରେ ଟିକିଏ ଛିଡ଼ା ହୋଇ ପଚାରିଲେ - 'ଏଇ ମନ୍ତ୍ରଟି ତତେ କିଏ ଶିଖାଇଛିରେ ବାପା ?'

ପିଲାଟି ଖୋଳିଲା ଆଖିରେ ଏଣେତେଣେ ଚାହିଁ, ଉତ୍ତର ଦେଲା- 'ଆମ ମାଆ' । ଗେଟ୍ ପାଖରେ ଗାଡ଼ି ଅଟକିବା ଶବ୍ଦ ତଥା କଥାବାର୍ତ୍ତା ଶୁଣି ସେପଟୁ ଆସୁଥିଲେ ଯଶୋଦା ଦେବୀ । ଗମ୍ଭୀର ବଳିଷ୍ଠ ବ୍ୟକ୍ତିତ୍ୱ । ଶ୍ୟାମାଙ୍ଗୀ । ଚେହେରାରେ ବୟସର ଛାପ ଅପେକ୍ଷା କର୍ମ ତତ୍ପରତାର ମୁଦ୍ରା ଅଧିକ ସ୍ପଷ୍ଟ । ଯଦୁବାବୁଙ୍କୁ ଦେଖି ସ୍ତମ୍ଭୀଭୂତ ହୋଇ ରହିଗଲେ । ପୁଣି ଶ୍ରଦ୍ଧାକୁ ଦେଖି ପକାଇ ଛଳଛଳ ହୋଇ ଚାହିଁ ରହିଲେ । ଶ୍ରଦ୍ଧାର ମନ ମଧ୍ୟ ତାଙ୍କୁ ଦେଖି ଉଛୁଳି ଉଠିଲା । ଯଦୁବାବୁ ହଠାତ୍ ବିସ୍ମିତ ହୋଇ, ପୁଣି ମନକୁ ସଜାଡ଼ି ନେଲେ । ଶ୍ରଦ୍ଧାକୁ କହିଲେ- 'ମାଆଙ୍କୁ ମୁଣ୍ଡିଆ ମାରି ଆଶୀର୍ବାଦ ନେ' । ପୁଣି ମନେ ମନେ ଭାବୁଥାନ୍ତି- ସାଙ୍ଗରେ ନନ୍ଦକୁ ଆଣିପାରିଥିଲେ ଭଲ ହୋଇଥାଆନ୍ତା । ଯଶୋଦାଙ୍କୁ ଶୁଣାଇଲା ପରି କହିଲେ- 'ଝିଅ ଏବେ ଅଧ୍ୟାପିକା । ଖୁବ୍ ନିକଟରେ ବୈବାହିକ ଜୀବନ ଆରମ୍ଭ କରିବାକୁ ଯାଉଛି । ବରପାତ୍ରଟି

ଜଣେ ଡେପୁଟି କଲେକ୍ଟର ।'

ଶ୍ରଦ୍ଧା ଉମାଙ୍କୁ ଜନନୀ ବୋଲି ଜାଣେ । ବୋଉ ବୋଲି ଡାକେ। କିଛି ନଜାଣି ଥିଲେ ବି ନିଜର ପ୍ରକୃତ ଗର୍ଭଧାରିଣୀ ଯଶୋଦା ଦେବୀଙ୍କ ପାଦଧୂଳି ହିଁ ଥିଲା ତା ପାଇଁ 'ମଧୁମତ୍ ପାର୍ଥିବଂ ରଜଃ' ।

ଶ୍ରଦ୍ଧା ଯଶୋଦା ଦେବୀଙ୍କୁ ଭୂମିଷ୍ଠ ପ୍ରମାଣ କଲାବେଳେ ସେ ତାକୁ କୁଣ୍ଢାଇ ଧରିଲେ । ତାଙ୍କର ଛାତି କମ୍ପିତ ହେଉଥାଏ । ଆଖିରୁ ଧାର ଧାର ଲୁହ ଝରି ଶ୍ରଦ୍ଧାର ପିଠିରେ ପଡୁଥାଏ । ତାଙ୍କ ଆଖି ଆଗରେ ଦିଶିଗଲା ପରି ଲାଗୁଥାଏ ଉମା ଦେବୀଙ୍କର ମୁହଁ । ଶୁଭି ଯାଉଥାଏ ତାଙ୍କର ଅନୁରୋଧ ଓ ପ୍ରତିଶ୍ରୁତି । ଭାବୁଥାନ୍ତି ସତରେ, କେଡ଼େ ମହାନ୍ ସେହି ନାରୀ !

ଯଦୁବାବୁ ଜଡ଼ବତ୍ ଛିଡ଼ା ହୋଇଥାଆନ୍ତି । ସୀତାଙ୍କୁ ଆପଣା ଗର୍ଭକୁ ଫେରାଇ ନେଇଥିବା ବସୁଧା ମାତା ତଥାପି ଥାନ୍ତି ସ୍ଥିରା ।



ବସୁଧାରା ପ୍ରକାଶନୀର
ଆଉ କେତୋଟି ପ୍ରକାଶନ

## ପାଠ ପଢେ ପଢେ ଅପାଠୁଆ

*(ଆତ୍ମଜୀବନୀ)*

ଲେଖକ : ବିନୋଦ କାନୁନ୍‌ଗୋ

## ପାକଶାସ୍ତ୍ର

ଲେଖିକା : ଦୀପ୍ତି ପଟ୍ଟନାୟକ ଓ ମୀରା କାନୁନ୍‌ଗୋ

## ସାରଥିର ଶପଥ

*(କବିତା)*

ଡକ୍ଟର ଅରବିନ୍ଦ ପଟ୍ଟନାୟକ

## ଠେଙ୍ଗୁଣୀ ଓ ଅନ୍ୟାନ୍ୟ ପ୍ରସଙ୍ଗ

*(ରମ୍ୟ ରଚନା)*

ଲେଖକ : ଡକ୍ଟର ଅରବିନ୍ଦ ପଟ୍ଟନାୟକ

## ଓଡ଼ିଆ ସରକାରୀ ଭାଷା : ସମସ୍ୟା ଓ ସମାଧାନ

ଭାଷା ସାହିତ୍ୟ ସଂସ୍କୃତି ପ୍ରତିଷ୍ଠାନ ଇଲାକ୍
(Institute of Language, Literature & Culture) ର
*ଗୋଟିଏ ସେମିନାରରେ ବହୁ ବିଶିଷ୍ଟ ବିଦ୍ୱାନ, ପ୍ରଶାସକ, ବିଚାରପତି, ଶିକ୍ଷାବିତ୍ ଓ ବିଶେଷଜ୍ଞଙ୍କ ଦ୍ୱାରା ଉପସ୍ଥାପିତ ବିଚାରଧାରାର ସଂକଳନ ।*
ସଂପାଦନା : ମଣିଦୀପା ପଟ୍ଟନାୟକ